

# ସମ୍ବିଧାନ ପ୍ରଣେତା ଭାରତରତ୍ନ ଡଃ ଆମ୍ବେଦକର ଓ ଦଶଗୋଟି ମୌଳିକ କର୍ତ୍ତବ୍ୟ

ତାରାକାନ୍ତ ମହାନ୍ତି

ଭାରତୀୟ ସମ୍ବିଧାନର କୃତବିଦ୍ୟ ପ୍ରଣେତା, ଅବିଚଳିତ ଓ ଉତ୍ସର୍ଗୀକୃତ ସମାଜ ସଂସ୍କାରକ ଡଃ ଭୀମରାଓ ଆମ୍ବେଦକର ଆଧୁନିକ ଭାରତର ଇତିହାସରେ ଅନ୍ୟତମ ଅବିସ୍ମରଣୀୟ ପ୍ରତିଭା । ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମ ହୋଇଥିଲା ୧୮୮୧ ମସିହା ଏପ୍ରିଲ୍ ୧୪ ତାରିଖ ଦିନ ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର ଏକ ଦରିଦ୍ର ଅସ୍ପୃଶ୍ୟ ମାହାଲ ପରିବାରରେ । ତାଙ୍କ ପିତାଙ୍କ ନାମ ରାମଜୀ ସକ୍‌ପାଲ୍ ଓ ମାତାଙ୍କ ନାମ ଥିଲା ଭୀମାବାଈ ।

ଭାରତ ସ୍ୱାଧୀନ ହେବା ପରେ ଭାରତ ସମ୍ବିଧାନ ପ୍ରସ୍ତୁତ କରିବା ନିମନ୍ତେ ଡଃ ଆମ୍ବେଦକରଙ୍କୁ ଡ୍ରାଫ୍‌ଟିଂ କମିଟିର ଚେୟାରମ୍ୟାନ ରୂପେ ୧୯୪୭ ଅଗଷ୍ଟ ୨୯ରେ ନିର୍ବାଚିତ କରାଗଲା ଓ ଏହି କାର୍ଯ୍ୟ ସଂପନ୍ନ ହେବାଲାଗି ୨ ବର୍ଷ ୧୧ ମାସ ୧୭ ଦିନ ଲାଗି ଥିଲା । ଏହି ଦୀର୍ଘ ସମୟ ମଧ୍ୟରେ ଡଃ ଆମ୍ବେଦକର ନିଜର ଆଇନ୍ ଓ ବିଚାର ଶାସ୍ତ୍ର ତଥା ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନଗୁଡ଼ିକ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମାଧ୍ୟମରେ ସୂଚାରୁରୂପେ ସମ୍ବିଧାନ ପ୍ରସ୍ତୁତି କାର୍ଯ୍ୟ ବହନ କରିଥିଲେ । ଭାରତର ସମ୍ବିଧାନ ପ୍ରସ୍ତୁତି ପରେ ତାଙ୍କୁ ହିଁ ପୁଣି ପ୍ରସ୍ତୁତ କରିବାକୁ ପଡ଼ିଥିଲା ବିଖ୍ୟାତ ହିନ୍ଦୁ କୋଡ଼୍ ବିଲ୍ । ଡଃ ଆମ୍ବେଦକର ଗଣତନ୍ତ୍ର ଓ ସମାଜବାଦର ଜଣେ ଦୃଢ଼ ପ୍ରବକ୍ତା ଥିଲେ । ସେ ଯେ କେବଳ ମଣିଷ ଓ ମଣିଷ ମଧ୍ୟରେ ସମାନତା ଚାହୁଁଥିଲେ ତା' ନୁହେଁ, ସେ ମଧ୍ୟ ଚାହୁଁଥିଲେ ପୁରୁଷ ଓ ନାରୀମାନଙ୍କ ମଧ୍ୟରେ ସମାନତା । ତାଙ୍କର 'ହିନ୍ଦୁ କୋଡ୍ ବିଲ୍' ଏହାର ଜ୍ୱଳନ୍ତ ପ୍ରମାଣ । ସେ ନାରୀମାନଙ୍କର ଶିକ୍ଷାଗତ ଅଧିକାର ସହ ସେମାନଙ୍କର ସଂପତ୍ତି ଉପରେ ଅଧିକାର ଓ ଛାଡ଼ପତ୍ର ଦେବାର କ୍ଷମତା ସପକ୍ଷରେ ଦୃଢ଼ ଯୁକ୍ତି ବାଢ଼ିଥିଲେ । ଏଥିପାଇଁ ସେ ସମଗ୍ର ଭାରତୀୟ ନାରୀ ସମାଜରେ ଚିରସ୍ମରଣୀୟ । ପରବର୍ତ୍ତୀ ସମୟରେ ସେ ହିନ୍ଦୁ ବିବାହ ଆଇନ୍, ହିନ୍ଦୁ ସକ୍‌ସେସନ୍ ଆକ୍ଟ, ହିନ୍ଦୁ ମାଇନରଟି ଆଣ୍ଡ ଗାର୍ଡିଆନ୍ ସିପ୍ ଆକ୍ଟ, ହିନ୍ଦୁ ମେଣ୍ଟେନାନ୍‌ସ ଆକ୍ଟ ପ୍ରଭୃତିର ରୂପରେଖ ନିର୍ମାଣ କରି ପାର୍ଲିଆମେଣ୍ଟରେ ଅନୁମୋଦିତ କରାଇପାରିଥିଲେ । ଏଥିପାଇଁ ଯଥାର୍ଥରେ ଜଷ୍ଟିସ୍ ଗଜେନ୍ଦ୍ରଗଡ଼କର ତାଙ୍କୁ ସମ୍ବୋଧନ କରିଥିଲେ, 'ଆଧୁନିକ ମନୁ' । ସେ ଥିଲେ ଏକାଧାରାରେ ଅଭିଜ୍ଞ ଆଇନଜ୍ଞ, ଅର୍ଥନୀତିଜ୍ଞ, ସମାଜବିତ୍, ସଂସଦୀୟ ପରମ୍ପରାର ଏକ ମର୍ଯ୍ୟାଦା ପୁରୁଷ ଓ ସର୍ବୋପରି ରାଷ୍ଟ୍ରନେତା ।

୧୯୫୬ ମସିହା ଡିସେମ୍ବର ୬ ତାରିଖରେ ଏହି ଆଜୀବନ ସଂଗ୍ରାମୀ ତ୍ୟାଗପୂତ ସାଧକଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ମହାନ୍ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ ପୂର୍ବକ ଭାରତ ସରକାର ତାଙ୍କୁ ମରଣୋତ୍ତର ଭାରତରତ୍ନ ସମ୍ମାନ ପ୍ରଦାନ କରିଅଛନ୍ତି । ତାଙ୍କର କୀର୍ତ୍ତି ଓ କୃତିରାଜି ଭାରତ ଇତିହାସରେ ଏକ ଅନନ୍ୟ ଭାବୋଦ୍ଦୀପକ ଅଧ୍ୟାୟ । ସେ ସମଗ୍ର ଦଳିତ, ଶୋଷିତ, ଲାଞ୍ଛିତ ମାନବଜାତିର ପ୍ରେରଣାର ଉତ୍ସ ହୋଇ ସବୁଦିନ ପାଇଁ ଚିର ନମସ୍ୟ ହୋଇ ରହିବେ ।

**ଆମ ସମ୍ବିଧାନର ବୈଶିଷ୍ଟ୍ୟ**

ଭାରତର ପ୍ରତ୍ୟେକ ନାଗରିକଙ୍କୁ ଆମ ସମ୍ବିଧାନର ରୂପରେଖ, ବୈଶିଷ୍ଟ୍ୟ ଆମର ସମ୍ବିଧାନ ପ୍ରଦତ୍ତ ମୌଳିକ ଅଧିକାର ଓ ସମ୍ବିଧାନରେ ଲିପିବଦ୍ଧ ଆମର ମୌଳିକ କର୍ତ୍ତବ୍ୟ କ'ଣ, ସେ ସଂପର୍କରେ ସମ୍ୟକ୍ ଭାବେ ଅବଗତ ହେବାକୁ ପଡ଼ିବ ।

**ସମ୍ବିଧାନ ପ୍ରଣୟନ ସଭା**

ସମ୍ବିଧାନ ପ୍ରଣୟନ ସଭାର ପ୍ରଥମ ବୈଠକ ଡିସେମ୍ବର ୯ ତାରିଖ, ୧୯୪୬ରେ ସମ୍ବିଧାନ ପ୍ରଣୟନ ସଭାର ବରିଷ୍ଠ ସଦସ୍ୟ ସଚ୍ଚିଦାନନ୍ଦ ସିଂହ୍ନାଙ୍କ ଅସ୍ଥାୟୀ ଅଧ୍ୟକ୍ଷତାରେ ବସିଥିଲା । ସମ୍ବିଧାନ ପ୍ରଣୟନ ସଭା ୧୯୪୬ ଡିସେମ୍ବର ୧୧ ତାରିଖରେ ଡଃ ରାଜେନ୍ଦ୍ର ପ୍ରସାଦଙ୍କୁ ସ୍ଥାୟୀ ଅଧ୍ୟକ୍ଷ ରୂପେ ନିର୍ବାଚିତ କଲା । ସମ୍ବିଧାନ ପ୍ରଣୟନ ସଭାର ପ୍ରଥମ ବୈଠକରେ ପଣ୍ଡିତ ଜବାହରଲାଲ ନେହେରୁ Objective Resolution ଲକ୍ଷ୍ୟ ପ୍ରସ୍ତାବନା ଆଗତ କରି କହିଥିଲେ ଯେ ଏହା ନାଗରିକଙ୍କ ପାଇଁ ଏକ ବଜ୍ର ଶପଥ ନେଇଥିଲା, ଯାହାର ମୂଳ ଉଦ୍ଦେଶ୍ୟ ଥିଲା ନାଗରିକମାନଙ୍କୁ ଯେନତେନ ପ୍ରକାରଣ ଏକ ସମ୍ବିଧାନ ସୁନିଶ୍ଚିତ ଭାବେ ପ୍ରଣୟନ କରିବା, ସମ୍ବିଧାନ ପ୍ରଣୟନ ସଭା, ସମ୍ବିଧାନ ଖସଡ଼ା ବା ଚିଠା ପ୍ରସ୍ତୁତ କରିବା ନିମନ୍ତେ ଡଃ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଥିଲା,

ଯେଉଁଥିରେ ଏନ୍ ଗୋପାଳସ୍ୱାମୀ ଆୟଙ୍ଗର୍, ଆଲ୍ଲାଡି କୃଷ୍ଣସ୍ୱାମୀ ଆୟର, କେ.ଏମ୍.ମୁନ୍‌ସୀ ସୈଦ ମହମ୍ମଦ ସାଦୁଲା, ଏନ୍. ମାଧବ ରାଓ ଏବଂ ଡି.ପି. ଖୈତାନ୍ ପ୍ରମୁଖ ଥିଲେ ।

୧୯୪୯ ନଭେମ୍ବର ୨୬ ତାରିଖରେ ସମ୍ବିଧାନ ପ୍ରସ୍ତୁତ ହେଲା ଏବଂ ଏହା ୧୯୫୦ ଜାନୁଆରୀ ୨୬ ତାରିଖରୁ ରାଷ୍ଟ୍ରବ୍ୟାପୀ କାର୍ଯ୍ୟକାରୀ ହେଲା ।

୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ବଳରେ ଆମ ସମ୍ବିଧାନର ଉପକ୍ରମଣିକା (ଆଭିମୁଖ୍ୟ ବା Preamble) ପ୍ରିଆମ୍ବୁଲ୍ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇଛି, ତାହା ନିମ୍ନରେ ପ୍ରଦତ୍ତ ହେଲା -

'ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦୀ ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶରେ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୀତିକ ଓ ରାଜନୀତିକ ନ୍ୟାୟ, ଚିନ୍ତା, ଅଭିବ୍ୟକ୍ତି, ବିଶ୍ୱାସ ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତି ବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଓ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ସମସ୍ତଙ୍କ ମଧ୍ୟରେ ଭ୍ରାତୃଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରୁଛୁ ।

୧୯୫୦ ଜାନୁଆରୀ ୨୬ ତାରିଖଠାରୁ ଆମ ସମ୍ବିଧାନ ଆଇନତଃ କାର୍ଯ୍ୟକାରୀ ହେଲା । ଏଥିରେ ଆମକୁ ସାତଗୋଟି ମୌଳିକ ଅଧିକାର ପ୍ରଦାନ କରାଯାଇଛି । ସେଗୁଡ଼ିକ ହେଲା - ସାମ୍ୟର ଅଧିକାର, ସ୍ୱାଧୀନତାର ଅଧିକାର, ସଂପତ୍ତିର ଅଧିକାର, ଧର୍ମ ବିଶ୍ୱାସର ସ୍ୱାଧୀନତା ପାଇଁ ଅଧିକାର, ଶୋଷଣ ବିରୁଦ୍ଧରେ ଅଧିକାର, ସାଂସ୍କୃତିକ ଓ ଶିକ୍ଷାଗତ ଅଧିକାର ଓ ସମ୍ବିଧାନିକ ପ୍ରତିକାର ସକାଶେ ଅଧିକାର । ଆମେ ଆମର ସ୍ୱାଧୀନତା ପ୍ରଦତ୍ତ ମୌଳିକ ଅଧିକାର ସାବ୍ୟସ୍ତ କରିବାକୁ ଯେତିକି ସଚେତନ ଏଠି ଗୋଟିଏ ପ୍ରଶ୍ନ ଉଙ୍କିମାରେ ଆମେ ଆମ ସମ୍ବିଧାନରେ ଲିପିବଦ୍ଧ ଦଶଗୋଟି ମୌଳିକ କର୍ତ୍ତବ୍ୟ (ସମ୍ବିଧାନର ୫୧(କ) ଧାରା) ଯେଉଁଗୁଡ଼ିକ ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ବଳରେ ୧୯୭୬ ଡିସେମ୍ବର ୧୮ ତାରିଖଠାରୁ ସାମ୍ବିଧାନିକ ଆଇନ ରୂପେ ପରିଗଣିତ ହେଉଛି, ସେଗୁଡ଼ିକ ସମ୍ପାଦନ କରିବାରେ କେତେ ନିଷ୍ଠା, ଉତ୍ସାହ ଓ ତତ୍ପରତା ପ୍ରଦର୍ଶନ କରିଛୁ, ତାହା ଜାତୀୟ ସଂହତି ପରିପ୍ରେକ୍ଷୀରେ ବିଚାର କରିବାର କଥା । ଯଦି ଆମେ ସେହି ଦଶଗୋଟି ମୌଳିକ କର୍ତ୍ତବ୍ୟ ପ୍ରତି ସଚେତନ ରହି ସେହି ଅନୁସାରେ କାର୍ଯ୍ୟ କରୁଥାନ୍ତେ, ତେବେ ସମ୍ପ୍ରତି ଜାତୀୟ ସଂହତିକୁ ବିପନ୍ନ କଲାଭଳି ଯେଉଁ ସବୁ ଅଶୋଭନୀୟ କାର୍ଯ୍ୟକଳାପ ବୃଦ୍ଧି ପାଇଛି, ସେଗୁଡ଼ିକୁ ଅଚିରେ ଏଡାଇ ହୋଇପାରନ୍ତା । ସେହି ଦଶଗୋଟି ମୌଳିକ କର୍ତ୍ତବ୍ୟ ହେଉଛି -

(୧) ସମ୍ବିଧାନକୁ ମାନିବା ବା ସମ୍ମାନ ଦେବା ଏବଂ ସମ୍ବିଧାନର ଭାବନା ତଥା ଉଲ୍ଲେଖଥିବା ବ୍ୟବସ୍ଥାଗୁଡ଼ିକୁ ପାଳନ କରିବା ସଂଗେସଂଗେ ଜାତୀୟ ପତାକା ସମେତ ଜାତୀୟ ସଂଗୀତକୁ ସମ୍ମାନ ପ୍ରଦର୍ଶନ କରିବା,

(୨) ସ୍ୱାଧୀନତା ପାଇଁ ଆମର ଜାତୀୟ ଆନ୍ଦୋଳନକୁ ପ୍ରେରଣା ଯୋଗାଇଥିବା ମହତ୍ ଆଦର୍ଶଗୁଡ଼ିକୁ ବଞ୍ଚାଇ ରଖିବା ସଂଗେସଂଗେ ତାହାକୁ ଅକ୍ଷରେ ଅକ୍ଷରେ ପାଳନ କରିବା,

(୩) ଭାରତର ସଂହତି, ଏକତା ଓ ସାର୍ବଭୌମତ୍ୱକୁ ବଜାୟ ରଖିବା,

(୪) ଦେଶକୁ ଶତ୍ରୁ ହାତରୁ ରକ୍ଷା କରିବା ଏବଂ ଦେଶର ସେବା କରିବା,

(୫) ଧର୍ମ, ଭାଷା, ଆଞ୍ଚଳିକତା କିମ୍ବା ଗୋଷ୍ଠୀଗତ ବିଭିନ୍ନତାକୁ ପାଶୋରି ଦେଇ ଭାରତର ଲୋକମାନଙ୍କ ମଧ୍ୟରେ ଅଭିନ୍ନ ଭ୍ରାତୃଭାବ ତଥା ସଦ୍‌ଭାବର ବିକାଶ ଲାଗି ଉଦ୍ୟମ କରିବା ଏବଂ ମହିଳାମାନଙ୍କ ମର୍ଯ୍ୟାଦା କ୍ଷୁଣ୍ଣ ହେଲାଭଳି ଆଚରଣ ପରିହାର କରିବା,

(୬) ଆମ ମିଶ୍ରିତ ସଂସ୍କୃତିର ଗୌରବମୟ ପରମ୍ପରାକୁ ରକ୍ଷା କରିବା ଓ ମୂଲ୍ୟ ଦେବା,

(୭) ଜୀବଜନ୍ତୁଙ୍କ ପ୍ରତି ଦୟା ପ୍ରଦର୍ଶନ କରିବା ସଂଗେସଂଗେ ବନ୍ୟ ଜନ୍ତୁ, ନଦୀ, ହ୍ରଦ ଓ ଜଙ୍ଗଲ ସମେତ ପ୍ରାକୃତିକ ବାତାବରଣକୁ ରକ୍ଷା କରିବା ଓ ତା'ର ବିକାଶ ଦିଗରେ ଉଦ୍ୟମ କରିବା,

(୮) ମାନବିକତା, ସଂସ୍କାର, ସବୁକଥା ଜାଣିବା ପାଇଁ ଜିଜ୍ଞାସୁ ମନୋଭାବ ଓ ବୈଜ୍ଞାନିକ ଚିନ୍ତାଧାରାର ବିକାଶ ଦିଗରେ ମନ ବଳାଇବା,

(୯) ସରକାରୀ ସଂପତ୍ତିର ସୁରକ୍ଷା କରିବା ଓ ହିଂସାଭାବ ପରିହାର କରିବା,

(୧୦) ଦେଶ ଯେପରି ଅଧିକ ଉଚ୍ଚତର ଲକ୍ଷ୍ୟ ହାସଲ ଦିଗରେ ବ୍ରତୀ ହୋଇପାରିବ, ସେଥିପାଇଁ ସମସ୍ତ ବ୍ୟକ୍ତିଗତ ଓ ସମୂହ କାର୍ଯ୍ୟକଳାପ କ୍ଷେତ୍ରରେ ଚରମ ସାର୍ଥକତା ଲାଗି କଠିନ ପରିଶ୍ରମ କରିବା ।

୧୯୫୦ ଜାନୁଆରୀ ୨୬ ତାରିଖରୁ ସମ୍ବିଧାନ ପ୍ରଣୟନ ହେବା ଦିନରୁ ଏହି ୫୬ ବର୍ଷ ମଧ୍ୟରେ ଆମ ସମ୍ବିଧାନର ୧୦୩ତମ ସମ୍ବିଧାନ ସଂଶୋଧନ ହୋଇଗଲାଣି । ଏଇ କେତେଦିନ ଭିତରେ ଆମ ସମ୍ବିଧାନର ୧୦୪ତମ ସମ୍ବିଧାନ ସଂଶୋଧନ ବିଲ୍ ପାର୍ଲାମେଣ୍ଟରେ ଆଗତ ହେବ ।

ଉପନିର୍ଦ୍ଦେଶକ (ପ୍ରିଣ୍ଟ ମିଡିଆ
ଓ ବିଜ୍ଞାପନ) ତଥା ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର



# ଭାରତୀୟ ସଂସଦୀୟ ଗଣତନ୍ତ୍ର : ଏକ ବିହଙ୍ଗାବଲୋକନ

ଡଃ ମନ୍ଦାକିନୀ ଦାସ

**ସ୍ୱା**ଧୀନୋତ୍ତର ଭାରତରେ ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରଚଳନ ନିମନ୍ତେ ସମ୍ବିଧାନ ପ୍ରଣୟନ ସଭାରେ ନିଷ୍ପତ୍ତି ନିଆଗଲାବେଳକୁ ଏହି ବ୍ୟବସ୍ଥା ପାଇଁ ଆବଶ୍ୟକୀୟ ଭିତ୍ତିଭୂମି ପଡ଼ି ସାରିଥିଲା । ୧୯୩୫ ମସିହାର ଭାରତ ଶାସନ ଆଇନରେ ସଂସଦୀୟ ଶାସନ ବ୍ୟବସ୍ଥା ପ୍ରତିଷ୍ଠା ପାଇଁ ଉଦ୍ୟମ ହୋଇଥିଲା ଏବଂ ଉକ୍ତ ଆଇନ କାର୍ଯ୍ୟକାରୀ ହେବା ସହିତ ଜନସାଧାରଣ ଏହି ବ୍ୟବସ୍ଥା ସହିତ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାରେ ସ୍ୱାଧୀନ ହୋଇଥିବା ଯେକୌଣସି ଦେଶ ସହ ତୁଳନା କଲେ ଭାରତରେ କାର୍ଯ୍ୟ କରିଆସୁଥିବା ବିଭିନ୍ନ ପ୍ରଶାସନିକ ବିଭାଗ ଓ ଅଙ୍ଗଗୁଡ଼ିକ ମଧ୍ୟ ସଂସଦୀୟ ଗଣତନ୍ତ୍ର ପାଇଁ ଅଧିକ ଉପଯୋଗୀ ଓ ଦକ୍ଷ ଥିଲା । ଏହାକୁ ଦୃଷ୍ଟିରେ ରଖି ସମ୍ବିଧାନ ପ୍ରଣେତାମାନେ ଭାରତ ପରି ଏକ ବହୁ ବିଚିତ୍ରତା ଓ ବିଭିନ୍ନତା ପରିପୂର୍ଣ୍ଣ ବିଶାଳ ଦେଶରେ ସଂସଦୀୟ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ବ୍ୟବସ୍ଥା କରିଥିଲେ । ୧୯୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନ ଅନ୍ତେ ସାମ୍ବିଧାନିକ ବିଧି ବ୍ୟବସ୍ଥା ଅନୁଯାୟୀ ସଂସଦ ଗଠିତ ହେଲା । ସେହିଦିନଠାରୁ ଏହି ବ୍ୟବସ୍ଥା ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକାରୀ ହୋଇ ଏକ ରାଜନୈତିକ ବିକାଶର ଧାରା ପ୍ରତିଷ୍ଠା କରିପାରିଛି । ଫଳରେ ସଂସଦୀୟ ଗଣତନ୍ତ୍ର କେବଳ ଇଂଲଣ୍ଡରେ ସଫଳ ହୋଇପାରିବ ବୋଲି ଯେଉଁ ଅହଂପୂର୍ଣ୍ଣ ପାଶ୍ଚାତ୍ୟ ଚିନ୍ତାଧାରା ରହିଥିଲା, ତାହା ଭୁଲ ବୋଲି ପ୍ରମାଣିତ ହୋଇଛି ।

ସମସାମୟିକ ଅନ୍ୟ ସଂସଦୀୟ ରାଷ୍ଟ୍ରଗୁଡ଼ିକ ତୁଳନାରେ ଭାରତୀୟ ପ୍ରଶାସନରେ ଜନ ସଂପୃକ୍ତି, ସ୍ଥିରତା, ଉତ୍ତରଦାୟିତ୍ୱତା ଓ ଶାସନର ସ୍ୱଚ୍ଛତା ଉତ୍ସାହଜନକ । ସେହି ରାଷ୍ଟ୍ରମାନଙ୍କ ତୁଳନାରେ ଭାରତରେ ଆର୍ଥିକ ବିକାଶର ଧାରା ମଧ୍ୟ ଉଲ୍ଲେଖନୀୟ । ଅନଗ୍ରସର ଗୋଷ୍ଠୀଙ୍କ ନିମନ୍ତେ ଆର୍ଥିକ ନିରାପତ୍ତା ବ୍ୟବସ୍ଥା କରାଯାଇ ମୁଦ୍ରାସ୍ଫିତି ହାରକୁ ଶତକଡ଼ା ପାଞ୍ଚ ବା ଛଅ ମଧ୍ୟରେ ସୀମିତ ରଖିବା ନିମନ୍ତେ ଉଦ୍ୟମ ଚାଲୁ ରହିଛି । ଜେହେରା ଏଫ୍ ଆରତଙ୍କ ଲିଖିତ ପୁସ୍ତକ 'ଡେମୋକ୍ରେସି ଆଣ୍ଡ ହ୍ୟୁମାନ ରାଇଟସ୍ ଇନ୍ ଡେଭେଲପିଙ୍ଗ୍ କଣ୍ଟ୍ରିଜ' ଓ ଜୁଆନ ଲିଜ୍‌ଙ୍କ ପୁସ୍ତକ ' ଏ କେଶ ଫର୍ ପାର୍ଲିଆମେଣ୍ଟାରୀ ଡେମୋକ୍ରେସୀ'ରେ ଭାରତରେ ପ୍ରଚଳିତ ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଭୂୟସୀ ପ୍ରଶଂସା କରାଯାଇଛି ଓ ପୃଥିବୀର ଅନ୍ୟ ଦେଶମାନଙ୍କରେ ଏହାର ପ୍ରଚଳନ ପାଇଁ ସେମାନେ ମଧ୍ୟ ମତବ୍ୟକ୍ତ କରିଛନ୍ତି । ଉତ୍ତରଦାୟିତ୍ୱତା ସହିତ ଜନମୁଖୀ ଓ କ୍ରିୟାଶୀଳ ସରକାର ପ୍ରତିଷ୍ଠିତ ହେବା ଫଳରେ ସଂସଦୀୟ ଗଣତନ୍ତ୍ରର ଉପାଦେୟତା ପରିଲକ୍ଷିତ ହେଉଛି ।

ଅନେକ ବିକାଶଶୀଳ ଦେଶରେ ଶୈଶବ ଅବସ୍ଥାରୁ ଗଣତନ୍ତ୍ରର ତଣ୍ଟିଚିପି ହତ୍ୟା କରାଯାଇଥିଲେ ମଧ୍ୟ ଏକ ଉଦାରବାଦର ମୂଲ୍ୟବୋଧ ନେଇ ଭାରତରେ ସଂସଦୀୟ ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଛି । ପୃଥିବୀରେ ଅନ୍ୟତମ ବୃହତ୍ ଶକ୍ତି ରୂପେ ମୁଣ୍ଡ ଟେକୁଥିବା ଭାରତରେ ଶାସନ ବ୍ୟବସ୍ଥା ସ୍ଥିର ଓ ଶକ୍ତିଶାଳୀ ହୋଇପାରିଛି । ସମାଜର ବିଭିନ୍ନ ବର୍ଗଙ୍କ ସ୍ୱାର୍ଥର ସୁରକ୍ଷା ତଥା ଶାସନ ବ୍ୟବସ୍ଥାରେ ସେମାନଙ୍କ ସଂପୃକ୍ତି ସହିତ ଶାନ୍ତିପୂର୍ଣ୍ଣ ଭାବରେ ଶାସନ ପରିବର୍ତ୍ତନ ସମ୍ଭବପର ହୋଇପାରିଛି । ଗଣତନ୍ତ୍ରରେ ଜନସାଧାରଣ କ୍ଷମତାର ଉତ୍ସ ହୋଇଥିଲାବେଳେ ସେହି କ୍ଷମତାର ଆନୁଷ୍ଠାନିକ ପ୍ରତିରୂପ ହେଉଛି ସଂସଦ । ସରକାରୀ କାର୍ଯ୍ୟର ସଠିକ୍ ପରିଚାଳନା ନିମନ୍ତେ ସଂସଦ ହାତରେ ଦାୟିତ୍ୱ ଅର୍ପିତ ହୋଇଛି । ପ୍ରଥମ ସାଧାରଣ ନିର୍ବାଚନ ପରେ ପ୍ରତିଷ୍ଠିତ ହୋଇଥିବା ସଂସଦ ଇତିମଧ୍ୟରେ ନାନା ଘାତ ପ୍ରତିଘାତ ମଧ୍ୟ ଦେଇ ଗତି କରି ଚାଲିଛି । ସ୍ୱାଧୀନତା ପରଠାରୁ ୧୯୭୭ ମସିହା ପର୍ଯ୍ୟନ୍ତ ଜାତୀୟ କଂଗ୍ରେସର ସଂଖ୍ୟା ଗରିଷ୍ଠତା ରହିଥିବାରୁ, ଏହି ଦଳ ସରକାର ଗଠନ କରିବା ସହିତ ଇଚ୍ଛା କରୁଥିବା ଯେକୌଣସି ପ୍ରସ୍ତାବକୁ ସଂସଦରେ ଗୃହୀତ କରାଇ ନେଇପାରୁଥିଲା । କଂଗ୍ରେସ ନେତୃତ୍ୱାଧୀନ କାର୍ଯ୍ୟ ପାଳିକାର ସଂସଦ ଉପରେ ପ୍ରାଧାନ୍ୟ ରହିଥିବା କାରଣରୁ ସେ ସମୟରେ ସଂସଦ ଏକ 'ରବର ଷ୍ଟାମ୍ପ' ପରି କାର୍ଯ୍ୟ କରୁଥିଲା । ଏକ ଦଳୀୟ ପ୍ରାଧାନ୍ୟ ବ୍ୟବସ୍ଥା ସତ୍ତ୍ୱେ ସଂସଦ କେତେକ କ୍ଷେତ୍ରରେ ନିଜର ସ୍ୱାତନ୍ତ୍ର୍ୟତା ରକ୍ଷା କରିପାରିଥିଲା । ୧୯୫୫-୫୬ ମସିହାର ରାଜ୍ୟ ପୁନର୍ଗଠନ କମିଶନଙ୍କ ପ୍ରସ୍ତାବରେ ସୂଚୀତ ହୋଇନଥିଲେ ମଧ୍ୟ ବମ୍ବେ ରାଜ୍ୟକୁ ଭାଷାଭିତ୍ତିରେ ଦୁଇଭାଗ କରିବା ନିମନ୍ତେ ସଂସଦ ପ୍ରସ୍ତାବ ଗ୍ରହଣ କରିଥିଲା । ପଶ୍ଚିମବଙ୍ଗର ବେରୁବାରୀ ଅଞ୍ଚଳକୁ ପାକିସ୍ଥାନକୁ ହସ୍ତାନ୍ତର କରିବା ନିମନ୍ତେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପାକିସ୍ଥାନ ସରକାରଙ୍କ ସହିତ ରାଜିନାମା କରିଥିଲେ ମଧ୍ୟ ସଂସଦର ବିରୋଧ ଯୋଗୁଁ ତାହା ସମ୍ଭବ ହୋଇନଥିଲା । ମାନ୍ୟବର ଉଚ୍ଚତମ ନ୍ୟାୟାଳୟଙ୍କ ପରାମର୍ଶକ୍ରମେ

ସମ୍ବିଧାନ ସଂଶୋଧନ କରାଯାଇ ଏହି ରାଜିନାମାକୁ କାର୍ଯ୍ୟକାରୀ କରାଯାଇଥିଲା । ସଂସଦର ବାଧ୍ୟ ବାଧକତା ଯୋଗୁଁ ଟି.ଟି. କ୍ରିଷ୍ଣାମାଚାରୀ (୧୯୫୮) ଓ କେଶବ ଦେଓ ମାଲବ୍ୟ (୧୯୬୩)ଙ୍କ ପରି ମନ୍ତ୍ରୀମାନଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ରାଜନୈତିକ କ୍ଷମତାର ସାର୍ବଭୌମ୍ୟ ଅନୁଷ୍ଠାନ ରୂପେ ୧୯୬୨ର ଜାତୀୟ ଜରୁରୀକାଳୀନ ପରିସ୍ଥିତି ସମୟରେ ସଂସଦ ଯେପରି ନିଜକୁ ପ୍ରତିଷ୍ଠିତ କରିପାରିଥିଲା, ତାହା ଅଭୂତପୂର୍ବ ବୋଲି କୁହାଯାଇପାରେ । ସଂଖ୍ୟା ଗରିଷ୍ଠତା ଥାଇ ମଧ୍ୟ ନେହେରୁ ସରକାରଙ୍କର ସଂସଦ ପ୍ରତି ଯଥେଷ୍ଟ ସମ୍ମାନବୋଧ ରହିଥିଲା । ସେତେବେଳେ ସରକାର ଚାହିଁଥିଲେ ଗୁରୁତ୍ୱପୂର୍ଣ୍ଣ ଜାତୀୟ ନିଷ୍ପତ୍ତିମାନ ଦଳୀୟ ସଭାରେ ଗ୍ରହଣ କରି ପରେ ସଂସଦର ଆନୁଷ୍ଠାନିକ ସମ୍ମତି ହାସଲ କରିପାରିଥାନ୍ତେ । କିନ୍ତୁ ସଂସଦ ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିବା ନେହେରୁ ସେପରି କାର୍ଯ୍ୟକ୍ରମକୁ ନାପସନ୍ଦ କରୁଥିଲେ । ତାଙ୍କ ସମୟରେ ବିରୋଧୀଦଳମାନଙ୍କ ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯାଉଥିଲା ଓ ସେମାନଙ୍କ ଗଠନମୂଳକ ମତାମତକୁ ଗ୍ରହଣ କରାଯାଉଥିଲା । ସେସମୟରେ ସଂସଦର ବାର୍ଷିକ କାର୍ଯ୍ୟ ଦିବସ ସଂପାଦନ କରାଯାଉଥିବା କାର୍ଯ୍ୟର ପରିମାଣ କାର୍ଯ୍ୟପାଳିକାକୁ ନିୟନ୍ତ୍ରଣ କରିବା ନିମନ୍ତେ ଗ୍ରହଣ କରାଯାଉଥିବା ପଦ୍ଧତି, ଅଧିବେଶନ କାଳରେ ସାଂସଦମାନେ ପ୍ରଦର୍ଶନ କରୁଥିବା ଆଚରଣବିଧି ପ୍ରଭୃତିର ଅନୁଧ୍ୟାନ କଲେ ଉଚ୍ଚ ରାଜନୈତିକ ଆଦର୍ଶ ଓ ପରମ୍ପରାର ପରିଚୟ ମିଳେ ।

ସଂସଦର କାର୍ଯ୍ୟକଳାପର ଗୁଣବତ୍ତା ତାହାର ସଦସ୍ୟମାନଙ୍କ ଗୁଣାବଳୀ ଉପରେ ନିର୍ଭର କରେ । ସଂସଦକୁ ନିର୍ବାଚିତ ହେବା ନିମନ୍ତେ ସମ୍ବିଧାନରେ କୌଣସି ଶିକ୍ଷାଗତ ଯୋଗ୍ୟତା ନିରୂପିତ ହୋଇନାହିଁ । ସେସମୟର ନିରକ୍ଷରତା ହାରକୁ ଅନୁଧ୍ୟାନ କରି ଶିକ୍ଷାଲାଭ କରିପାରିନଥିବା କୌଣସି ଆଗ୍ରହୀ ନାଗରିକଙ୍କୁ ସଂସଦୀୟ ନିର୍ବାଚନରେ ପ୍ରାର୍ଥୀ ହେବା ନିମନ୍ତେ ନିରୁତ୍ସାହିତ ନକରିବା ଉଦ୍ଦେଶ୍ୟରେ ହୁଏତ ଏପରି ବ୍ୟବସ୍ଥା କରାଯାଇଥିଲା ।

୧୯୪୭ରେ ସ୍ୱାଧୀନତା ଘୋଷଣା ହେବାର ଅବ୍ୟବହିତ ପୂର୍ବରୁ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ତାଚ୍ଛଲ୍ୟ କରି କହିଥିଲେ ଯେ କେତେଜଣ ଦୁର୍ବଳ ବ୍ୟକ୍ତିଙ୍କୁ (Men of Straw) ଭାରତରେ କ୍ଷମତା ସମର୍ପିତ ହେଉଥିବାରୁ, ଦେଶର ଶାସନ କାର୍ଯ୍ୟ ସଠିକ୍ ରୂପେ ପରିଚାଳିତ ହୋଇପାରିବ ନାହିଁ । ୧୯୬୦ ଦଶକରୁ ଦେଶରେ ଆରମ୍ଭ ହୋଇଥିବା ରାଜନୈତିକ ଅବକ୍ଷୟକୁ ଦୃଷ୍ଟିରେ ରଖି ସେଲିଗ୍ ହାରିସନ ନାମକ ଜଣେ ପାଶ୍ଚାତ୍ୟ ରାଜନୀତିବିଜ୍ଞାନୀ ଭାରତ ଭାଗ ଭାଗ ହୋଇଯିବ ବୋଲି ଆଶଙ୍କା ବ୍ୟକ୍ତ କରିଥିଲେ । ଜେ.ଏସ୍. ମିଲ୍ ଓ ଜେ.ଏସ୍. ଫର୍ଣ୍ଣିଭାଲଙ୍କ ମତରେ ଜାତି, ଧର୍ମ, ବର୍ଣ୍ଣ, ଭାଷା, ଅଞ୍ଚଳ ଓ ବାସସ୍ଥାନ ଜନିତ ବିଭିନ୍ନତା ରହୁଥିବା ବହୁବାଚକ ସମାଜ ପାଇଁ ଗଣତାନ୍ତ୍ରିକ ବ୍ୟବସ୍ଥା ସଠିକ୍ ବ୍ୟବସ୍ଥା ନୁହେଁ । କେବଳ ସାଂସ୍କୃତିକ ଐକ୍ୟଥିବା ଦେଶରେ ଗଣତନ୍ତ୍ର ସଫଳ ରୂପେ କାର୍ଯ୍ୟ କରିପାରିବ । ଉପନିବେଶ ବ୍ୟବସ୍ଥାରେ ଯେପରି ଅଗଣତାନ୍ତ୍ରିକ ବଳ ପ୍ରୟୋଗ ଦ୍ୱାରା ଶାସନ କାର୍ଯ୍ୟ ଚାଲୁଥାଏ, ଠିକ୍ ସେହିପରି ବହୁବାଚକ ସାମାଜିକ ବ୍ୟବସ୍ଥାରେ ବଳପ୍ରୟୋଗ ବିନା ଶାସନ ସମ୍ଭବ ହେବ ନାହିଁ । ବିନା ଶକ୍ତି ପ୍ରୟୋଗରେ ଶାନ୍ତି ବା ସ୍ଥିରତା ମଧ୍ୟ ରକ୍ଷା କରାଯାଇପାରିବ ନାହିଁ । ଅନ୍ୟ କେତେକ ରାଜନୈତିକ ବିଶାରଦଙ୍କ ମତରେ ଶିଳ୍ପ ସମୃଦ୍ଧି, ଆର୍ଥିକ ବିକଶିତ ଅଥବା ପୁଞ୍ଜିବାଦୀ ଆର୍ଥିକ ବ୍ୟବସ୍ଥାରେ ହିଁ ଗଣତନ୍ତ୍ର ବଂଚି ରହିପାରିବ । ସେଥିପାଇଁ କୁହାଯାଉଛି ଯେ ଗଣତନ୍ତ୍ର ଇଂଲଣ୍ଡରେ ସୁସ୍ଥ, ଆମେରିକାରେ ଧନଶାଳୀ, ସୁଇଜରଲ୍ୟାଣ୍ଡରେ ଆରାମଦାୟକ ଓ ଭାରତରେ ଦାରିଦ୍ର୍ୟ ଅବସ୍ଥାରେ ରହିଛି ।

ସମସ୍ତ ସମାଲୋଚନା ସତ୍ତ୍ୱେ, ଏକଥା ସତ୍ୟ ଯେ ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥାର ବିକଳ୍ପ ରୂପେ ଅନ୍ୟ କୌଣସି ଶାସନ ବ୍ୟବସ୍ଥା ଭାରତରେ ଗ୍ରହଣୀୟ ହେବ ନାହିଁ । ପାଶ୍ଚାତ୍ୟ ଦେଶମାନଙ୍କରେ ପର୍ଯ୍ୟାୟକ୍ରମେ ଧୀରେ ଧୀରେ ଗଣତାନ୍ତ୍ରିକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲାବେଳେ ଆମ ଦେଶରେ ଏକକାଳୀନ ଭାବରେ ସମ୍ବିଧାନ କାର୍ଯ୍ୟକାରୀ ହେବା ଦିନଠାରୁ ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରଚଳିତ ହୋଇଗଲା । କିନ୍ତୁ ସେଥିପାଇଁ ଉଭୟ ସାମାଜିକ ଓ ମାନସିକ ସ୍ତରରେ ଯେପରି ପ୍ରସ୍ତୁତିକରଣ ଆବଶ୍ୟକ, ତାହା ହୋଇଥିବାରୁ, ଅନ୍ୟ ପାଶ୍ଚାତ୍ୟ ଦେଶ ତୁଳନାରେ ଭାରତରେ ସମସ୍ୟାମାନ ଅଧିକ ଦେଖାଯାଉଛି । କିଛି ଉଚ୍ଚାଭିଳାଷୀ, ରାଜନୈତିକ ସଚେତକ ବୁଦ୍ଧିଜୀବୀଙ୍କ ଦାନ ରୂପେ ଭାରତୀୟ ଜନସାଧାରଣଙ୍କୁ ହଠାତ୍ ମିଳି ଯାଇଥିବା ଗଣତାନ୍ତ୍ରିକ ବ୍ୟବସ୍ଥା କାର୍ଯ୍ୟକାରୀ ହେଲାବେଳକୁ ସଙ୍କଟ ସୃଷ୍ଟି ହେଉଛି । ଭାରତ ପରି ଏକ ବୃହତ୍ତମ କାର୍ଯ୍ୟଶୀଳ ଗଣତନ୍ତ୍ରର ଏହି ଦୁରବସ୍ଥା ପାଇଁ ରାଜନୀତି ବିଜ୍ଞାନୀ ପ୍ରଫେସର ରଜନୀ କୋଠାରୀ ଉଭୟ ରାଜନେତା ଓ ବୁଦ୍ଧିଜୀବୀମାନଙ୍କୁ ଦାୟୀ କରିଛନ୍ତି । ବୁଦ୍ଧିଜୀବୀମାନେ ଭାରତୀୟ ଉଚ୍ଚ ପରମ୍ପରାର ରକ୍ଷକ ହେବାସହ ପରିବର୍ତ୍ତନର ମଧ୍ୟ ବାର୍ତ୍ତାବହ ହେବା କଥା । କିନ୍ତୁ ସେମାନେ ନିଜ ଦାୟିତ୍ୱରୁ ଓହରି ଯାଇ ବାସ୍ତବତା ଓ ମୂଲ୍ୟବୋଧ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ପାଇଁ ବାଟ ପରିଷ୍କାର କରୁଛନ୍ତି । ସାମନ୍ତବାଦୀ ଓ ସାମ୍ପ୍ରଦାୟିକ ଶକ୍ତିଙ୍କ ବିରୁଦ୍ଧରେ ଲଢ଼େଇ କରି, ଏକ ଉଦାରବାଦର ମୂଲ୍ୟବୋଧ ନେଇ ଭାରତୀୟ ନେତୃବୃନ୍ଦ ସଂସଦୀୟ ଗଣତନ୍ତ୍ର ପ୍ରତିଷ୍ଠା କରିଛନ୍ତି । ଗଣତାନ୍ତ୍ରିକ ବ୍ୟବସ୍ଥା ବିଭିନ୍ନ ସମସ୍ୟା ସମାଧାନର ମାଧ୍ୟମ ହେବାର କଥା । କିନ୍ତୁ ଆମ ଦେଶରେ ଏହା ନୂଆ ନୂଆ ସମସ୍ୟା ସୃଷ୍ଟି କରୁଛି । ଆର୍ଥିକ ଅଥବା ସାମାଜିକ କାରଣରୁ ଯେତେ ନୁହେଁ, ରାଜନୈତିକ କାରଣରୁ ସେତେ ଅଧିକ ସମସ୍ୟା ସୃଷ୍ଟି ହୋଇଛି । ଜନସଚେତନତା ଉପରେ ଗୁରୁତ୍ୱ ଦେଇ ନେହେରୁ କହିଥିଲେ ଯେ, ବୀତସ୍ପୃହ ଓ ନିଷ୍କର୍ମା ଜନତାଙ୍କୁ ନେଇ ଗଣତନ୍ତ୍ରର ସୁରକ୍ଷା କରାଯାଇ ପାରିବ ନାହିଁ । ସେଥିପାଇଁ ଦୃଷ୍ଟିଭଙ୍ଗୀ ବା ମୂଲ୍ୟବୋଧରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ଗଣତନ୍ତ୍ରର ସୁରକ୍ଷା ପାଇଁ ବସ୍ତୁର ବିକାଶ ନୁହେଁ, ବ୍ୟବସ୍ଥାର ବିକାଶ ନୁହେଁ ବରଂ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରୁଥିବା ବ୍ୟକ୍ତିବିଶେଷଙ୍କ ବିକାଶ ଏକାନ୍ତ ଆବଶ୍ୟକ । ଏହା ସହିତ, ମୁକ୍ତ ଗଣମାଧ୍ୟମ, ସୁସ୍ଥ ଜନମତ, ଅବାଧ ନିର୍ବାଚନ, ସ୍ୱାଧୀନ ଓ ନିରପେକ୍ଷ ବିଚାରାଳୟ ଓ ସର୍ବୋପରି ଦୃଢ଼ ବିରୋଧୀ ଦଳଙ୍କ ମାଧ୍ୟମରେ ଭାରତୀୟ ସଂସଦୀୟ ଗଣତନ୍ତ୍ର ନିରାପଦ ଓ ଦୃଢ଼ ରହିପାରିବ ।

ରାଜନୀତି ବିଜ୍ଞାନୀ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ
କଟକ

# ଭାରତରେ ସମ୍ବିଧାନ ପ୍ରଣୟନର କ୍ରମ ବିକାଶ (୧୭୭୪ - ୧୯୦୯)

ଡଃ ବିନୋଦିନି ଦାସ

ଭାରତର ସମ୍ବିଧାନ - ପ୍ରଣୟନର ଇତିହାସକୁ ଅନୁଧ୍ୟାନ କଲେ ଏହାର ଅୟମାରମ୍ଭ ତତ୍କାଳୀନ ବ୍ରିଟିଶ ସରକାରଙ୍କ ଦ୍ୱାରା ହିଁ ହୋଇଥିଲା । ୧୭୬୪ରେ ବକ୍ସାର ଯୁଦ୍ଧର ଅବସାନ ପରେ ଇଷ୍ଟଇଣ୍ଡିଆ କମ୍ପାନୀକୁ ନିଜ ଅକ୍ତିଆରରେ ରଖିବା ଲାଗି ବ୍ରିଟିଶ ସରକାର ଏକ ରେଗୁଲେଟିଙ୍ଗ୍ ଆଇନ ପ୍ରଣୟନ କରିଥିଲେ । ଏହି ଆଇନ ବ୍ୟବସ୍ଥା ଅନୁଯାୟୀ ବଙ୍ଗଳାର ଗଭର୍ଣ୍ଣରଙ୍କୁ ଗଭର୍ଣ୍ଣର ଜେନେରାଲ ପଦବୀ ମିଳିଲା । ତାଙ୍କ ଅଧୀନରେ ମାଦ୍ରାଜ ଏବଂ ବମ୍ବେର ଗଭର୍ଣ୍ଣରମାନେ କାର୍ଯ୍ୟ କରିବେ । ତାଙ୍କୁ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ଚାରି ଜଣିଆ ସଭ୍ୟ ବିଶିଷ୍ଟ ଏକ ଉପଦେଷ୍ଟା ମଣ୍ଡଳୀ ରହିବେ, ଯେଉଁମାନେ କି ପାଞ୍ଚବର୍ଷ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହିବେ ଏବଂ କେବଳ କୋର୍ଟ ଅଫ୍ ଡାଇରେକ୍ଟରଙ୍କ ଅନୁମୋଦନ କ୍ରମେ ରାଜାଙ୍କ ଦ୍ୱାରା ବହିଷ୍କୃତ ହୋଇପାରିବେ । କଲିକତାରେ ଏକ ସର୍ବୋଚ୍ଚ ନ୍ୟାୟାଳୟ ପ୍ରତିଷ୍ଠା କରାଯାଇଥିଲା ଏବଂ ଏହା ଗଭର୍ଣ୍ଣର ଜେନେରାଲଙ୍କ ଶାସନ ପରିଭୁକ୍ତ ନହୋଇ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ ନିର୍ବାହ କରିବାର କ୍ଷମତା ଲାଭ କଲା । ଏହି ନ୍ୟାୟାଳୟ ତିନି ଜଣ ନ୍ୟାୟମୂର୍ତ୍ତି ଏବଂ ଜଣେ ସର୍ବୋଚ୍ଚ ନ୍ୟାୟମୂର୍ତ୍ତି ନେଇ ଗଠିତ ହେଲା । ନ୍ୟାୟମୂର୍ତ୍ତିମାନଙ୍କର ପୂର୍ବରୁ ଅନ୍ତତଃ ପାଞ୍ଚବର୍ଷର ଓକିଲାତି ଅଭିଜ୍ଞତା ଅର୍ଜନ କରିଥିବା ଆବଶ୍ୟକ ବୋଲି ଉଲ୍ଲିଖିତ ହୋଇଥିଲା । କୋର୍ଟ ଅଫ୍ ପ୍ରୋପାଇଟରରେ ମତଦାନ କରିବାର ଅଧିକାର ସଙ୍କୁଚିତ କରିଦିଆଯାଇ କେବଳ ଯେଉଁମାନଙ୍କର ଏକ ହଜାର ପାଉଣ୍ଡ ଦେବାର କ୍ଷମତା ଅଛି ତାଙ୍କୁ ପ୍ରଦାନ କରାଗଲା । କମ୍ପାନୀର ଡାଇରେକ୍ଟରମାନଙ୍କୁ ଚାରି ବର୍ଷ ଲାଗି ନିର୍ବାଚିତ କରାଗଲା ଏବଂ ପ୍ରତିବର୍ଷ ଏହା ମଧ୍ୟରୁ ଏକ ଚତୁର୍ଥାଂଶ ସଭ୍ୟ ଅବସର ଗ୍ରହଣ କରିବାର ଧାର୍ଯ୍ୟ କରାଗଲା ଏବଂ ସେମାନେ ଯେପରି ଅନ୍ୟ କୌଣସି ପଦବୀ ଅନ୍ତତଃ ଏକ ବର୍ଷ ଲାଗି ପାଇବେ ନାହିଁ ତାହାର ବ୍ୟବସ୍ଥା କରାଗଲା । ଏହି ଡାଇରେକ୍ଟରମାନେ ପ୍ରତିବର୍ଷ କମ୍ପାନୀର ଅର୍ଥନୈତିକ ତଥ୍ୟ, ରାଜନୈତିକ ଏବଂ ସାମରିକ କାର୍ଯ୍ୟାବଳୀର ତଥ୍ୟ ଚାନ୍‌ସେଲର ଅଫ୍ ଏକ୍ସଚେକର ଏବଂ ସେକ୍ରେଟେରି ଅଫ୍ ଷ୍ଟେଟମାନଙ୍କୁ ପ୍ରଦାନ କରିବା ଲାଗି ନିର୍ଦ୍ଦେଶିତ ହୋଇଥିଲେ । ଏତଦ୍‌ବ୍ୟତୀତ ଲାଞ୍ଚ ଏବଂ ଅନୈତିକ କାର୍ଯ୍ୟପନ୍ଥାକୁ ମଧ୍ୟ ବନ୍ଦ କରିବା ଲାଗି ଚେଷ୍ଟା କରାଗଲା । ଏହା ମଧ୍ୟରେ ଅନେକ ଦୋଷ-ଦୁର୍ବଳତା ଥିଲେ ମଧ୍ୟ ଏହା ଯେ ବ୍ରିଟିଶ୍ ସରକାରଙ୍କ ପ୍ରଥମ ପ୍ରଣୀତ ଆଇନ, ଯାହାକି ଭାରତରେ କାର୍ଯ୍ୟରତ ଥିବା ଇଷ୍ଟଇଣ୍ଡିଆ କମ୍ପାନୀର କାର୍ଯ୍ୟକୁ ନିୟନ୍ତ୍ରିତ କରିବା ଲାଗି ଉଦ୍ଦିଷ୍ଟ ଥିଲା ।

ଏହି ଆଇନରେ ଥିବା ବ୍ୟବସ୍ଥା ଗଭର୍ଣ୍ଣର-ଜେନେରାଲଙ୍କ କାର୍ଯ୍ୟକଳାପକୁ ଅତିମାତ୍ରାରେ ସଂକୁଚିତ କରୁଥିବାରୁ ବହୁ ତର୍କବିତର୍କ ପରେ ଏହା ଉପରେ ଏକ ସଂଶୋଧିତ ପ୍ରସ୍ତାବ ୧୭୮୪ ମସିହାରେ ପିଟିସ୍‌ଙ୍କ ଦ୍ୱାରା ପ୍ରଣୀତ ହେଲା ଯାହାକୁ 'ପିଟିସ୍ ଇଣ୍ଡିଆ' ଆଇନ ୧୭୮୪ ନାମରେ ନାମିତ କରାଯାଇଥିଲା । ଏହି ବ୍ୟବସ୍ଥା ଅନୁଯାୟୀ କମ୍ପାନୀର କାର୍ଯ୍ୟକଳାପକୁ ନିୟନ୍ତ୍ରିତ ଏବଂ ଦେଖାଶୁଣା କରିବା ଲାଗି ଛ' ଜଣ ସଭ୍ୟ ବିଶିଷ୍ଟ ଏକ 'କୋର୍ଟ ଅଫ୍ କଣ୍ଟ୍ରୋଲ'ର ଗଠନ କରାଗଲା । ବ୍ରିଟିଶ୍ ପାର୍ଲାମେଣ୍ଟର ଦୁଇ ଜଣ ବିଶିଷ୍ଟ ସଦସ୍ୟ, ସେକ୍ରେଟେରି ଅଫ୍ ଷ୍ଟେଟ୍ ଏବଂ ଚାନସଲର ଅଫ୍ ଏକ୍ସଚେକର, ଏହାର ଆଫିସିକ ପଦ ହେତୁକ (Ex-Officio) ଭାବରେ ରହିଲେ । ଏହି ସଭ୍ୟମାନଙ୍କୁ କମ୍ପାନୀର ସବୁ କାଗଜପତ୍ର ତଦାରଖ କରିବାର ସୁଯୋଗ ପ୍ରଦାନ କରାଗଲା । ସେମାନଙ୍କର ନିଯୁକ୍ତି ଏବଂ ବହିଷ୍କାର ବ୍ରିଟିଶର ମହାରାଜାଙ୍କ ଉପରେ ନିର୍ଭର କରୁଥିଲା । ଭାରତରୁ ଆଦାୟ ହେଉଥିବା ରାଜସ୍ୱରୁ ଏହି ସଭ୍ୟମାନଙ୍କର ଦରମା ଏବଂ ଅନ୍ୟାନ୍ୟ ଖର୍ଚ୍ଚଦାବିକୁ ଦେବାଲାଗି ବ୍ରିଟିଶ୍ ପାର୍ଲାମେଣ୍ଟ ସର୍ତ୍ତବଦ୍ଧ ରହିଲା । ସେକ୍ରେଟେରି ଅଫ୍ ଷ୍ଟେଟ୍ ଏହି କୋର୍ଟ ଅଫ୍ କଣ୍ଟ୍ରୋଲର ଅଧକ୍ଷ ରହିଲେ । ଯଦି କୌଣସି କାର୍ଯ୍ୟରେ ମତୈକ ହେଲା ତା'ହେଲେ ସେକ୍ରେଟେରି ଅଫ୍ ଷ୍ଟେଟ୍ ନିଜର ସ୍ୱତନ୍ତ୍ର ଭୋଟ କ୍ଷମତା ସାବ୍ୟସ୍ତ କରିପାରିବାର ସୁଯୋଗ ରହିଲା । ଭାରତରେ ଥିବା ଗଭର୍ଣ୍ଣର ଜେନେରାଲଙ୍କ ପରିଷଦରେ ଚାରିଜଣ ସଭ୍ୟ ପରିବର୍ତ୍ତେ ତିନି ଜଣଙ୍କୁ ରଖାଯିବାର ବ୍ୟବସ୍ଥା ରହିଲା ଏବଂ ପୂର୍ବବତଃ ମାଦ୍ରାଜ ଏବଂ ବମ୍ବେର ଗଭର୍ଣ୍ଣରମାନେ ତାଙ୍କ ଅଧୀନରେ ସ୍ଥାପିତ ହେଲେ । ପ୍ରେସିଡେନ୍‌ସି ଗଭର୍ଣ୍ଣରମାନଙ୍କ ଅଧୀନରେ ଏବଂ ତିନିଜଣିଆ ସଭ୍ୟ ବିଶିଷ୍ଟ ଏକ ପରିଷଦ ରହିଲା । ଏହି ତିନିଜଣ ସଭ୍ୟମାନଙ୍କ ମଧ୍ୟରୁ ଜଣେ ସେନାବାହିନୀର ମୁଖ୍ୟ ଥିଲେ । କମ୍ପାନୀର ଅଙ୍ଗୀକାରବଦ୍ଧ କର୍ମଚାରୀମାନଙ୍କ ମଧ୍ୟରୁ ପ୍ରେସିଡେନ୍‌ସିର ଗଭର୍ଣ୍ଣରମାନଙ୍କ ପରିଷଦକୁ ସଭ୍ୟ ନିଯୁକ୍ତି କରିବାର ବ୍ୟବସ୍ଥା ମଧ୍ୟ

ରହିଲା । ଯଦିଓ ଗଭର୍ଣ୍ଣର ଏବଂ ତାଙ୍କ ପରିଷଦ କୋର୍ଟ ଅଫ୍-ଡାଇରେକ୍ଟରଙ୍କ ଦ୍ୱାରା ସିଧାସଳଖ ନିଯୁକ୍ତି ପାଇ ପାରୁଥିଲେ, ମହାମହିମ ବ୍ରିଟିଶ ସରକାର ଚାହିଁଲେ ତାଙ୍କୁ ପଦଚ୍ୟୁତ କିମ୍ବା ବହିଷ୍କୃତ କରିପାରୁଥିଲେ । ପିଟିସ୍‌ଙ୍କ ଇଣ୍ଡିଆ ଆଇନ୍ ୧୭୮୪ ପରେ ୧୭୯୩, ୧୮୧୩, ୧୮୩୩ ଏବଂ ୧୮୫୩ରେ ଚାର୍ଟର ଆଇନ୍ ପ୍ରଣୀତ ହୋଇଥିଲା । ୧୭୯୩ ଚାର୍ଟର ଆଇନ୍ ଅନୁଯାୟୀ କମ୍ପାନୀର ଏକଚାଟିଆ ବ୍ୟବସାୟୀଙ୍କ କ୍ଷମତାକୁ କ୍ଷୁଣ୍ଣ କରାଗଲା । ଗଭର୍ଣ୍ଣର ଜେନେରାଲଙ୍କ ପ୍ରେସିଡେନ୍‌ସି ଉପରେ ଥିବା କ୍ଷମତାର ଏକ ବିସ୍ତୃତ ବିବରଣୀ ପ୍ରକାଶ କରାଯାଇଥିଲା । ୧୮୧୩ ଚାର୍ଟର ଆଇନ୍‌ର ତାତ୍ପର୍ଯ୍ୟ ହେଲା ଯେ ଭାରତର ସାର୍ବଭୌମ କ୍ଷମତା ବ୍ରିଟିଶ ପାର୍ଲାମେଣ୍ଟ ଓ ରାଜାଙ୍କ ପାଖରେ ରହିଲା । କମ୍ପାନୀର ଏକଚାଟିଆ ବ୍ୟବସାୟୀଙ୍କ ଅଧିକାରକୁ କାଢ଼ି ନିଆଯାଇ, ବ୍ରିଟିଶରେ ଥିବା ଅନ୍ୟାନ୍ୟ ବ୍ୟବସାୟୀମାନଙ୍କୁ ଭାରତରେ ବ୍ୟବସାୟ ବାଣିଜ୍ୟ କରିବା ଲାଗି ଅଧିକାର ପ୍ରଦାନ କରାଯାଇଥିଲା । ୧୮୩୩ ମସିହାରେ ହୋଇଥିବା ଚାର୍ଟର ଆଇନ୍‌ର ମୁଖ୍ୟାଂଶ ହେଲା ଯେ, ଏଣିକି ପ୍ରଦେଶମାନଙ୍କରେ ଆଉ ଆଇନ୍ କାନୁନ୍ ପ୍ରଣୟନ କରିପାରିବେ ନାହିଁ । ସେମାନଙ୍କ ନିମିତ୍ତ ଗଭର୍ଣ୍ଣର ଜେନେରାଲ ଏବଂ ତାଙ୍କ ପରିଷଦ ଆଇନ୍ କାନୁନ୍ ପ୍ରଣୟନ କରିବେ ଏବଂ ଅର୍ଥନୈତିକ ସମ୍ପର୍କୀୟ କାର୍ଯ୍ୟ ଲାଗି ଗଭର୍ଣ୍ଣର-ଜେନେରାଲ୍‌ଙ୍କ ଉପରେ ନିର୍ଭର କରିବେ । ୧୮୫୩ ମସିହାର ଚାର୍ଟର ଆଇନ୍ ଅନୁଯାୟୀ ବ୍ରିଟିଶ ପାର୍ଲାମେଣ୍ଟକୁ କ୍ଷମତା ପ୍ରଦାନ କରାଗଲା ଯେ ଯେତେବେଳେ ଚାହିଁବ ଭାରତର ଶାସନ ବ୍ରିଟିଶ ରାଜାଙ୍କୁ ନ୍ୟସ୍ତ କରିପାରିବ । କମ୍ପାନୀର ଡାଇରେକ୍ଟରମାନଙ୍କ ସଂଖ୍ୟା ୨୪ରୁ ୧୮କୁ ସଙ୍କୁଚିତ କରି ଦିଆଗଲା ଏବଂ ସେମାନଙ୍କ ମଧ୍ୟରୁ ଛ ଜଣ ବ୍ରିଟିଶର ରାଜାଙ୍କ ଦ୍ୱାରା ମନୋନୀତ ହେବାର ବ୍ୟବସ୍ଥା କରାଗଲା । ଏହା ପରଠାରୁ ଗଭର୍ଣ୍ଣର ଜେନେରାଲ୍‌ଙ୍କ ପରିଷଦର ସମସ୍ତ ସଭ୍ୟ ଏବଂ ଗଭର୍ଣ୍ଣରମାନେ ରାଜାଙ୍କ ଦ୍ୱାରା ନିଯୁକ୍ତି ପାଇବେ । ପ୍ରଶାସନିକ ସେବାରେ ନିଯୁକ୍ତି ପାଇବା ଲାଗି ପ୍ରତିଯୋଗିତାମୂଳକ ପରୀକ୍ଷା ହେବାର ବ୍ୟବସ୍ଥା ରହିଲା । କେବଳ ବଙ୍ଗଳାର ଶାସନ ପାଇଁ ଏକ ଅଲଗା ଲେଫଟ୍‌ନାଣ୍ଟ ଗଭର୍ଣ୍ଣରଙ୍କୁ ନିର୍ଦ୍ଦେଶ ଦିଆଗଲା । ଏମାନଙ୍କର ଦରମା ବ୍ରିଟିଶ ସରକାରଙ୍କ ଦ୍ୱାରା ସ୍ଥିରୀକୃତ ହେବ କିନ୍ତୁ କମ୍ପାନୀ ଏହି ଦରମା ଦେବାର ଦାୟିତ୍ୱ ବହନ କରିବ ।

ସାମ୍ବିଧାନିକ ଦୃଷ୍ଟିକୋଣରୁ ବିଚାର କଲେ ଭାରତର ସମ୍ବିଧାନ ପ୍ରଣୟନର କ୍ରମବିକାଶ ବସ୍ତୁତଃ ୧୮୫୭ ମସିହାର ସିପାହୀ ବିଦ୍ରୋହ ପରଠାରୁ ମହାରାଣୀଙ୍କର ୧୮୫୮ ଘୋଷଣାପତ୍ର ଅନୁଯାୟୀ ହୋଇଥିଲା । ଏହି ଘୋଷଣାପତ୍ର ନଭେମ୍ବର ୧ ତାରିଖରେ କରାଯାଇଥିଲା । ସିପାହୀ ବିଦ୍ରୋହର ଅବସାନ ପରେ ଇଂଲଣ୍ଡର ମହାରାଣୀ ଭିକ୍ଟୋରିଆ ଭାରତର ଶାସନଭାର ଗ୍ରହଣ କରି କମ୍ପାନୀକୁ ସବୁ ଦାୟିତ୍ୱରୁ ମୁକ୍ତ କରି ଦେଇଥିଲେ । ଏହାପରଠାରୁ ଭାରତ ସମ୍ପୂର୍ଣ୍ଣ ରୂପେ ବ୍ରିଟିଶ ସାମ୍ରାଜ୍ୟଭୁକ୍ତ ହୋଇଥିଲା । ଏହି ଘୋଷଣାପତ୍ରରେ ଉଲ୍ଲେଖ ରହିଲା ଯେ,

➢ ଇଂଲଣ୍ଡର ରାଜା ସିଧାସଳଖ ଭାବରେ, ଏହା ପରଠାରୁ ଭାରତର ଶାସନ ଭାର ଗ୍ରହଣ କଲେ । ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତ ଉପରେ ଥିବା କର୍ତ୍ତୃତ୍ୱକୁ ହରାଇଲା ।

➢ ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ଼ କ୍ୟାନିଙ୍ଗ୍ ଏହାପରଠାରୁ ରାଜପ୍ରତିନିଧି (Viceroy) ଏବଂ ବ୍ରିଟିଶ ସରକାରଙ୍କ ପ୍ରତିନିଧି ରୂପେ ଭାରତରେ କାର୍ଯ୍ୟ କରିବେ ।

➢ ଇଷ୍ଟଇଣ୍ଡିଆ କମ୍ପାନୀ ଅଧୀନରେ କାର୍ଯ୍ୟରତ ସମସ୍ତ ସାମରିକ ଏବଂ ବେସାମରିକ କର୍ମଚାରୀ ଏବଂ ଚାକିରି ସର୍ତ୍ତାବଳୀଗୁଡ଼ିକ ବ୍ରିଟିଶ ସରକାର କାଏମ ରଖିବେ ।

➢ ଦେଶୀୟ ରାଜାମାନଙ୍କ ସହିତ ହୋଇଥିବା ସବୁ ପ୍ରକାର ସନ୍ଧି ଏବଂ ରାଜିନାମା ମଧ୍ୟ କାଏମ ରହିବ ଏବଂ ତତ୍‌ସହିତ ସମସ୍ତ ଦେଶୀୟ ରାଜାମାନେ ମଧ୍ୟ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ । ସମସ୍ତ ରାଜାମାନଙ୍କୁ ଆଶ୍ୱସନା ପ୍ରଦାନ କରାଗଲା ଯେ ବ୍ରିଟିଶ୍ ସରକାର ଏଣିକି ଆଉ ରାଜ୍ୟ ବିସ୍ତାର କାର୍ଯ୍ୟରେ ଲିପ୍ତ ରହିବ ନାହିଁ ଏବଂ ରାଜାମାନଙ୍କର ଅଧିକାର ଏବଂ ସମ୍ମାନକୁ ନିଜର ଭାବି ଅକ୍ଷୁଣ୍ଣ ରଖିବ ।

➢ ଭାରତୀୟ ଧର୍ମ ବିଶ୍ୱାସ ଓ ପରମ୍ପରାରେ ଆଦୌ ହସ୍ତକ୍ଷେପ କରିବ ନାହିଁ । ପରନ୍ତୁ ପୁରାତନ ପ୍ରଥା, ବିଶ୍ୱାସ ଏବଂ ଚିନ୍ତାଧାରାକୁ ସମ୍ମାନ ଜଣାଇବ ।

➢ ପ୍ରତ୍ୟେକ ଭାରତୀୟ ଧର୍ମ, ଜାତି, ବର୍ଣ୍ଣ ନିର୍ବିଶେଷରେ ନିଜ ନିଜ ଶିକ୍ଷା ଦକ୍ଷତା ଏବଂ ଆନୁଗତ୍ୟ ପ୍ରଦର୍ଶନ କରି ସରକାରୀ ଚାକିରି ପାଇବା ପାଇଁ ସମାନ ସୁବିଧା ସୁଯୋଗ ପାଇବେ ।

➢ ସମସ୍ତ ପ୍ରଜାମାନଙ୍କର ସର୍ବ ମଙ୍ଗଳ ନୀତିରେ ମହାରାଣୀଙ୍କ ସରକାର କାର୍ଯ୍ୟ ସମ୍ପାଦନ କରିବ ।

➢ ୧୮୫୭-୫୮ ବିଦ୍ରୋହରେ ଭାଗ ନେଇଥିବା ସମସ୍ତ ବ୍ୟକ୍ତି ବିଶେଷଙ୍କୁ କ୍ଷମା ପ୍ରଦାନ କରାଯିବ । କେବଳ ଯେଉଁମାନେ ବ୍ରିଟିଶ ଲୋକମାନଙ୍କୁ ହତ୍ୟା କରିଥିଲେ, ସେମାନେ ଛାଡ଼ ପାଇବେ ନାହିଁ ।

➢ ମହାରାଣୀଙ୍କ ଘୋଷଣାପତ୍ରକୁ ହିଁ ବ୍ରିଟିଶ ପାର୍ଲାମେଣ୍ଟ ଭାରତ ସରକାରଙ୍କ ଆଇନ୍ ୧୮୫୮ରେ ପରିଣତ କରିଥିଲା । ଏହା ମହାରାଣୀଙ୍କ ଘୋଷଣାପତ୍ରର ସମସ୍ତ ସର୍ତ୍ତାବଳୀ ବହନ କରି ଅନ୍ୟ କେତେକ ନୂତନ ଅଧିକାର ମଧ୍ୟ ପ୍ରଦାନ କରିଥିଲା । ବୋର୍ଡ଼ ଅଫ୍ କଣ୍ଟ୍ରୋଲ ଏବଂ କୋର୍ଟ ଅଫ୍ ଡାଇରେକ୍ଟର ଭଳି ସଂସ୍ଥାମାନଙ୍କୁ ଉଚ୍ଛେଦ କରାଗଲା ଏବଂ ସେମାନଙ୍କର ସମସ୍ତ କ୍ଷମତାକୁ ଭାରତ ପାଇଁ ନିଯୁକ୍ତ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଏବଂ ତାଙ୍କ ପରିଷଦ ହସ୍ତରେ ନ୍ୟସ୍ତ

କରାଗଲା । ଏକ ୧୫ ଜଣିଆ ସଭ୍ୟ ବିଶିଷ୍ଟ ଭାରତୀୟ ପରିଷଦ ଗଠନ କରାଗଲା । ଏମାନଙ୍କ ମଧ୍ୟରେ ୮ ଜଣ ରାଜାଙ୍କ ଦ୍ୱାରା ଏବଂ ଅନ୍ୟାନ୍ୟ ୭ ଜଣ ବର୍ତ୍ତମାନ ଦାୟିତ୍ୱରେ ଥିବା କୋର୍ଟ ଅଫ୍ ଡାଇରେକ୍ଟରଙ୍କ ଦ୍ୱାରା ନିଯୁକ୍ତି ପାଇବେ । ସେମାନେ ସେକ୍ରେଟେରୀ ଅଫ୍ ଷ୍ଟେଟ୍‌କୁ କାର୍ଯ୍ୟରେ ସାହାଯ୍ୟ କରିବେ । ଏହି ସଭ୍ୟମାନେ ଭାରତବର୍ଷରେ ଅତିକମ୍‌ରେ ୧୦ ବର୍ଷ କାର୍ଯ୍ୟ କରିଥିବେ ଏବଂ ନିଯୁକ୍ତି ପାଇବାର ଅନ୍ତତଃ ୧୦ ବର୍ଷ ଆଗରୁ ଭାରତ ଛାଡ଼ି ଦେଇଥିବେ ।

କିନ୍ତୁ ଏଥିରେ କିଛି ତ୍ରୁଟି ପରିଲକ୍ଷିତ ହେବାର ଭାରତୀୟ ପରିଷଦ ଆଇନ୍ ୧୮୬୧ ସଂଶୋଧିତ ହୋଇ ପ୍ରଣୀତ ହୋଇଥିଲା । ଏହି ଆଇନ୍‌କୁ ପ୍ରଥମ 'ହିତୈଷୀ ସ୍ୱୈରତନ୍ତ୍ର' (Policy of benivolent despotism) ନୀତି ବୋଲି ମଧ୍ୟ ଅଭିହିତ କରାଯାଇଛି । କାରଣ ପ୍ରଥମ ଥର ଜଣେ ଭାରତୀୟଙ୍କୁ ଶାସନ କଳରେ ରଖିବାର ପ୍ରୟାସ ଏହି ଆଇନ୍ ଦ୍ୱାରା ଗୃହୀତ ହୋଇଥିଲା । ଏହି ଆଇନ୍‌ର ମୁଖ୍ୟ ବ୍ୟବସ୍ଥାଗୁଡ଼ିକ ହେଲା -

➢ ବିଧି ବ୍ୟବସ୍ଥା କରିବା ଲାଗି ଗଭର୍ଣ୍ଣର ଜେନେରାଲଙ୍କ ଶାସକ ପରିଷଦରେ ଅତିରିକ୍ତ ସଭ୍ୟମାନଙ୍କୁ ମନୋନୀତ କରାଯିବ । ଏମାନଙ୍କ ସଂଖ୍ୟା ୬ରୁ ୧୨ ମଧ୍ୟରେ ରହିବ । ଏମାନେ ସମସ୍ତେ ଗଭର୍ଣ୍ଣର ଜେନେରାଲଙ୍କ ଦ୍ୱାରା ମନୋନୀତ ହେବେ ଏବଂ ଏହି ଅତିରିକ୍ତ ପରିଷଦରେ ମଧ୍ୟ ଭାରତୀୟ ସଭ୍ୟ ରହିପାରିବେ । ଏମାନଙ୍କର ମୁଖ୍ୟ କାର୍ଯ୍ୟ ହେଲା ଗଭର୍ଣ୍ଣର ଜେନେରାଲଙ୍କୁ ବିଧି ବ୍ୟବସ୍ଥାରେ ପରାମର୍ଶ ପ୍ରଦାନ କରିବା କିନ୍ତୁ ଗଭର୍ଣ୍ଣର ଜେନେରାଲ ଏହି ପରାମର୍ଶ ଗ୍ରହଣ କରିବାକୁ ବାଧ୍ୟ ନୁହନ୍ତି । ଏତଦ୍‌ବ୍ୟତୀତ ଅତିରିକ୍ତ ପରିଷଦର ସଭ୍ୟମାନେ ଗଭର୍ଣ୍ଣର ଜେନେରାଲଙ୍କ ଶାସକ ପରିଷଦ ଉପରେ କର୍ତ୍ତୃତ୍ୱ ଜାହିର କରିପାରିବେ ନାହିଁ । ଗଭର୍ଣ୍ଣର ଜେନେରାଲଙ୍କ ପୂର୍ବାନୁମତି ବିନା ଏହି ପରିଷଦ କୌଣସି ଗୁରୁତ୍ୱପୂର୍ଣ୍ଣ ସମ୍ପର୍କିତ ବିଷୟ, ଯଥା- ଧର୍ମ, ପ୍ରତିରକ୍ଷା ଇତ୍ୟାଦି ଉପରେ ଖସଡ଼ା ପ୍ରସ୍ତୁତ କରିପାରିବେ ନାହିଁ ।

➢ ଗଭର୍ଣ୍ଣର ଜେନେରାଲଙ୍କ ଶାସକ ପରିଷଦରେ ପ୍ରତ୍ୟେକ ସଭ୍ୟଙ୍କୁ ସ୍ୱତନ୍ତ୍ର ଭାବେ ଏକ ବିଭାଗର ଦାୟିତ୍ୱ ଅର୍ପଣ କରିବା ସଂଗେସଂଗେ ସେମାନଙ୍କୁ ନିଜ ନିଜ ବିଭାଗର କାର୍ଯ୍ୟ ଶୈଳୀରେ ସ୍ୱ-ସିଦ୍ଧାନ୍ତ ନେବାର କ୍ଷମତା ମଧ୍ୟ ପ୍ରଦାନ କରାଗଲା । କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ସେମାନଙ୍କ ପରିସରଭୁକ୍ତ ନହୋଇ ଏହା ଶାସକ ପରିଷଦ ମଧ୍ୟରେ ଆଗତ କରାଯିବାର ପ୍ରସ୍ତାବ ରହିଲା ।

➢ ଜରୁରୀକାଳୀନ ପରିସ୍ଥିତିରେ ଗଭର୍ଣ୍ଣର ଜେନେରାଲଙ୍କୁ ଅଧ୍ୟାଦେଶ ଜାରି କରିବାର କ୍ଷମତା ପ୍ରଦାନ କରାଗଲା ଏବଂ ସେକ୍ରେଟେରୀ ଅଫ୍ ଷ୍ଟେଟ ଓ ତାଙ୍କର ପରିଷଦ ଅଥବା କେନ୍ଦ୍ରର ବିଧାନସଭା ପରିଷଦ ଏହାକୁ ପ୍ରତ୍ୟାହାର କରି ନେବା ଲାଗି ନିର୍ଦ୍ଦେଶ ଦେବା ପର୍ଯ୍ୟନ୍ତ ଏହା ଆଇନ୍ ଭାବରେ ବଳବତ୍ତର ରହିବ ।

➢ ପ୍ରଦେଶମାନଙ୍କୁ ନିଜ ଲାଗି ଆଇନ୍ ପ୍ରଣୟନ କରିବା ପାଇଁ ସ୍ୱତନ୍ତ୍ର କ୍ଷମତା ପ୍ରଦାନ କରାଗଲା । ଏଥିପାଇଁ ପ୍ରଦେଶରୁ ଶାସକ ପରିଷଦକୁ ବର୍ଦ୍ଧିତ କରାଗଲା । ଏହି ପରିଷଦରେ ୪-୮ ଜଣ ସଭ୍ୟଙ୍କୁ ମନୋନୀତ କରିବା ଲାଗି ଗଭର୍ଣ୍ଣରଙ୍କୁ କ୍ଷମତା ପ୍ରଦାନ କରାଗଲା । ଏମାନଙ୍କର କାର୍ଯ୍ୟକାଳ ୨ ବର୍ଷ ସ୍ଥିରୀକୃତ ହେଲା । ଭାରତୀୟମାନଙ୍କୁ ମଧ୍ୟ ଏହି ପରିଷଦରେ ଗ୍ରହଣ କରାଯିବାର ବ୍ୟବସ୍ଥା ରଖାଗଲା । କିନ୍ତୁ ଗଭର୍ଣ୍ଣର ଏମାନଙ୍କର ପରାମର୍ଶ ଗ୍ରହଣ କରିବା ଲାଗି ବାଧ୍ୟ ନୁହନ୍ତି । କୌଣସି ପ୍ରଣୀତ ଖସଡ଼ା ଗଭର୍ଣ୍ଣରଙ୍କ ସ୍ୱୀକୃତି ସହିତ ଗଭର୍ଣ୍ଣର ଜେନେରାଲଙ୍କ ସ୍ୱୀକୃତି ଲାଭ କଲା ପରେ ଆଇନ୍‌ରେ ପରିଣତ ହେବ । ଏହି ପରିଷଦ ନିଜ ତରଫରୁ କୌଣସି ଖସଡ଼ା ଗଭର୍ଣ୍ଣରଙ୍କ ପୂର୍ବାନୁମତି ବିନା ପ୍ରସ୍ତୁତ କରିପାରିବେ ନାହିଁ ।

୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଗଠନ ପରେ ନରମପନ୍ଥୀମାନଙ୍କର ସାମ୍ବିଧାନିକ ଦାବି ବ୍ରିଟିଶ ସରକାରଙ୍କୁ ବିଶେଷ ଚାପର ବଶବର୍ତ୍ତୀ କରିଥିଲା । ଏହି ଆଇନର ଦୋଷ ଦୁର୍ବଳତାକୁ କଂଗ୍ରେସର ସଭ୍ୟମାନେ ସମାଲୋଚନା କରି ଏହାର ଆଶୁ ସମାଧାନ ଲାଗି ବାରମ୍ବାର ଦାବି ଉପସ୍ଥାପିତ କରିବାରୁ ବ୍ରିଟିଶ ସରକାର ବାଧ୍ୟ ହୋଇ ୧୮୯୨ରେ ଆଉ ଏକ ଆଇନ୍ ପ୍ରଣୟନ କଲେ ଯାହାକୁ ଭାରତୀୟ ପରିଷଦ ଆଇନ, ୧୮୯୨ ବୋଲି କୁହାଯାଏ । ଏହି ଆଇନ୍‌ର ମୁଖ୍ୟ ବ୍ୟବସ୍ଥାଗୁଡ଼ିକ ହେଲା -

➢ ପ୍ରାଦେଶିକ ବିଧାନସଭାରେ ମଧ୍ୟ ସଭ୍ୟ ସଂଖ୍ୟା ବଢ଼ାଇ ଦିଆଯାଇ ୮ରୁ ୨୦ ମଧ୍ୟରେ ସୀମିତ ରଖାଗଲା ଏବଂ ସେମାନଙ୍କ ମଧ୍ୟରେ ସଂଖ୍ୟାଧିକ ଅଣସରକାରୀ ସଭ୍ୟ ରହିବାର ବ୍ୟବସ୍ଥା ରହିଲା । ଗୋଟିଏ ପ୍ରଦେଶର ସଭ୍ୟ ସଂଖ୍ୟା ଅନ୍ୟ ପ୍ରଦେଶର ସଭ୍ୟ ସଂଖ୍ୟା ସହ ସମାନ ରଖିବାର ନୀତି ପ୍ରଣୟନ କରାଗଲା ନାହିଁ ।

➢ ବିଧାନ ପରିଷଦର ସଭ୍ୟମାନେ ଗଭର୍ଣ୍ଣର ଜେନେରାଲ ଏବଂ ଗଭର୍ଣ୍ଣରଙ୍କ ଦ୍ୱାରା ମନୋନୀତ ହେବାର ପ୍ରଥା ରହିଲା । କିନ୍ତୁ ସେମାନେ ଯେକୌଣସି ସଂସ୍ଥାପିତ - ସଂସ୍ଥା ଯଥା- କଲିକତା ଚାମ୍ବର ଅଫ୍ କର୍ମସ୍, ଜମିଦାର ଆସୋସିଏସନ୍, ୟୁନିଭରସିଟି ସିନେଟ୍ ଅଥବା ଡିଷ୍ଟ୍ରିକ୍ ବୋର୍ଡ଼ମାନଙ୍କ ଦ୍ୱାରା ସୁପାରିଶ ହୋଇଥିବା ଆବଶ୍ୟକ । ଏତଦ୍‌ବ୍ୟତୀତ ପ୍ରାଦେଶିକ ବିଧାନସଭାର ଅଣସରକାରୀ ସଭ୍ୟମାନେ କେନ୍ଦ୍ରକୁ କୌଣସି ବ୍ୟକ୍ତିଙ୍କୁ ସୁପାରିଶ କରି ପଠାଇବାର କ୍ଷମତା ଅର୍ଜନ କଲେ । ଏହାଦ୍ୱାରା ପରୋକ୍ଷ ନିର୍ବାଚନ ପ୍ରଣାଳୀ ଆରମ୍ଭ ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

➢ ଏହି ବିଧାନ ପରିଷଦର ସଭ୍ୟମାନଙ୍କ କ୍ଷମତାକୁ ସମ୍ପ୍ରସାରିତ କରାଗଲା ଯଦିଓ ସେମାନଙ୍କୁ ବାର୍ଷିକ ଆୟବ୍ୟୟ ହିସାବର ଖସଡ଼ା ପ୍ରସ୍ତୁତିରେ ଭାଗ ନେବାର ସୁଯୋଗ ଦିଆଗଲା । କିନ୍ତୁ ମତଦାନ କରିବାର ଅଧିକାରରୁ ବଞ୍ଚିତ କରାଗଲା ।

ଯାହାହେଉ ସମୟାନୁକ୍ରମେ ଏହି ଆଇନଗୁଡ଼ିକ ପରିବର୍ଦ୍ଧିତ ଏବଂ ପରିମାର୍ଜିତ ହୋଇ ଏକ ନୂତନ ଦିଗନ୍ତ ପ୍ରସ୍ତୁତି ପଥରେ ଅଗ୍ରସର ହୋଇଥିଲେ ।

ଭାରତୀୟ ଜାତୀୟ ଚିନ୍ତାଧାରାର ଉଦ୍ରେକ ଏବଂ ସ୍ୱାଧୀନତାର ମୋହ ଭାରତୀୟମାନଙ୍କୁ ଅଧିକ କ୍ଷମତା ପାଇବା ପାଇଁ ପ୍ରେରଣା ଦେଇଥିଲା । ସେମାନଙ୍କ ଦାବି ଫଳରେ ୧୯୦୯ ମର୍ଲେ-ମିଣ୍ଟୋ ରିଫର୍ମ ବା ଦି-ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆଇନ ୧୯୦୯ ପ୍ରଣୟନ କରାଗଲା । ଏହାର ମୁଖ୍ୟାଂଶଗୁଡ଼ିକ ହେଲା -

➢ ବିଧାନ ପରିଷଦର ସଭ୍ୟ ସଂଖ୍ୟାକୁ ୧୬ରୁ ୬୦ ପର୍ଯ୍ୟନ୍ତ ବୃଦ୍ଧି କରାଗଲା ।

➢ ପ୍ରାଦେଶିକ ବିଧାନସଭାର ସଭ୍ୟ ସଂଖ୍ୟା ମଧ୍ୟ ବର୍ଦ୍ଧିତ ହେଲା । କଲିକତା, ମାନ୍ଦ୍ରାଜ ଏବଂ ବମ୍ବେର ସଭ୍ୟ ସଂଖ୍ୟା ୫୦ ରହିବା ସ୍ଥଳେ ଅନ୍ୟ ପ୍ରଦେଶଗୁଡ଼ିକରେ ୩୦ ଜଣ ରହିଲେ । କେନ୍ଦ୍ର ଏବଂ ପ୍ରାଦେଶିକ ବିଧାନସଭାର ସଭ୍ୟମାନଙ୍କୁ ୪ ଭାଗରେ ବିଭକ୍ତ କରାଗଲା ଯଥା-

**ଆଫିସିକ ପଦ ହେତୁକ -** ଗଭର୍ଣ୍ଣର ଜେନେରାଲ ଏବଂ ଗଭର୍ଣ୍ଣର ଶାସକ ପରିଷଦ ।

**ମନୋନୀତ ସରକାରୀ ସଭ୍ୟ -** ଗଭର୍ଣ୍ଣର ଜେନେରାଲ ଏବଂ ଗଭର୍ଣ୍ଣରଙ୍କ ଦ୍ୱାରା ମନୋନୀତ କେନ୍ଦ୍ର ଏବଂ ପ୍ରଦେଶ ପାଇଁ ଅଫିସରବୃନ୍ଦ ।

**ମନୋନୀତ ଅଣସରକାରୀ ସଭ୍ୟ -** ଗଭର୍ଣ୍ଣର ଜେନେରାଲ ଏବଂ ଗଭର୍ଣ୍ଣରମାନଙ୍କର କେନ୍ଦ୍ର ଏବଂ ପ୍ରଦେଶ ପାଇଁ ମନୋନୀତ ଅଣସରକାରୀ ସଭ୍ୟବୃନ୍ଦ ।

**ନିର୍ବାଚିତ ପ୍ରତିନିଧି -** ଭାରତର ବିଭିନ୍ନ ଶ୍ରେଣୀର ଲୋକଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧି ।

➢ ଏହି ନିର୍ବାଚନ ପ୍ରଣାଳୀରେ ବୃତ୍ତିଗତ ଏବଂ ସାମ୍ପ୍ରଦାୟିକ ଭିତ୍ତିରେ ପ୍ରତିନିଧିମାନଙ୍କୁ ନିର୍ବାଚିତ କରିବାର ବ୍ୟବସ୍ଥା ରହିବାରୁ ଏହାକୁ ସାମ୍ପ୍ରଦାୟିକ ନିର୍ବାଚନ ପଦ୍ଧତି ବୋଲି ଆଖ୍ୟା ଦିଆଗଲା ।

➢ କେନ୍ଦ୍ରରେ କିନ୍ତୁ ଅଫିସରମାନଙ୍କ ସଭ୍ୟ ସଂଖ୍ୟା ବିଶେଷ ଭାବରେ ରହିଥିବାବେଳେ ପ୍ରଦେଶମାନଙ୍କରେ ଅଣସରକାରୀ ସଭ୍ୟ ସଂଖ୍ୟା ମାତ୍ରାଧିକ ରହିଲା । କିନ୍ତୁ ସେମାନଙ୍କ ମଧ୍ୟରେ କେହି ନିର୍ବାଚିତ ପ୍ରତିନିଧି ନଥିଲେ ।

➢ ବିଧାନ ପରିଷଦର ସଭ୍ୟମାନଙ୍କର କ୍ଷମତାର ଅଭିବୃଦ୍ଧି କରାଗଲା । ସେମାନେ ଆୟବ୍ୟୟ ଆଲୋଚନାରେ ଭାଗ ନେଇ ପାରିବେ ଏବଂ ସଂଶୋଧିତ ପ୍ରସ୍ତାବ ମଧ୍ୟ ଆଗତ କରିପାରିବେ । ଏତଦ୍‌ବ୍ୟତୀତ ଏହା ଉପରେ ମତାଧିକାର ସାବ୍ୟସ୍ତ କରିପାରିବେ । କିନ୍ତୁ ଯେଉଁଗୁଡ଼ିକ ମତଦାନର ପରିସରଭୁକ୍ତ ହୋଇନଥିବ ତାହା ଉପରେ ମତଦାନ କରିପାରିବେ ନାହିଁ । ଜନସାଧାରଣଙ୍କ ସ୍ୱାର୍ଥ ନିମିତ୍ତ ନୂତନ ଖସଡ଼ା ପ୍ରଣୟନ କରିପାରିବେ ଏବଂ ପ୍ରଶ୍ନ ପଚାରିବାର ଅଧିକାର ଲାଭ କରିଥିବେ ।

୧୯୦୭ ମସିହାରେ ୨ ଜଣ ଭାରତୀୟ ସେକ୍ରେଟେରୀ ଅଫ୍ ଷ୍ଟେଟଙ୍କ ପରିଷଦକୁ ମନୋନୀତ ହୋଇଯାଇଥିଲେ । ୧୯୦୯ରେ ଗଭର୍ଣ୍ଣର ଜେନେରାଲ ତାଙ୍କ ଶାସନ ପରିଷଦକୁ ଜଣକୁ ମନୋନୀତ କରିବାର ଅଧିକାର ପାଇଥିଲେ ।

ଉପରୋକ୍ତ ଆଇନରେ ଅନେକ ତ୍ରୁଟି ପରିଲକ୍ଷିତ ହେବାରୁ ଏବଂ ଏହା ଭାରତୀୟମାନଙ୍କୁ ବିଭାଜିତ କରିବାରେ ଉଦ୍ଦିଷ୍ଟ ଥିବାରୁ ଦେଶରେ ଚରମପନ୍ଥୀମାନଙ୍କର ବିଶେଷ ଭାବରେ ଆବିର୍ଭାବ ଘଟିଲା । ସେମାନଙ୍କ କ୍ରମାନ୍ୱୟ ଦାବି ଫଳରେ ବିଭିନ୍ନ ସମୟରେ ସଂଶୋଧିତ ଆଇନ ପ୍ରଣୟନ କରାଗଲା । ଯେପରିକି ୧୯୧୯, ୧୯୩୫ରେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆଇନ୍ ପ୍ରଣୟନ କରାଯାଇଥିଲା । ଏହାପରେ ୧୯୪୭ରେ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ କରାଯାଇଥିଲା । ଏହି ଭାରତୀୟ ସମ୍ବିଧାନ ସମୟାନୁସାରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ସାମ୍ବିଧାନିକ ସଂଶୋଧନ ସହିତ ଆଗେଇ ଚାଲିଛି ।

ସ୍ନାତକୋତ୍ତର, ଇତିହାସ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ, କଟକ


THE CONSTITUTION OF INDIA

WE, THE PEOPLE OF INDIA, having solemnly resolved to constitute India into a SOVEREIGN DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

ଭାରତର ମୂଳ ସଂବିଧାନର କପି

# ଆମ ସମ୍ବିଧାନ କହେ ଆମେ ସମାନ

ଡଃ ଶରତ ଚନ୍ଦ୍ର ପରିଡ଼ା

**ଗୋ**ଟିଏ ଲିଖିତ ସମ୍ବିଧାନ ପ୍ରାୟତଃ ପ୍ରସ୍ତାବନାରେ ଆରମ୍ଭ ହୁଏ । ସମ୍ବିଧାନର ଗୁଣ, ଚରିତ୍ର ଓ ରୂପର ଏକ ସରଳ ତଥା ସଂକ୍ଷିପ୍ତ ପରିଚୟ ଏଥିରେ ଦିଆଯାଇଛି । ଏହା ସମ୍ବିଧାନର ଦର୍ପଣ । ଏଥିରେ କୁହାଯାଇଛି ଯେ, 'ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିବା ଲାଗି ଶୁଦ୍ଧପୂତ ମନରେ ଦୃଢ଼ ସଂକଳ୍ପ ହୋଇ ଆଜି ଜାନୁଆରୀ ୨୬ ତାରିଖ ଦିନ ୧୯୪୯ ନଭେମ୍ବର ୨୬ ତାରିଖରେ ଆମ ଶାସନ ବିଧାୟକ ସଭାରେ ଗୃହୀତ ଏହି ଶାସନ ବିଧାନକୁ ଗ୍ରହଣ କରୁଛୁ ଏବଂ ଶପଥ ନେଉଛୁ ଯେ ଭାରତର ପ୍ରତ୍ୟେକ ନାଗରିକ ସାମାଜିକ, ଅର୍ଥନୀତିକ ଓ ରାଜନୈତିକ କ୍ଷେତ୍ରରେ ସୁବିଚାର ଲାଭ କରିବେ, ପ୍ରତ୍ୟେକର ଚିନ୍ତା, ଭାବ, ଅଭିମତ, ଧର୍ମ ବିଶ୍ୱାସ ଓ ଈଶ୍ୱର ଉପାସନାରେ ସ୍ୱାଧୀନତା ରହିବ : ପ୍ରତ୍ୟେକ ନାଗରିକ ସମାନ ସୁବିଧା, ସୁଯୋଗ ଓ ସମାନ ଅଧିକାର ପାଇବେ । ବ୍ୟକ୍ତିଗତ ମହତ୍ୱ ଜାତିଗତ ଐକ୍ୟ ଉପରେ ପ୍ରତିଷ୍ଠିତ ଭ୍ରାତୃଭାବର ବିକାଶ ଉଦ୍ଦେଶ୍ୟରେ ଏହାକୁ ଆଇନରେ ପରିଣତ କରି ଆମେ ନିଜ ପ୍ରତି ପ୍ରୟୋଗ କରିବୁ ।'

ଭାରତର ସମ୍ବିଧାନ ତା'ର ନାଗରିକମାନଙ୍କୁ ଯେଉଁ ମୌଳିକ ଅଧିକାର ଦେଇଛି ତା'ର ତୁଳନା ନାହିଁ । ସେଥିରୁ ସମାନତାର ଅଧିକାର ସମ୍ବିଧାନର ୧୪ରୁ ୧୮ ଧାରା ପର୍ଯ୍ୟନ୍ତ ୫ ଗୋଟି ଧାରାରେ ବର୍ଣ୍ଣିତ । ଏହି ଅଧିକାରଟି ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ମୌଳିକ ଭିତ୍ତି । ବୈଧାନିକ, ପ୍ରଶାସନିକ ଓ ସାମାଜିକ ଦୃଷ୍ଟିକୋଣରୁ ଏହି ଅଧିକାରଟି ଗୁରୁତ୍ୱପୂର୍ଣ୍ଣ । ବାସ୍ତବ ଜୀବନରେ ଏହାର ପ୍ରୟୋଗ ଦେଖିଲେ ଏକ ପ୍ରଶ୍ନବାଚୀ ସୃଷ୍ଟି ହୋଇଥାଏ । ଏହି ଅଧିକାରଟି ଶୁଣିବାକୁ ଯେତିକି ସରଳ ଏହାର ପ୍ରାୟୋଗିକ କ୍ଷେତ୍ରଟି ସେତିକି ଜଟିଳ, ଦ୍ୱନ୍ଦ୍ୱାତ୍ମକ ଅନୁଭବ ହୁଏ । ଏକ ଜନକଲ୍ୟାଣକର ରାଷ୍ଟ୍ରର ସାମ୍ବିଧାନିକ ଆଦର୍ଶ ଦୃଷ୍ଟିରୁ ଏହା ଅତି ଉତ୍ତମ ବ୍ୟବସ୍ଥା କିନ୍ତୁ ଆଚରଣ ଦୃଷ୍ଟିରୁ ଜଣେ ନାଗରିକ ଅନେକ ଅସମାନତାର ସମ୍ମୁଖୀନ ହୋଇଥାଏ ।

ଆର୍ଥିକ ବୈଷମ୍ୟ ଆମ ଗଣତନ୍ତ୍ରର ମୂଳଦୁଆକୁ ଦୋହଲାଇ ଦେଉଛି । ପଣ୍ଡିତ ଜବାହରଲାଲ ନେହରୁ ନବଭାରତର ଅନ୍ୟତମ ଶିଳ୍ପୀ ଥିଲେ । ୧୯୫୪ ମସିହାରେ ଭାରତର ଆର୍ଥିକ ସମୃଦ୍ଧି ଓ ବିକାଶକୁ ଲକ୍ଷ୍ୟ କରି ସେ କହିଥିଲେ - ଆମେ ଦେଶର ୩୬୦ ନିୟୁତ ଲୋକଙ୍କ ପାଇଁ, କେତେକଙ୍କ ପାଇଁ ନୁହେଁ । କୌଣସି ଗୋଟିଏ ଗୋଷ୍ଠୀ ପାଇଁ ନୁହେଁ । ଆମେ ସମୂହ ଜନଗଣଙ୍କ ପାଇଁ ଏବଂ ସମସ୍ତଙ୍କର ସମାନ ଭିତ୍ତିରେ ବିକାଶ ସାଧନ କରିବା ଆମର ପ୍ରଧାନ କର୍ତ୍ତବ୍ୟ । କିନ୍ତୁ ଭାରତର ଆର୍ଥିକ ସ୍ଥିତିକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ଆମେ ବସ୍ତୁତଃ ଦୁଇଟି ଦୁନିଆରେ ବାସ କରୁଛୁ । ଗୋଟିଏ ଥିଲାବାଲା ଅନ୍ୟଟି ନଥିଲାବାଲା । ଗୋଟିଏ ଦୁନିଆର ଲୋକେ ସୁଖ, ପ୍ରାଚୁର୍ଯ୍ୟ, ଭୋଗବିଳାସ, ଅର୍ଥ, କ୍ଷମତା ଓ ପ୍ରତିପତ୍ତି ମଧ୍ୟରେ ଉବୁଟୁବୁ ହେଲାବେଳେ ଅନ୍ୟ ଦୁନିଆର ଅଧିବାସୀଗଣ ଦୁଃଖ, ଦୈନ୍ୟ, ରୋଗ ଓ କ୍ଲେଶ ମଧ୍ୟରେ ଜୀବନ ବିତାଉଛନ୍ତି । କେତେକ ଆଧୁନିକତାର ସମସ୍ତ ସ୍ୱାଦ ଚାଖୁଥିଲାବେଳେ ଅନ୍ୟ କେତେକ ଅର୍ଦ୍ଧ ପ୍ରସ୍ଫୁଟିତ କଳିକା ପରି ଅକାଳରେ ମଉଳି ପଡୁଛନ୍ତି । ଏହି ଅର୍ଥନୀତିକ ବିଭେଦତା ପରସ୍ପରକୁ ଦୂରେଇ ଦେଇଛି ଅନେକ ମାତ୍ରାରେ ।

ମିଳିତ ଜାତିସଂଘର ରିପୋର୍ଟ ଅନୁଯାୟୀ ଗତ ତିନି ଦଶନ୍ଧି ମଧ୍ୟରେ ବିଶ୍ୱରେ ଦରିଦ୍ରମାନଙ୍କର ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଉଛି । ପୃଥିବୀ ଜନସଂଖ୍ୟାର ଏକ ଚତୁର୍ଥାଂଶ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ସଢୁଛନ୍ତି । ଭାରତରେ ଏହା ୨୬ ଶତାଂଶ । ଖାଦ୍ୟ, ବସ୍ତ୍ର ଓ ବାସଗୃହ ବିନା ଅତି ଲଜ୍ଜାଜନକ ପରିସ୍ଥିତିରେ ବାସ କରୁଛନ୍ତି । ଜୀବନଧାରଣର ସାମାନ୍ୟତମ ସମ୍ବଳ ମଧ୍ୟ ସେମାନଙ୍କ ପାଖରେ ନାହିଁ । ଆତ୍ମନିଯୁକ୍ତିର ଅଭାବ ଏଭଳି ଦଶାର ମୁଖ୍ୟ କାରଣ । ୨୦୦୪ ମସିହାରେ କରାଯାଇଥିବା ଅର୍ଥନୈତିକ ସର୍ବେକ୍ଷଣରୁ ଜଣାଯାଇଛି ଯେ ୧୯୯୩-୯୪ରୁ ୧୯୯୯-୨୦୦୦ ମଧ୍ୟରେ ବେକାରୀ ୫.୯ ଶତାଂଶରୁ ୭.୨ ଶତାଂଶକୁ ବୃଦ୍ଧି ପାଇଛି । କିଛି ବର୍ଷ ହେଲା ଦେଖାଯାଉଛି ଜାତୀୟ ଆୟ ବଢୁଛି ତାହା ସହିତ ଗରିବି ମଧ୍ୟ ଆଖିଦୃଶିଆ ଭାବରେ ବଢ଼ି ଚାଲିଛି । ଅଳ୍ପ ଲୋକଙ୍କ ହାତରେ ଧନ ଠୁଳ ହେଉଛି ବୋଲି ବିଶ୍ୱବ୍ୟାଙ୍କ ୨୦୦୫ରେ ତା'ର ରିପୋର୍ଟରେ

ପ୍ରକାଶ କରିଛି । ବହୁତ ଭଲକାମ ଭିତରେ ପ୍ରାଚୁର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟ ଜଗତୀକରଣରୁ ହିଁ ଜନ୍ମ ନେଉଛି । ଭୋଗବାଦ ପ୍ରତି ଆକର୍ଷଣ ବଢ଼ିବା ଫଳରେ ଜାତୀୟ ସଂପଦର ସୁଷମ ବଣ୍ଟନ ହୋଇପାରୁନାହିଁ । ଅଳ୍ପ ଲୋକଙ୍କ ହାତରେ ଅର୍ଥ, ସୁବିଧା ସୁଯୋଗ ଠୁଳ ହେଉଛି । ମୁଣ୍ଡପିଛା ଆୟ ବଢୁଛି । ଆଭ୍ୟନ୍ତରୀଣ ଉତ୍ପାଦନ ମଧ୍ୟ ବଢୁଛି । ସେହିପରି ଧନୀ ଓ ଗରିବ ମଧ୍ୟରେ ବୈଷମ୍ୟ ମଧ୍ୟ ତାଳ ଦେଇ ବଢ଼ି ଚାଲିଛି । କିନ୍ତୁ ମନେ ରଖିବାକୁ ହେବ ସମତା ଓ ବିକାଶ ପରସ୍ପର ପରିପୂରକ । ତେଣୁ ଅର୍ଥନୈତିକ ବୈଷମ୍ୟର ପ୍ରାଚୀରକୁ ପ୍ରଥମେ ଭାଙ୍ଗିବାକୁ ପଡ଼ିବ । ସାଧାରଣ ଲୋକ ଯେପରି ବିକାଶ ପ୍ରକ୍ରିୟାରେ ଭାଗ ନେଇ ସଂସ୍କାରର ସୁଫଳ ସମାନ ଭାବରେ ପାଇପାରିବ ସେଥିପାଇଁ ସବୁସ୍ତରରେ ଯତ୍ନ ନେବା ଦରକାର । କେନ୍ଦ୍ର ସରକାରଙ୍କ ନାନା ଆର୍ଥିକ ନୀତି ମଧ୍ୟରେ ନିଶ୍ଚିତ କର୍ମସଂସ୍ଥାନ ଆଇନ୍ ଅର୍ଥାତ୍ ପ୍ରତ୍ୟେକ ପରିବାରର ଜଣେ ଲୋକଙ୍କୁ ୧୦୦ ଦିନ ପର୍ଯ୍ୟନ୍ତ କର୍ମସଂସ୍ଥାନ ଦେବାର ବ୍ୟବସ୍ଥା ନିଷ୍ଠାର ସହ କାର୍ଯ୍ୟକାରୀ ହେଲେ ତାହା ଫଳପ୍ରଦ ହୋଇପାରେ ।

ଭାରତ ବିକାଶ ପଥେ ରହିଛି । ଏହା ବଡ଼ମାନଙ୍କର କଥା । ହେଲେ ଏହାର ସାମାଜିକ ବୈଷମ୍ୟ ଦୂର ହୋଇପାରିଲେ ଏହାର ବିକାଶର ଧାରା ତ୍ୱରାନ୍ୱିତ ହୋଇପାରନ୍ତା । ସମ୍ବିଧାନର ୧୫ ଧାରା ନାଗରିକମାନଙ୍କୁ ସାମାଜିକ ସମାନତା ହେବା ପାଇଁ ଉଦ୍ଦିଷ୍ଟ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ଓ ଜନ୍ମସ୍ଥାନ ଭିତ୍ତିରେ ରାଷ୍ଟ୍ର କୌଣସି ନାଗରିକଙ୍କୁ ପାତର ଅନ୍ତର କରିବ ନାହିଁ କିମ୍ବା ସର୍ବସାଧାରଣ ଦୋକାନ, ଭୋଜନାଳୟ, ମନୋରଞ୍ଜନ ସ୍ଥାନ, କୂପ, ପୁଷ୍କରିଣୀ, ସ୍ନାନାଗାର, ରାସ୍ତା ଓ ସର୍ବସାଧାରଣ ଗନ୍ତବ୍ୟସ୍ଥଳ ବ୍ୟବହାର କରିବା ପାଇଁ କାହାରିକୁ ନିଷିଦ୍ଧ କରିବ ନାହିଁ । ସମାନତାର ଅଧିକାର ଦୃଷ୍ଟିରୁ ଏହା ଠିକ୍ ଅଛି । ମାତ୍ର ବାସ୍ତବ ଜୀବନରେ ଜଣେ ନାଗରିକ ପୂର୍ବାଲୋଚିତ ଆର୍ଥିକ, ସାମାଜିକ, ଜାତି, ସଂପ୍ରଦାୟ, ଶିକ୍ଷା, ଧର୍ମ ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁ ବିରୋଧୀ ବୈଷମ୍ୟର ଶିକାର ହୁଏ, ତାହା ଉଦ୍‌ବେଗର କାରଣ ହୋଇଛି ।

ଗଣତନ୍ତ୍ରରେ ଶିକ୍ଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ଅନୁଭବ କରି ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ ନିମନ୍ତେ ସମ୍ବିଧାନର ୪୫ ଧାରାରେ ୬ ବର୍ଷଠାରୁ ୧୪ ବର୍ଷ ବୟସ ପର୍ଯ୍ୟନ୍ତ ପିଲାମାନଙ୍କୁ ସାର୍ବଜନୀନ ଅବୈତନିକ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ପ୍ରଦାନ ନିମନ୍ତେ ବ୍ୟବସ୍ଥା ରହିଛି ।

ଆମ ଦେଶର ଅବନତିର ମୁଖ୍ୟ କାରଣ ହେଲା ମୌଳିକ ଶିକ୍ଷା । ସମ୍ବିଧାନରେ ସ୍ୱୀକୃତ ହେଲେ ମଧ୍ୟ ପ୍ରାଥମିକ ଶିକ୍ଷାଲାଭରୁ ଅଧାଅଧି ଶିଶୁ ବଞ୍ଚିତ । ବିଶେଷ କରି ଗାଁଗହଳିରେ, ସହର ବସ୍ତିରେ ନିମ୍ନବର୍ଗ ଲୋକଙ୍କ ମଧ୍ୟରେ ଶିକ୍ଷାର ନିମ୍ନବର୍ଗ ଲୋକଙ୍କ ମଧ୍ୟରେ ଶିକ୍ଷାର ଆଲୋକ ପଡ଼ିନାହିଁ । ଶିକ୍ଷାର ବିକାଶ ପାଇଁ ସରକାରୀ ଯୋଜନା ପ୍ରଣୟନ ହେଉଛି । ଜାତୀୟ, ଆନ୍ତର୍ଜାତୀୟ ସାହାଯ୍ୟପ୍ରାପ୍ତ ବହୁ ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ମଧ୍ୟ ସେଥିରେ ସମନ୍ୱୟ ରହୁନାହିଁ । ସ୍ୱଚ୍ଛତାର ଅଭାବ ମଧ୍ୟ ରହୁଛି । ନିରୀକ୍ଷଣ ନାହିଁ କିମ୍ବା କେହି କାହାପାଖରେ ଉତ୍ତରଦାୟୀ ମଧ୍ୟ ରହୁ ନାହାନ୍ତି । ତେଣୁ ସ୍ୱାଧୀନତା ପରେ ଶିକ୍ଷା ବୈଷମ୍ୟ ଦୂର କରିବା ପରିବର୍ତ୍ତେ ଅଧିକ ସୃଷ୍ଟି ହୋଇଛି ବୋଲି ୧୯୬୪-୬୬ରେ କୋଠାରୀ କମିଶନ ଯାହା କହିଥିଲେ ଏବେ ମଧ୍ୟ ସେହି ମତ ଅପରିବର୍ତ୍ତିତ ରହିଛି ।

ଆଜି ଶିକ୍ଷା ଘରୋଇକରଣର ଦ୍ୱାର ମୁହଁରେ । ଉଚ୍ଚଶିକ୍ଷା ଓ ବିଜ୍ଞାନ ଶିକ୍ଷା ବ୍ୟୟ ବହୁଳ । ଏଇ କେତେ ବର୍ଷ ତଳେ ଜଣେ ଚାଷୀ ମୂଲିଆର ପିଲା ନିଜ ଚେଷ୍ଟାରେ ଓ ସରକାରୀ ସାହାଯ୍ୟରେ ଉଚ୍ଚଶିକ୍ଷା ଲାଭ କରିପାରୁଥିଲା । ଆଜିର ବୈଷୟିକ ଜ୍ଞାନର ଦ୍ରୁତ ପ୍ରଚଳନ ଫଳରେ ସେ ସ୍ୱପ୍ନ ସେ ଆଉ ଦେଖିପାରୁ ନାହିଁ । ସେହି ପ୍ରତିଭାଦୀପ୍ତ ଶିଶୁମାନେ ଆଉ ଡାକ୍ତର, ଇଂଜିନିୟର, ପ୍ରଶାସକ ହୋଇପାରିବେ ନାହିଁ । ଭାରତର ନିରକ୍ଷର ସଂଖ୍ୟା ପ୍ରତ୍ୟେକ ବିକାଶଶୀଳ ଦେଶଠାରୁ ଅଧିକ । ଆମର ସାକ୍ଷରତା ପରିମାଣ ମୋଟେ ୬୫ ଶତାଂଶ । ଅବଶ୍ୟ ସାକ୍ଷରତା ପ୍ରସାର ପାଇଁ ଜାତୀୟ ସାକ୍ଷରତା ମିଶନ, ନିଶ୍ଚିତ ଶିକ୍ଷା ଯୋଜନା ଭଳି ସୁନ୍ଦର ପଦକ୍ଷେପମାନ କାର୍ଯ୍ୟକାରୀ ହେଉଛି । ମାତ୍ର ଏହି ଯୋଜନାରେ ଯେଉଁ କମ୍ ସଂଖ୍ୟକ ନିରକ୍ଷର ସାକ୍ଷର ହେଉଛନ୍ତି ସେମାନେ କେବଳ ସ୍ୱାକ୍ଷର ପାଇଁ ଯୋଗ୍ୟ । ପ୍ରକୃତ ବ୍ୟବହାରିକ ସାକ୍ଷରତା ସେମାନଙ୍କର ନାହିଁ କିମ୍ବା ନୂତନ ଜ୍ଞାନକୌଶଳ ଆହରଣ କରିବାକୁ ସେମାନେ ଅସମର୍ଥ । କେବଳ ଜନସଚେତନତା ହିଁ ଏ ଦିଗରେ ସଫଳତା ଆଣି ଦେଇପାରିବ ।

ସ୍ୱାସ୍ଥ୍ୟ ହିଁ ସଂପଦ । ଶରୀର ସୁସ୍ଥ ନଥିଲେ ଖାଲି ବ୍ୟକ୍ତି ନୁହେଁ ଗୋଟିଏ ଜାତି ମଧ୍ୟ ଦୁର୍ବଳ ହୋଇ ପଡ଼େ । ତେଣୁ ଜଣେ ସୁସ୍ଥ ରହିବା ସେ ବ୍ୟକ୍ତିର ଯେତିକି କର୍ତ୍ତବ୍ୟ, ସରକାରଙ୍କର ମଧ୍ୟ ଅନୁରୂପ ଦାୟିତ୍ୱ ରହିଛି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଅନୁଯାୟୀ ପ୍ରତି ଏକ ଲକ୍ଷ ଜନତାଙ୍କ ପାଇଁ ସର୍ବନିମ୍ନ ୩୩୩ଟି ଶଯ୍ୟାର ଆବଶ୍ୟକତା ଥିବାବେଳେ ଭାରତରେ ଏହା ୯୪ ଅଟେ । ଭାରତରେ ୩୦ ହଜାର ଲୋକଙ୍କ ପାଇଁ ଜଣେ ମାତ୍ର ସରକାରୀ ଡାକ୍ତର ଥା'ନ୍ତି । ଆହୁରି ମଧ୍ୟ ଡାକ୍ତରଖାନାରେ ଭର୍ତ୍ତି ହୋଇଥିବା ଶତକଡ଼ା ୪୦ ଭାଗ ରୋଗୀ ଧାର କରଜ କରି, ଜମିବାଡ଼ି ବିକି ଚିକିତ୍ସା ବାବଦ ଖର୍ଚ୍ଚ ତୁଲାଇଥା'ନ୍ତି । ଏହା ସ୍ୱାସ୍ଥ୍ୟର ଘରୋଇକରଣ, ସେବାର ମାନହ୍ରାସ, ଡାକ୍ତରମାନଙ୍କର ସେବା ମନୋଭାବ ବଦଳରେ ସ୍ୱାର୍ଥସାଧନ, ଶୋଷଣ ମନୋବୃତ୍ତି ଓ ପରସେଣ୍ଟ ଦିଆ ଔଷଧ ଯୋଗୁଁ ଗରିବ ରୋଗୀ ଅଧିକ ଅସହାୟ ଓ ଅତିଷ୍ଠ ହୋଇପଡୁଛି । ଆପୋଲୋ ପରି ହାସପାତାଳ ଖାଲି ଥିଲାବାଲାଙ୍କ ପାଇଁ । ଦରିଦ୍ର ରୋଗୀ କପାଳରେ ସିନା ହାତ ମାରିବା ସାର । ଶିଶୁ ଓ ମହିଳାମାନଙ୍କ କଥା କହୁଥିଲେ ସରିବନି । ଆମ ଦେଶ ଭିତରେ ମଧ୍ୟ ଅନେକ ପ୍ରଭେଦ ରହିଛି । କେରଳରେ ଯେପରି ଶିକ୍ଷା, ସ୍ୱାସ୍ଥ୍ୟ ଓ ଆୟୁଷର ଉନ୍ନତି ହୋଇଛି ଓଡ଼ିଶାରେ ସେପରି ହୋଇପାରିନାହିଁ । କେତେଗୁଡ଼ିଏ

ବେମାରିଆ ରାଜ୍ୟ ଅଛି ସେମାନଙ୍କୁ ବିମାରୁ (Bimaru) ରାଜ୍ୟ ବୋଲି କୁହାଯାଉଛି । ସେଗୁଡ଼ିକ ହେଉଛି ବିହାର (BI), ମଧ୍ୟପ୍ରଦେଶ (MA), ରାଜସ୍ଥାନ (R) ଓ ଉତ୍ତରପ୍ରଦେଶ (U) । ଓଡ଼ିଶା ରୋଗସଂଖ୍ୟା ଅତ୍ୟଧିକ ଥିବାରୁ ଏଥିରେ ଅନ୍ତର୍ଭୁକ୍ତ ହୋଇପାରିନାହିଁ । ବଡ଼ ଆଶ୍ୱାସନାର ବିଷୟ ଭାରତରେ ସ୍ୱାସ୍ଥ୍ୟକ୍ଷେତ୍ରରେ ଉନ୍ନତି ଘଟିଛି । ହାରାହାରି ପରମାୟୁ ବଢ଼ି ୬୫ ବର୍ଷରେ ପହଞ୍ଚିଛି । ମାତ୍ର ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା, ସାମାଜିକ ନିରାପତ୍ତାକୁ ଭିତ୍ତିକରି ଯେଉଁ ମାନବିକ ଉନ୍ନୟନ ସ୍ତର ହିସାବ କରାଯାଏ ଭାରତ ସେ ଦୃଷ୍ଟିରୁ ପଛରେ ପଡ଼ିଛି । ବିଶ୍ୱର ୧୨୬ଟି ଦେଶ ମାନବିକ ଉନ୍ନୟନ ସ୍ତରରେ ଭାରତଠାରୁ ଆଗରେ ଅଛନ୍ତି ।

ଆମ ଭାରତ ବହୁବର୍ଣ୍ଣର ଦେଶ । କେଉଁ କାଳରୁ ସେମାନେ ଏକତ୍ର ବାସ କରି ଆସୁଛନ୍ତି । ଏମାନଙ୍କ ମଧ୍ୟରେ କାଳେ ଜାତିକୁ ନେଇ ବିବାଦ ବା ସଂଘର୍ଷ ମୁଣ୍ଡ ଟେକିବ ସେଥିପାଇଁ ସମ୍ବିଧାନର ୧୭ ଧାରାରେ କୁହାଯାଇଛି - ଭାରତବର୍ଷରେ ଅସ୍ପୃଶ୍ୟତା ରହିବ ନାହିଁ । ଜଣେ ଅନ୍ୟଜଣକୁ ଅଛୁଆଁ ବୋଲି କହି ବ୍ୟବହାର କରିପାରିବ ନାହିଁ । ଏପରି କଲେ ଆଇନ୍ ଅନୁସାରେ ଦଣ୍ଡିତ ହେବ । ଗାନ୍ଧିଜୀ ଏହା ଉପରେ ଜୋର୍ ଦେଇ କହୁଥିଲେ, 'ଅସ୍ପୃଶ୍ୟତା ଏକ ପାପ ।' ଗଣତାନ୍ତ୍ରିକ ଚିନ୍ତାଧାରାର ଅନୁପ୍ରବେଶ ଦ୍ୱାରା ଜାତିଗତ ଭାବର ଉତ୍କଟତା କମିଛି ହେଲେ ସଂପୂର୍ଣ୍ଣ ବିଲୁପ୍ତ ହୋଇ ନାହିଁ । 'ସବୁ ମଣିଷ ସମାନ' କି ଶିକ୍ଷିତ କି ଅଶିକ୍ଷିତ ଅଧିକାଂଶ ରକ୍ଷଣଶୀଳ ନାଗରିକ ଏହା ଗ୍ରହଣ କରିପାରିନାହାନ୍ତି । ଆଉ ବେଳେ ବେଳେ କେତେକ ନ୍ୟସ୍ତସ୍ୱାର୍ଥ ରାଜନୈତିକ ଦଳ ନିଜର ଭୋଟ ସ୍ୱାର୍ଥ ପାଇଁ ଜାତିଆଣ ଭାବକୁ ଉସୁକାଇ ଏକ ଅସ୍ତ୍ର ରୂପେ ବ୍ୟବହାର କରି ଆମ ଜାତିଟାକୁ ନାନା ଭାବରେ ବାଣ୍ଟି ଦେଉଛନ୍ତି ।

ସମ୍ବିଧାନର ୩୫୧ ଧାରାରେ ଭାରତର ବିଚିତ୍ର ସଂସ୍କୃତି ଉପରେ ଆଲୋକପାତ କରାଯାଇଛି । ବିଭିନ୍ନ ଧର୍ମ ଦ୍ୱାରା ଯେଉଁ ସଂସ୍କୃତି ଗଢ଼ି ଉଠିଛି ସେମାନଙ୍କର ସଂହତି ଉପରେ ଗୁରୁତ୍ୱ ଦିଆଯାଇଛି । ଭାରତ ଏକମାତ୍ର ରାଷ୍ଟ୍ର ଯିଏ କି ଧର୍ମନିରପେକ୍ଷ ହୋଇ ରହିପାରିବ । ଏ ଦେଶର ଐତିହ୍ୟ, ପରମ୍ପରା, ଇତିହାସ, ଦର୍ଶନ ଓ ସଂସ୍କୃତ ସହାବସ୍ଥାନର କଥା କହେ । ଏହା ସମସ୍ତଙ୍କୁ ଗୋଟିଏ ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧି ରଖିଛି । ଏହି ବନ୍ଧନର ବୈଶିଷ୍ଟ୍ୟ ହେଉଛି ବିବିଧତା ମଧ୍ୟରେ ଐକ୍ୟ, ସର୍ବଧର୍ମ ସମଭାବ, ସହନଶୀଳତା, ଅହିଂସା ଓ ଅନ୍ୟ ଆଦର୍ଶ ପ୍ରତି ସମ୍ମାନବୋଧ । ଧର୍ମ ଏଠାରେ ବ୍ୟକ୍ତିତ୍ୱର ବିକାଶ ଓ ଆଚରଣରେ ଶୁଦ୍ଧତା ଆଣିବା ପାଇଁ ଉଦ୍ଦିଷ୍ଟ । କିନ୍ତୁ ବୈଜ୍ଞାନିକ ଚିନ୍ତାଧାରାର ବିକାଶ, ଉଦ୍‌ଭାବନ ଓ ଆବିଷ୍କାର ଯୋଗୁଁ ଧର୍ମ ଉପରୁ ଲୋକମାନଙ୍କର ଆସ୍ଥା ତୁଟି ଯାଉଛି । ସାଧାରଣ ଲୋକେ ବୁଝନ୍ତି ଧର୍ମ ହେଉଛି ବିଜ୍ଞାନ ବିରୋଧୀ । କିନ୍ତୁ ପଣ୍ଡିତମାନେ କହନ୍ତି - ବିଜ୍ଞାନ ଯେଉଁଠି ସରିଯାଏ, ଧର୍ମ ସେଇଠୁ ଆରମ୍ଭ ହୁଏ । ଏହା ସତ୍ୟ ଯେ ଧର୍ମ ଦ୍ୱାରା ମାନବ ସମାଜର କଳା, ସଂସ୍କୃତି ଏବଂ ଆଧ୍ୟାତ୍ମିକ କ୍ଷେତ୍ରରେ ବ୍ୟାପକ ପ୍ରଗତି ସାଧିତ ହୋଇଛି ମାତ୍ର ଧର୍ମାନ୍ଧ ଓ ମତାନ୍ଧମାନଙ୍କ ଯୋଗୁଁ ମାନବ ସମାଜର ବହୁ କଳାତ୍ମକ କୃତି ଧ୍ୱଂସ ପାଇଛି । ଆଧୁନିକ ଯୁଗରେ ମଧ୍ୟ ଧାର୍ମିକ ଭାବନାକୁ ନେଇ ଅସଂଖ୍ୟ ଛୋଟବଡ଼ ଆଞ୍ଚଳିକ ଦଳ ଓ ଉଗ୍ରବାଦୀ ସଂଗଠନ ଗଢ଼ି ଉଠୁଛି । ଧର୍ମର ସୀମା ସରହଦ ସୂଚାଇ ଦେଇ ଶ୍ରୀ କେ.ଏମ୍. ମୁନ୍‌ସୀ କହନ୍ତି - ଧର୍ମ ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ସୀମିତ ହୋଇରହିବ । ବାକି ଯେଉଁ ଜୀବନ ସେଥିରେ ନିୟନ୍ତ୍ରଣ, ସଂଯୋଗ ଓ ସଂସ୍କାର ଅଣାଗଲେ ତାହା ଏକ ସୁଦୃଢ଼ ରାଷ୍ଟ୍ର ଗଠନରେ ସାହାଯ୍ୟ କରିବ ।

ଭାରତର ସଂଖ୍ୟାଧିକ ନାଗରିକଙ୍କର ଅସନ୍ତୋଷ ଯେ କେତେକ ସଂପ୍ରଦାୟକୁ ସଂଖ୍ୟାଲଘୁ ସଂପ୍ରଦାୟ ନାମରେ କେତେକ ସ୍ୱତନ୍ତ୍ର ସୁବିଧା ସୁଯୋଗ ଦିଆଯାଉଛି । ବିଭିନ୍ନ ଜାତି, ଧର୍ମ ଓ ସଂପ୍ରଦାୟର ଲୋକେ ବାସ କରୁଥିବା ଦେଶରେ ସେହିସବୁ ଜାତି, ଧର୍ମ ଓ ସଂପ୍ରଦାୟକୁ ଭିତ୍ତି କରି ଆଇନ୍ ପ୍ରଣୟନ କରାଗଲେ ତାହା ଜାତୀୟ ଐକ୍ୟ ଓ ସଂହତିର ପରିପନ୍ଥୀ ହୋଇଥାଏ । ତେଣୁ ଆମ ସମ୍ବିଧାନର ୪୪ ଧାରା ଅନୁସାରେ ଦେଶର ନାଗରିକମାନଙ୍କୁ ଏକ ସାଧାରଣ ଦେୱାନି ଆଇନ୍ ପ୍ରଦାନ କରିବା ରାଷ୍ଟ୍ରର କାର୍ଯ୍ୟ ବୋଲି ଯେଉଁ ଉଲ୍ଲେଖ ରହିଛି, ତାହା ପ୍ରଚଳିତ ହେବା ଆବଶ୍ୟକ । ଯେଉଁ ସବୁଦେଶରେ ଏଭଳି ସମାନ ନାଗରିକ ସଂହିତା ପ୍ରଚଳିତ ନୁହେଁ ତାହାକୁ ଗଣତାନ୍ତ୍ରିକ ଦେଶ ବୋଲି କୁହାଯାଇପାରିବ ନାହିଁ । ସର୍ବୋଚ୍ଚ ନ୍ୟାୟାଳୟ ମଧ୍ୟ ଏହି ପରାମର୍ଶ ଦେଇଛନ୍ତି ।

ସମ୍ବିଧାନର ୧୪ ଧାରା ଅନୁଯାୟୀ ପ୍ରତ୍ୟେକ ଭାରତୀୟ ନାଗରିକ ଆଇନ୍ ନିକଟରେ ସମାନ ଓ ଆଇନ୍ ସମସ୍ତଙ୍କୁ ସମ ପରିମାଣର ସୁରକ୍ଷା ପ୍ରଦାନ କରିଛି । ସମ ବ୍ୟବସ୍ଥାରେ ଥିବା ନାଗରିକମାନେ ସମାନ ପ୍ରକାର ବ୍ୟବହାର ଲାଭ କରିବା ଉଚିତ । ସମ ଭାବରେ ସୁରକ୍ଷିତ ହେବା ଅର୍ଥ ସମାନ ପରିସ୍ଥିତିରେ ଥିବା ନାଗରିକଙ୍କ ପ୍ରତି ଆଇନ୍ ସମାନ ଭାବରେ ଲାଗୁ ହେବ । କାହାପ୍ରତି ଭେଦଭାବ ଓ ପକ୍ଷପାତ କରାଯିବ ନାହିଁ ।

ଆଇନ୍‌ର ଲକ୍ଷ୍ୟ ହେଲା ସମାଜରେ ସ୍ଥାୟିତ୍ୱ ପ୍ରତିଷ୍ଠା, ଶାନ୍ତିଶୃଙ୍ଖଳା ଅବ୍ୟାହତ ରଖିବା ତଥା ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା । ଆଇନ୍ ମଧ୍ୟ ସାମାଜିକ ତଥା ଅର୍ଥନୈତିକ ପରିବର୍ତ୍ତନ ଓ ପ୍ରଗତିର ମୁଖ୍ୟ ଅସ୍ତ୍ର । ତେଣୁ ନାଗରିକମାନେ ଆଇନ୍-ପ୍ରଶାସନ ସହିତ ସହଯୋଗ କଲେ ସଂଘଟିତ ହେଉଥିବା ଅପରାଧ ଅନାୟାସରେ ଅବଦମିତ ହୋଇପାରିବ ।

କ୍ଷମତା ଜନତାକୁ ପରିଚାଳନା କରିବାର ଦାୟିତ୍ୱ ଅଟେ । ନାଗରିକମାନଙ୍କର ଭଲ ମନ୍ଦ, ହାନିଲାଭ, ଅଭାବ ଅସୁବିଧା ବୁଝି ତା'ର ପ୍ରତିକାର କରିବା ପାଇଁ କ୍ଷମତା ଉଦ୍ଦିଷ୍ଟ । ଦେଶପ୍ରୀତି,

ବିଶ୍ୱକଲ୍ୟାଣ, ବିଶ୍ୱମୈତ୍ରୀ ଅଶେଷ କ୍ଷମତା ଲିପ୍‌ସା ପାଖରେ ଅର୍ଥହୀନ ହୋଇ ପଡୁଛି । କ୍ଷମତା କ୍ଷମତାକୁ ଜନ୍ମ ଦିଏ । କ୍ଷମତାଶାଳୀ ପ୍ରତିପତ୍ତିଶାଳୀ ହୋଇଥିବାରୁ ତାଙ୍କର ପ୍ରତିରୋଧ କରିବା ସହଜ ନୁହେଁ । ଫଳରେ ଶାସକ ଶାସିତ ବ୍ୟବଧାନ ବଢ଼ିବାରେ ଲାଗିଛି ।

ସାଂପ୍ରତିକ ଅର୍ଥନୈତିକ ପରିସ୍ଥିତିରେ ଆଞ୍ଚଳିକ ବୈଷମ୍ୟ ଉନ୍ନତ ଓ ଉନ୍ନତିଶୀଳ ଦେଶମାନଙ୍କରେ ଏକ ପ୍ରଧାନ ସମସ୍ୟା ରୂପେ ଦେଖାଦେଇଛି । ଆଞ୍ଚଳିକ ବିଷମତା କହିଲେ ଗୋଟିଏ ରାଜ୍ୟ ବା ଅଞ୍ଚଳ ଅନ୍ୟ ଗୋଟିଏ ରାଜ୍ୟ ବା ଅଞ୍ଚଳଠାରୁ କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ପାନୀୟ ଜଳଯୋଗାଣ, ବ୍ୟାଙ୍କ୍, ପୋଷ୍ଟ ଅଫିସ୍ ପ୍ରଭୃତି କ୍ଷେତ୍ରରେ କେତେ ଆଗୁଆ ବା କେତେ ପଛୁଆ ବୁଝାଏ । ଏହାଦ୍ୱାରା ଉନ୍ନତ ଅନୁନ୍ନତ ଅଞ୍ଚଳର ଲୋକମାନଙ୍କର ମୁଣ୍ଡପିଛା ଆୟ ଓ ଜୀବନ ଧାରଣର ମାନରେ ତାରତମ୍ୟ ପରିଲକ୍ଷିତ ହୁଏ । ଏହି ଅସମତୁଲ ଆର୍ଥିକ ପ୍ରଗତି ଗଭୀର ଉଦ୍‌ବେଗ ଓ ଅଶାନ୍ତିର କାରଣ ହୁଏ । ପ୍ରାକୃତିକ ସମ୍ବଳ, ଭୌଗୋଳିକ ପରିବେଶ, ଐତିହାସିକ ପୃଷ୍ଠଭୂମି, ଲୋକମାନଙ୍କର ରକ୍ଷଣଶୀଳ ମନୋବୃତ୍ତି ଆଞ୍ଚଳିକ ବୈଷମ୍ୟର କାରଣ ହୋଇପାରେ କିନ୍ତୁ ଏହାର ନିରାକରଣ ପାଇଁ ସରକାରୀ, ବେସରକାରୀ, ସ୍ୱେଚ୍ଛାସେବୀ ଓ ଜନସାଧାରଣ ନିର୍ବିଶେଷରେ ସମସ୍ତଙ୍କର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଓ ସକ୍ରିୟ ସହଯୋଗ ନିତାନ୍ତ ଆବଶ୍ୟକ ।

ଜାତୀୟ ସଂହତି ଓ ମୈତ୍ରୀଭାବନା ବିଷମତା ଦୂର କରିବାରେ ସହାୟକ ଅଟେ । ଧର୍ମ, ଭାଷା, ଚଳଣି ସବୁ ଅଲଗା ରହିଲେ ମଧ୍ୟ ତାହା ସବୁ ବ୍ୟକ୍ତିଗତ ସ୍ତରରେ ରହିବ । ଅନ୍ୟକୁ ସାନ ଓ ନିଜକୁ ବଡ଼ ଭାବିବାରେ ଏହା ବ୍ୟବହୃତ ହେବ ନାହିଁ । ବରଂ ଅନ୍ୟକୁ ଜାଣିବାର ଇଚ୍ଛା ଓ ଅନ୍ୟ ସହିତ ଭାବର ଆଦାନପ୍ରଦାନ କରିବାର ପ୍ରଚେଷ୍ଟା ରହିଲେ ଅନ୍ୟପ୍ରତି ଶ୍ରଦ୍ଧା ଓ ସମ୍ମାନ ଜାଗି ଉଠିଥାଏ । ବିଶ୍ୱଭାବନାରେ ଆଞ୍ଚଳିକ ଭାବନା ନିଶ୍ଚିହ୍ନ ହୋଇଯାଇଥାଏ । ସଂକୀର୍ଣ୍ଣତା ଓ ଅହଂକାରକୁ ଛାଡ଼ିଲେ ବ୍ୟକ୍ତିର ମନ ବିଶ୍ୱମନ ସହିତ ଏକାକାର ହୁଏ । ଗୋପବନ୍ଧୁଙ୍କ ଭାଷାରେ -

ବିରାଜିବ ବିଶ୍ୱେ ଏକତା ସମତା
ଶାନ୍ତି ଉଚ୍ଚାରିବେ ସରଗେ ଦେବତା ॥

ଭାରତର ଜଳବାୟୁ ଗଣତନ୍ତ୍ରର ବୃକ୍ଷ ନିମନ୍ତେ ଅତ୍ୟନ୍ତ ଅନୁକୂଳ । ଭାରତର ଧର୍ମ ଓ ଇତିହାସ ସାମ୍ୟର ଧ୍ୱଜା ଉଡ଼ାଏ । ଆମର ଧର୍ମଗ୍ରନ୍ଥ ଓ ପୁରାଣଶାସ୍ତ୍ର ସମାଜବାଦ ଚିନ୍ତାଧାରାର ଜୟଗାନ କରନ୍ତି ଓ ମାନବବାଦର ମନ୍ତ୍ର ପଢ଼ନ୍ତି । ସେଥିପାଇଁ ୧୯୩୫ ମସିହାରେ ବିଲାତରେ ଭାରତର ଶାସନ ବିଭାଗ ଦାୟିତ୍ୱରେ ଥିବା ମନ୍ତ୍ରୀ ଲର୍ଡ଼ ଜେଟ୍‌ଲ୍ୟାଣ୍ଡ କହିଥିଲେ - ଭାରତ ଶାସନ ବ୍ୟବସ୍ଥାରେ ଯେଉଁ ଲୋକ ପ୍ରତିନିଧିମୂଳକ ନୀତିନିୟମମାନ ଖଞ୍ଜା ଖାଇଛି, ତାହା ଭାରତର ଆର୍ଯ୍ୟ ବଂଶୋଦ୍ଭବ ଲୋକଙ୍କ ଚରିତ୍ର ତଥା ମିଜାଜକୁ ଭଲ ରୂପେ ଖାପ୍ ଖାଇବ, ଯଦ୍ୱାରା କି ଏହାର ଭିତ୍ତିଭୂମିରେ ଗଠିତ ଅନୁଷ୍ଠାନଗୁଡ଼ିକ ଖୁବ୍ ସଫଳତାର ସହିତ କାର୍ଯ୍ୟକାରୀ ହୋଇପାରିବ । ଏଥିପାଇଁ କେବଳ ଦୃଢ଼ ମନୋବଳ ଲୋଡ଼ା । ମୋଗଲ ଶାସକ ଆକବର ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଏକତା ପ୍ରତିଷ୍ଠା କରିଥିଲେ । ନାନକ, କବୀର, ତୁଳସୀଦାସ, ସୁରଦାସ ମୀରାବାଈ ଧର୍ମ ଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିଥିଲେ । ଭାରତୀୟ ନାଗରିକ ଏହି ସମନ୍ୱୟ ଭାବଧାରାରେ ଉଦ୍‌ବୁଦ୍ଧ ହେଲେ ବୈଷମ୍ୟର ମଞ୍ଜି ଆଉ ଗଜା ହୁଅନ୍ତା ନାହିଁ । ଭାରତୀୟ ଗଣତାନ୍ତ୍ରିକ ମୂଲ୍ୟବୋଧର ପରିସ୍ଫୁଟନ ଓ ଆଚରଣରେ ତାହା ପ୍ରକାଶିତ ହେଲେ ଲୋକ ଚରିତ୍ରରେ ସାମ୍ୟ ଭାବ ଫୁଟି ଉଠନ୍ତା । ଏହି ମୂଲ୍ୟବୋଧଗୁଡ଼ିକ ସମ୍ବିଧାନ ୫୧ (କ) ଧାରାରେ ନାଗରିକର ମୌଳିକ ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରସଙ୍ଗରେ ସ୍ଥାନିତ ହୋଇଛି । ସେଗୁଡ଼ିକ ସମ୍ବିଧାନ ପ୍ରତି ସମ୍ମାନ, ସ୍ୱାଧୀନତା ଆନ୍ଦୋଳନର ଆଦର୍ଶ ପ୍ରତି ଶ୍ରଦ୍ଧାଶୀଳ, ଦେଶର ଅଖଣ୍ଡତା ବଜାୟ ରଖିବା, ଦେଶର ସୁରକ୍ଷା ପାଇଁ ନିଜକୁ ଉତ୍ସର୍ଗ କରିବା, ସଂକୀର୍ଣ୍ଣତାରୁ ଉପରକୁ ଉଠି ଭାଇଚାରା ଭାବଧାରାକୁ ଉନ୍ନୀତ କରିବା, ଦେଶର ସଂସ୍କୃତିକୁ ଦୃଢ଼ୀଭୂତ କରିବା, ପରିବେଶ ଓ ବନ୍ୟପ୍ରାଣୀଙ୍କ ପ୍ରତି ସହାନୁଭୂତିଶୀଳ ହେବା, ସଂସ୍କାରମୁଖୀ ଚେତନାକୁ ଉନ୍ନତ କରିବା, ସର୍ବସାଧାରଣ ସଂପତ୍ତିକୁ ସୁରକ୍ଷା ଦେବା, ହିଂସା ତ୍ୟାଗ କରିବା, ଉତ୍କର୍ଷତା ଲାଭ କରିବା ପାଇଁ ଉଦ୍ୟମ କରିବା ଓ ସର୍ବୋପରି ରାଷ୍ଟ୍ରର ଅଗ୍ରଗତିକୁ ଅଧିକ ଉନ୍ନତ କରିବା ପାଇଁ ନିରବଚ୍ଛିନ୍ନ ଉଦ୍ୟମ କରିବା ରୂପରେ ସାମ୍ୟଭାବ ବିକାଶରେ ବଡ଼ ସହାୟକ ଅଟନ୍ତି ।

ଯେଉଁ କାର୍ଯ୍ୟ ଜନସମୂହର କଲ୍ୟାଣ ସାଧନ କରେ, ତାହା ହିଁ ସମ୍ବିଧାନସମ୍ମତ ଓ ତାହା ହିଁ ଆଇନ୍ । ଗଣତନ୍ତ୍ର ରାଷ୍ଟ୍ରର ନାଗରିକ ସତର୍କ ଓ ସଚେତନ ରହି ସଂଗଠିତ ଭାବରେ ଅନ୍ୟାୟର ପ୍ରତିବାଦ କଲେ ବିଷମତା ଦୂର ହୁଅନ୍ତା । ଜାତୀୟ ସଂପଦର ସୁଷମବଣ୍ଟନ ଓ ଆଞ୍ଚଳିକ ମନୋଭାବ ପରିହାର କରି ଭାରତକୁ ନିଜର ଗାଁ ବୋଲି ଭାବିବାକୁ ହେବ । ଜାତିର ଐକ୍ୟ ପ୍ରତି ସଜାଗ ଦୃଷ୍ଟି ରଖି ଏହାର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ । ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଶାସନ ସର୍ବୋତ୍ତମ ଏଥିରେ ସନ୍ଦେହ ନାହିଁ । ତେବେ ଜାତୀୟ ଚରିତ୍ର ଗଠନ ପାଇଁ ବ୍ୟକ୍ତି ଚରିତ୍ରରେ ପରିବର୍ତ୍ତନ ଆବଶ୍ୟକ ।

ସଂଗଠନ, ସଂପାଦକ
'ବର୍ଷା', ବି-୯୩/୧
ନାଲ୍‌କୋ, ଦାମନଯୋଡ଼ି, କୋରାପୁଟ

# ଭାରତୀୟ ଗଣତନ୍ତ୍ରର ସମ୍ବିଧାନ

ବିଜୟ କୁମାର ଦାଶ

ସମ୍ବିଧାନ ଗୋଟିଏ ରାଷ୍ଟ୍ରର ଅମୂଲ୍ୟ ସଂପଦ । ରାଷ୍ଟ୍ରର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଚିତ୍ର ସମ୍ବିଧାନରେ ହିଁ ସ୍ପଷ୍ଟ ଭାବେ ପ୍ରତିଫଳିତ ହୋଇଥାଏ । ସମ୍ବିଧାନକୁ ସାଧାରଣତଃ ରାଷ୍ଟ୍ରର ଦର୍ପଣ ଭାବରେ ଗ୍ରହଣ କରାଯାଇଥାଏ । ସମଗ୍ର ବିଶ୍ୱରେ ଭାରତର ସମ୍ବିଧାନର ଏକ ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଭାରତୀୟ ସମ୍ବିଧାନ ହେଉଛି ପୃଥିବୀର ସର୍ବାପେକ୍ଷା ବୃହତ୍ତମ ଲିଖିତ ସମ୍ବିଧାନ । ଏହାର କଳେବର କାରଣରୁ ନୁହେଁ, ବରଂ ଆଭିମୁଖ୍ୟ ଦୃଷ୍ଟିରୁ ଆମର ସମ୍ବିଧାନର ସ୍ଥାନ ଅନେକ ଉର୍ଦ୍ଧ୍ୱରେ । ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରର ଗଣତାନ୍ତ୍ରିକ ସମ୍ବିଧାନକୁ ଗଭୀର ଭାବେ ବିଶ୍ଳେଷଣ କରି ସେସବୁର ଉତ୍ତମ ନୀତିଗୁଡ଼ିକ ସୁନିର୍ବାଚିତ କରି ଆମର ସମ୍ବିଧାନର ପ୍ରଣେତାମାନେ ବିଶେଷ କରି ଇଂଲଣ୍ଡର ସଂସଦୀୟ ଶାସନ ବ୍ୟବସ୍ଥା, ଆମେରିକାର ରାଷ୍ଟ୍ର ସଂଘୀୟ ବ୍ୟବସ୍ଥା, ମୌଳିକ ଅଧିକାର ଏବଂ ଆୟର୍ଲାଣ୍ଡର ରାଷ୍ଟ୍ରୀୟ ନିର୍ଦ୍ଦେଶକ ନୀତି ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇ ସେସବୁକୁ ସମ୍ବିଧାନରେ ସ୍ଥାନ ଦେଇଛନ୍ତି । ଏହା ସହ ଦେଶର ମହାନ୍ ଐତିହ୍ୟ ଓ ପରମ୍ପରାକୁ ଦୃଷ୍ଟିରେ ରଖି ସେମାନେ ଅନେକ ନୂତନ ନୀତି ମଧ୍ୟ ସମ୍ବିଧାନରେ ଅନ୍ତର୍ଭୁକ୍ତ କରିଛନ୍ତି । ପୁନଶ୍ଚ, ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରାକୁ ଦୃଷ୍ଟିରେ ରଖି ସମ୍ବିଧାନ ପ୍ରଣେତାମାନେ ପଞ୍ଚାୟତିରାଜ ବ୍ୟବସ୍ଥା ଓ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆବଶ୍ୟକୀୟ ସାମ୍ବିଧାନିକ ନୀତି ପ୍ରଣୟନ କରିଯାଇଛନ୍ତି । ଦେଶର ସମସ୍ତ ନାଗରିକମାନଙ୍କୁ ସମାନ ଅଧିକାର ବିଶ୍ୱର କୌଣସି ରାଷ୍ଟ୍ରରେ ଗୋଟିଏ ଦିନରେ ପ୍ରାପ୍ତ ହୋଇ ନଥିଲା । ଦୀର୍ଘକାଳର ସଂଘର୍ଷ, ଘାତପ୍ରତିଘାତ ପରେ ଏହା ହାସଲ ହୋଇପାରିଥିଲା । କିନ୍ତୁ ଆମ ସ୍ୱାଧୀନ ଭାରତର ସମ୍ବିଧାନରେ ପ୍ରାରମ୍ଭରୁ ହିଁ ସମସ୍ତ ନାଗରିକଙ୍କ ପାଇଁ ଏକ ବିସ୍ତୃତ ସମାନ ଅଧିକାରର ସୂଚୀ ସ୍ଥାନିତ ହୋଇଥିଲା । ଏହାକୁ ମୌଳିକ ଅଧିକାରର ମାନ୍ୟତା ଦିଆଯାଇଥିଲା । ସମ୍ବିଧାନର ତୃତୀୟ ଭାଗରେ ଏ ସଂପର୍କରେ ଉଲ୍ଲେଖ କରାଯାଇଛି ଏବଂ ବିଭିନ୍ନ ସାମ୍ବିଧାନିକ ଅଧିକାରର ପ୍ରତିକାର ବ୍ୟବସ୍ଥା ୩୨ ଧାରାରେ ଦର୍ଶାଯାଇଛି । ଏହିସବୁ ମୌଳିକ ଅଧିକାରଗୁଡ଼ିକ ଭାରତୀୟ ଗଣତନ୍ତ୍ରର ରକ୍ଷକ ଭାବରେ କାର୍ଯ୍ୟ କରିଥାଏ ଏବଂ ଏହା ହିଁ ଭାରତୀୟ ଗଣତନ୍ତ୍ରକୁ ସୁଦୃଢ଼ କରିଛି । ଆମ ସମ୍ବିଧାନର ଏହା ଏକ ବିଶେଷତ୍ୱ ଅଟେ । ସେହିପରି ଭାରତ ଗୋଟିଏ ବହୁଭାଷୀ ରାଷ୍ଟ୍ର ହୋଇଥିବାରୁ ସମ୍ବିଧାନରେ ଭାଷାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ସମ୍ବିଧାନର ଅଷ୍ଟମ ଅନୁଚ୍ଛେଦରେ ଅଠରଟି ଭାଷାକୁ ସ୍ୱୀକୃତି ଦିଆଯାଇଛି ।

୧୯୪୬ ମସିହା ଡିସେମ୍ବର ୯ ତାରିଖରେ ତତ୍କାଳୀନ ସମ୍ବିଧାନ ପ୍ରକୋଷ୍ଠରେ ଏବେ ଯାହାକୁ ସଂସଦ ଭବନରେ କେନ୍ଦ୍ରୀୟ ଭବନ ବା Central Hall କୁହାଯାଉଛି, ପ୍ରଥମ ଥର ପାଇଁ କେନ୍ଦ୍ର ସମ୍ବିଧାନ ସଭାର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ ଜେ.ବି. କ୍ରିପାଲାନୀ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଅବଦୁଲ୍ କାଲାମ୍ ଆଜାଦ୍, ଗୋବିନ୍ଦ ବଲ୍ଲଭ ପନ୍ଥ, ବି.ଆର୍. ଆମ୍ବେଦକର, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ସରୋଜିନୀ ନାଇଡ୍ଡୁ, ହରେକୃଷ୍ଣ ମହତାବ ଏବଂ ଦଶ ଜଣ ନାରୀ ପ୍ରତିନିଧିଙ୍କ ସମେତ ୨୯୭ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତର ସାଧାରଣତନ୍ତ୍ର ପ୍ରବର୍ତ୍ତିତ ହୋଇଥିଲା । ସ୍ୱାଧୀନ ଭାରତର ସଂସଦ ମଧ୍ୟ ଏହି ଦିନ ପ୍ରତିଷ୍ଠିତ ହୋଇଥିଲା । ୧୯୫୨ ମସିହା ଏପ୍ରିଲ୍ ୧୭ ତାରିଖରେ ସଂସଦର ଦୁଇ ଗୃହ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିଲା । ଏହି ନିର୍ବାଚନରେ ୨୧ ଏବଂ ତଦୁର୍ଦ୍ଧ୍ୱ ବୟସର ଜନସାଧାରଣ ମତଦାନ କରିବାର ଅଧିକାର ପାଇଥିଲେ । ଏହି ନିର୍ବାଚନ ପରେ ଭାରତ ବିଶ୍ୱର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରଭାବରେ ସମ୍ମାନ ପାଇଲା ।

ଭାରତର ଲିଖିତ ସମ୍ବିଧାନ କୋଣାର୍କର ମୁଖଶାଳା ହେଉଛି ଏହାର ପ୍ରସ୍ତାବନା (Preamble) । ଏହା ଆମ ସମ୍ବିଧାନର ଲକ୍ଷ୍ୟ ଓ ଆଦର୍ଶର ସୂଚନା ଦେଇଥାଏ । ଭାରତୀୟ ସମ୍ବିଧାନର ଆତ୍ମା ଏହି ପ୍ରସ୍ତାବନାରେ କୁହାଯାଇଛି - 'ଆମେ ଭାରତର ଜନସାଧାରଣ ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଗଠନ କରିବା ପାଇଁ ଏବଂ ଏହାର ସମସ୍ତ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ, ରାଜନୈତିକ ନ୍ୟାୟ ଏବଂ ଚିନ୍ତା, ମତପ୍ରକାଶ, ବିଶ୍ୱାସ ଓ ଉପାସନାର ସ୍ୱାଧୀନତା, ସ୍ଥିତି ଓ ସୁଯୋଗର ସମାନତାର ଅଧିକାର ପ୍ରଦାନ କରିବା ତଥା ସେମାନଙ୍କ ମଧ୍ୟରେ

ବ୍ୟକ୍ତିର ମର୍ଯ୍ୟାଦା ଓ ଜାତୀୟ ଐକ୍ୟ ଏବଂ ସଂହତି ସୁନିଶ୍ଚିତ ଭାବରେ ରକ୍ଷା କରିବାରେ ଅନୁକୂଳ ଭ୍ରାତୃଭାବ ବୃଦ୍ଧି କରିବା ନିମିତ୍ତ ସତ୍ୟ ଓ ନିଷ୍ଠାର ସହିତ ସଂକଳ୍ପ କରି ଆମ୍ଭମାନଙ୍କର ଏହି ଶାସନ ବିଧାୟକ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସ ୨୬ ତାରିଖରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକାର, ପ୍ରଣୟନ ଓ ସମର୍ପଣ କଲୁ ।

ଏହି ପ୍ରସ୍ତାବନାକୁ ବିଶ୍ଳେଷଣ କଲେ ଭାରତ ଏକ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରର ସୂଚନା ମିଳିଥାଏ । ଭାରତକୁ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ଘୋଷଣା କରାଯାଇ ରାଜତନ୍ତ୍ରକୁ ପ୍ରତ୍ୟାଖାନ କରାଯାଇଛି । ଭାରତର ଶାସନ ମୁଖ୍ୟ ରାଷ୍ଟ୍ରପତି ପ୍ରତି ପାଞ୍ଚବର୍ଷରେ ଥରେ ପରୋକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ଭାରତର ସମ୍ବିଧାନ ଏଭଳି ଏକ ସରକାର ପ୍ରତିଷ୍ଠା କରିବାର ଉଦ୍ୟମ କରିଛି, ଯାହାର କ୍ଷମତା ଜନତାଠାରୁ ହିଁ ଆସିଛି ।

ଆମ ସମ୍ବିଧାନର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ ଏହାକୁ ଆବଶ୍ୟକତା ଅନୁଯାୟୀ ନମନୀୟ (Flexible) ଓ ଅନମନୀୟ (Rigid) କରାଯାଇଛି । ଏଥିରୁ ଆମର ସମ୍ବିଧାନ ପ୍ରଣେତାମାନଙ୍କର ଦୂରଦୃଷ୍ଟି ଏବଂ ଗତିଶୀଳତାର ପ୍ରମାଣ ମିଳିଥାଏ । ପଣ୍ଡିତ ଜବାହରଲାଲ ନେହେରୁ ଏକଦା କହିଥିଲେ 'ଆମେ ସମ୍ବିଧାନକୁ ଦୃଢ଼ ଓ ଚିରସ୍ଥାୟୀ କରିବାକୁ ଚାହୁଁ । କିନ୍ତୁ ଏହା ସଂଗେସଂଗେ ଏଥିରେ ନମନୀୟତା ରହିବା ଆବଶ୍ୟକ । ଯଦି ସମ୍ବିଧାନକୁ ଅନମନୀୟ କରାଯାଏ, ତେବେ ଜାତିର ଅଭିବୃଦ୍ଧି ବାଧାପ୍ରାପ୍ତ ହେବ । ଜାତି ହେଉଛି ଜୀବନ୍ତ । ତେଣୁ ପରିବର୍ତ୍ତନଶୀଳ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ସୁଯୋଗ ରଖିବା ଏକାନ୍ତ ଆବଶ୍ୟକ । ଆମେ ଭାବି ବଂଶଧରମାନଙ୍କର ହାତ ବାନ୍ଧି ଦେଇପାରିବା ନାହିଁ ।' ୧୯୫୦ ଜାନୁଆରୀ ୨୬ରେ ସମ୍ବିଧାନ କାର୍ଯ୍ୟକାରୀ ହେବା ପରଠାରୁ ଆଜି ପର୍ଯ୍ୟନ୍ତ ଏହା ବହୁବାର ସଂଶୋଧିତ ହୋଇଛି ଏବଂ ଏଥିପାଇଁ ଅନେକ ବିତର୍କର ମଧ୍ୟ ସୂତ୍ରପାତ ହୋଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଗତ ଦୁଇଶହ ବର୍ଷ ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ମାତ୍ର ଛବିଶ ଥର ସଂଶୋଧିତ ହୋଇଥିଲାବେଳେ ବିଗତ ପଚାଶ ବର୍ଷ ମଧ୍ୟରେ ଭାରତୀୟ ସମ୍ବିଧାନ ୯୦ରୁ ଅଧିକ ଥର ସଂଶୋଧିତ ହୋଇସାରିଲାଣି ।

ପୂର୍ବରୁ ଆମ ଦେଶରେ ସାବାଳକତ୍ୱର ବୟସ ସୀମା ୨୧ ବର୍ଷ ଥିଲା । ୧୯୮୯ରେ ୬୨ତମ ସମ୍ବିଧାନ ସଂଶୋଧନ ପରେ ଏହି ବୟସ ସୀମା ୧୮ ବର୍ଷକୁ ହ୍ରାସ କରାଯାଇଛି । ସଂପ୍ରତି ପ୍ରତିଟି ନିର୍ବାଚନରେ ୧୮ ବର୍ଷ କିମ୍ବା ତଦୁର୍ଦ୍ଧ୍ୱ ଭାରତୀୟ ନାଗରିକ ଭୋଟ ଅଧିକାର ପାଇଛନ୍ତି । ପାଶ୍ଚାତ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକରେ ସାର୍ବଜନୀନ ଭୋଟ ଅଧିକାର ପାଇବାପାଇଁ ଦୀର୍ଘକାଳ ସଂଗ୍ରାମ କରିବାକୁ ପଡ଼ିଥିଲା । କିନ୍ତୁ ସ୍ୱାଧୀନତା ଲାଭ ପରେ ଭାରତୀୟ ନାଗରିକମାନେ ଏହି ଅଧିକାର ସ୍ୱଳ୍ପ ସମୟରେ ପାଇପାରିଛନ୍ତି । ଏଥିପାଇଁ ଭାରତ ହେଉଛି ପୃଥିବୀର ବୃହତ୍ତମ ଗଣତନ୍ତ୍ର ।

ଆମର ଗଣତାନ୍ତ୍ରିକ ସମ୍ବିଧାନ ସମୟର କଷଟି ପଥରରେ ଦୃଢ଼ ବୋଲି ପ୍ରମାଣିତ ହୋଇ ସାରିଛି । ୭୩ତମ ସମ୍ବିଧାନ ସଂଶୋଧନରେ ଭାରତରେ ତ୍ରି-ସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାମ୍ବିଧାନିକ ମାନ୍ୟତା ଦିଆଗଲା । ଏହାଫଳରେ ପଞ୍ଚାୟତର ନିର୍ବାଚନ କରାଗଲା ଏବଂ ତୃଣମୂଳ ସ୍ତରରେ ଗଣତନ୍ତ୍ରର ଭିତ୍ତିଭୂମି ପ୍ରତିଷ୍ଠା ହେଲା । ଏକଦା ପଟ୍ଟାଭି ସୀତାରାମାୟା ପ୍ରକାଶ କରିଥିଲେ ଯେ ଭାରତୀୟ ରାଜ୍ୟ ହେଉଛି ଗୋଟିଏ ସୁଉଚ୍ଚ ମହଲ, ଏହାର ଆଧାର ହେଲା ପ୍ରାୟ ପାଞ୍ଚ ଲକ୍ଷ ପଞ୍ଚାୟତ ଏବଂ ପଞ୍ଚାୟତଗୁଡ଼ିକ ବାସ୍ତବରେ ହେଉଛନ୍ତି ଗ୍ରାମ୍ୟ ଗଣତନ୍ତ୍ର । ମହାତ୍ମା ଗାନ୍ଧୀ ଭାରତରେ ପ୍ରକୃତ ଗଣତନ୍ତ୍ରକୁ ଫଳପ୍ରସୂ କରିବା ପାଇଁ ସର୍ବଦା ପଞ୍ଚାୟତ ଉପରେ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ, 'ମୋର ଗ୍ରାମ୍ୟ ସ୍ୱରାଜ ହେଲା ପ୍ରତ୍ୟେକ ଗ୍ରାମ ଏକ ପୂର୍ଣ୍ଣ ଗଣତନ୍ତ୍ର ହେଉ । ବ୍ୟକ୍ତିଗତ ସ୍ୱାଧୀନତା ଆଧାରରେ ଏଠାରେ ଜନତନ୍ତ୍ର ରହୁ । ପ୍ରକୃତ ଗଣତନ୍ତ୍ର କଦାପି କେନ୍ଦ୍ରରେ ବସିଥିବା କୋଡ଼ିଏ ଜଣ ବ୍ୟକ୍ତିଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇପାରିବ ନାହିଁ । ଏହା କେବଳ ତୃଣମୂଳ ସ୍ତରରେ ପ୍ରତିଟି ଗାଁର ଲୋକମାନଙ୍କ ଦ୍ୱାରା ହିଁ କାର୍ଯ୍ୟକାରୀ କରାଯାଇପାରିବ । ଭାରତର ପ୍ରକୃତ ଗଣତନ୍ତ୍ରରେ ଗାଁ ହିଁ ମୁଖ୍ୟ । ଯଦି ଗୋଟିଏ ମାତ୍ର ଗାଁ ପଞ୍ଚାୟତିରାଜ ଚାହେଁ, ଯାହାକୁ ଇଂରାଜୀରେ Republic କୁହାଯାଏ, କେହି ତାକୁ ବାଧା ଦେଇପାରିବେ ନାହିଁ । ପଞ୍ଚାୟତର ଏକ ଅତି ପ୍ରାଚୀନ ସୁଗନ୍ଧ ରହିଛି । ଏହା ଗୋଟିଏ ଅତି ଉତ୍ତମ ଶବ୍ଦ । ଏହାର ଅର୍ଥ ହେଲା ଗ୍ରାମବାସୀଙ୍କ ଦ୍ୱାରା ନିର୍ବାଚିତ ପାଞ୍ଚଜଣ ବ୍ୟକ୍ତିଙ୍କର ଏକ ଗୋଷ୍ଠୀ । ଏହା ଏପରି ଏକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରେ, ଯାହାଦ୍ୱାରା ଭାରତର ଅସଂଖ୍ୟ ଗ୍ରାମ୍ୟ ରିପବ୍ଲିକ୍ ଶାସିତ ହୋଇଥାଏ ।

୧୯୬୧ ମସିହା ଜାନୁଆରୀ ୨୬ ସାଧାରଣତନ୍ତ୍ର ଦିବସରୁ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ଏପ୍ରିଲ୍ ୨୩, ୧୯୯୪ରେ ଅନୁଷ୍ଠିତ ପାର୍ଲାମେଣ୍ଟ ଭବନ ଅନେକ୍ସରେ 'ପଞ୍ଚାୟତରାଜ, ପାର୍ଲାମେଣ୍ଟ ସଦସ୍ୟ ଓ ବିଧାୟକ' ଶୀର୍ଷକ ଜାତୀୟ ସମ୍ମିଳନୀରେ ଓଡ଼ିଶାର କିମ୍ବଦନ୍ତୀ ପୁରୁଷ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କ ଉଦ୍‌ଘାଟନୀ ଅଭିଭାଷଣରେ କହିଥିଲେ, 'ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେତେଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହିନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନ ସର୍ବସ୍ୱ ହେବ ନାହିଁ । ଏହାହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠ ଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।' ତେଣୁ ଆମ ସମ୍ବିଧାନର ପଞ୍ଚାୟତିରାଜ ବ୍ୟବସ୍ଥା ଦ୍ୱାରା ତୃଣମୂଳ ସ୍ତରରେ ଗଣତନ୍ତ୍ରକୁ

ପହଞ୍ଚାଇଥିଲେ ମଧ୍ୟ ଏ ଦିଗରେ ଅନେକ କିଛି କରିବାର ଆବଶ୍ୟକତା ରହିଛି ।

ମହାତ୍ମା ଗାନ୍ଧୀ କହିଛନ୍ତି ଯେ ମୁଁ ଭାରତରେ ଏପରି ଏକ ସମ୍ବିଧାନ ପାଇଁ ଉଦ୍ୟମ କରିବି, ଯାହା ଭାରତକୁ ସମସ୍ତ ଦାସତ୍ୱ ଏବଂ ଅନ୍ୟମାନଙ୍କ ଅନୁଗ୍ରହରୁ ମୁକ୍ତ କରିବ । ଭାରତୀୟ ଗଣତନ୍ତ୍ରରେ ସବଳ ପରି ଦୁର୍ବଳର ମଧ୍ୟ ସମାନ୍ ସୁଯୋଗ ରହିବ । ଦେଶର ଦରିଦ୍ରତମ ବ୍ୟକ୍ତିର ଅନୁଭବ ହେବା ଉଚିତ୍ ଯେ ଏହା ହେଉଛି ତା'ର ଦେଶ ଏବଂ ଏହାର ନିର୍ମାଣରେ ତା'ର ମଧ୍ୟ ଏକ ପ୍ରଭାବଶାଳୀ ସ୍ୱର ରହିଛି । ସୁସ୍ଥ ଗଣତନ୍ତ୍ରରେ ହିଂସାର ସ୍ଥାନ ନାହିଁ । ଏକ ଅହିଂସା, ଶୃଙ୍ଖଳିତ, ଆଲୋକିତ ଓ ଗଣତନ୍ତ୍ର ବିଶ୍ୱର ସର୍ବୋତ୍ତମ ବିଷୟ ଅଟେ । ଗୋଟିଏ ଜାତିର ସୁଦୃଢ଼ ସ୍ଥିତି ପାଇଁ ଏକ ଜାତୀୟ ଭାବାବେଗ ଆବଶ୍ୟକ । ଜାତୀୟ ପତାକା କେବଳ ଏପରି ଗୋଟିଏ ଭାବାବେଗ ପାଇଁ ଏକ ଭୌତିକ ସହାୟକ ଅଟେ । ବିଶ୍ୱ ଦରବାରରେ ଆମକୁ ଗୋଟିଏ ପ୍ରକୃତ ସମୃଦ୍ଧ ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ପ୍ରତିପାଦିତ କରିବାକୁ ହେଲେ ଆମର ରାଜନୈତିକ ଜୀବନରେ ସର୍ବାଧିକ ସାଧୁତାର ଆବଶ୍ୟକତା ରହିଛି ।

ଭାରତର ସମ୍ବିଧାନ ପୃଥିବୀର ବୃହତ୍ତମ, ମହାନ୍ ଗଣତାନ୍ତ୍ରିକ ସମ୍ବିଧାନ । ଦେଶର ନାଗରିକ ଏବଂ ରାଜନୈତିକ ନେତୃବୃନ୍ଦ ଭାରତୀୟ ସମ୍ବିଧାନର ମହତ୍ତ୍ୱ ଓ ମହନୀୟତାକୁ ଅକ୍ଷୁଣ୍ଣ ରଖିବା ପାଇଁ ସଂକଳ୍ପବଦ୍ଧ ହେବା ଆବଶ୍ୟକ । ଭାରତୀୟ ଗଣତନ୍ତ୍ରର ସଫଳତା ଏହାର ନାଗରିକମାନଙ୍କର ଦେଶପ୍ରୀତି, ଜାତୀୟ ସଂହତି ଓ ସ୍ୱଚ୍ଛତା ଉପରେ ନିର୍ଭର କରେ । ଏକ ସୁସ୍ଥ ଗଣତାନ୍ତ୍ରିକ ସମାଜ ଓ ଶାସନ ପ୍ରତିଷ୍ଠା ପାଇଁ ନିର୍ବାଚନ ଏକ ମାଧ୍ୟମ ହେବା ଉଚିତ୍ କିନ୍ତୁ ସର୍ବଶେଷ ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ରାଷ୍ଟ୍ରର ଗଣତାନ୍ତ୍ରିକ ପରମ୍ପରାକୁ ଶୀର୍ଷରେ ପହଞ୍ଚାଇବା ପାଇଁ ନାଗରିକମାନଙ୍କର ଏକନିଷ୍ଠ ସଚେତନତା, ଜାଗୃତି ହିଁ ଆବଶ୍ୟକ । ଭାରତର ସମ୍ବିଧାନରେ ପ୍ରତ୍ୟେକ ନାଗରିକ ପାଇଁ ଦଶଟି ମୌଳିକ କର୍ତ୍ତବ୍ୟ ଉଲ୍ଲେଖ କରାଯାଇଛି । ଗଣତନ୍ତ୍ରର ସୁରକ୍ଷା ପାଇଁ ଆମେ ଏହି ଅନୁଶାସନକୁ ପାଳନ କରିବା ଉଚିତ । ଦେଶର ପୂର୍ଣ୍ଣାଙ୍ଗ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସମୃଦ୍ଧି ଆମର ଗଣତାନ୍ତ୍ରିକ ସମ୍ବିଧାନ ପ୍ରତି ଆନ୍ତରିକ ସମ୍ମାନ ପ୍ରଦର୍ଶନ ଏବଂ ଶୃଙ୍ଖଳିତ ଆଚରଣ ଦ୍ୱାରା ହିଁ ହାସଲ ହୋଇ ପାରିବ ।

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର-୭୫୫୦୧୭

# ସ୍ୱାଧୀନ ଭାରତବର୍ଷ

ବିମଳା ସିଂହ

ଦେଶ ଭିତରେ ଦେଶ, ଆମରି ଭାରତବର୍ଷ,
ଶାନ୍ତିର କପୋତ ଉଡ଼ି ଉଡ଼ି କହେ
ସାରା ରାଇଜର ରାଇଜରାଣୀ, ଏ ଆମ ଭାରତବର୍ଷ
ଆମରି ଭାରତବର୍ଷ ।। ୦ ।।

ଏଇ ମାଟିର ଓଁକାର ଗାନେ
ଶାନ୍ତିର ଝରଣା ଝରେ
ଏଇ ମାଟିର ବୀରଗାଥା ଶୁଣି
ପ୍ରାଣରେ ପୁଲକ ଭରେ,
ହିମାଳୟ ଯା'ର ହିମବାଆ ଦେଇ
ଅରଜିଛି ଯେତେ ଯଶ
ଦେଶ ଭିତରେ ... ।। ୧ ।।

ଯେତେ ମୁନି, ଋଷି, ସାଧୁ, ସନ୍ଥଗଣ
ଜନମି ଏ ମାଆ କୋଳେ
ମରି ମଧ୍ୟ ଆଜି ଅମର ସଭିଏଁ
ନିଜର କୀରତି ବଳେ
ବୀର ପ୍ରସବିନୀ ଭାରତ ଜନନୀ
ପାଇଣ ତାଙ୍କର ସ୍ପର୍ଶ
ଭାଗ୍ୟବାନ୍ ମଣେ ସବୁ ଭାରତୀୟ
ଫୁଟଇ ଯା' ମୁହେଁ ହସ
ଏଇ ମୋ' ଭାରତବର୍ଷ ... ।। ୨ ।।

ଗଙ୍ଗା, ଗୋଦାବରୀ ଯା'ର ବକ୍ଷଚିରି
କୁଳୁକୁଳୁ ଗାନେ କହେ
ଭାରତ ଆମର ଆମେ ଭାରତୀୟ
ପ୍ରତି କାନେ କାନେ କହେ
ଭୁଲି ଭେଦାଭେଦ ଜାତି, ବର୍ଣ୍ଣ, ଧର୍ମ
ଗଢ଼ିଯିବା ଆମ ଦେଶ
ଜାତୀୟ ସଂହତି ପାଇଁ ଏ ଜୀବନ
ହସି ହସି ଦେବା ଆସ
ଦେଶ ଭିତରେ ଦେଶ
ଏ ଆମ ଭାରତବର୍ଷ ... ।। ୩ ।।

ଶିକ୍ଷୟିତ୍ରୀ
ଭ୍ରମରବର ବିଦ୍ୟାପୀଠ, ତମାଣ୍ଡୋ, ଖୋର୍ଦ୍ଧା



# ମହାତ୍ମା ଗାନ୍ଧୀ - ଏକ ଜୀବନ

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ମାନବ ସମାଜର ଚିରନ୍ତନ ସତ୍ୟକୁ ଅହିଂସାର ଗାଥାରେ ପ୍ରଚାର କରି ମହାତ୍ମା ଗାନ୍ଧୀ ଆଜି ବିଶ୍ୱ ବନ୍ଦନୀୟ । କାମ୍ବୋଡ଼ିଆ ରାଜଧାନୀ ଫେମ୍‌ପେନ୍ ସହରରେ ସ୍ଥାପିତ ଗାନ୍ଧୀମୂର୍ତ୍ତି ତଳେ ଏକଥା ଉଲ୍ଲେଖ ଅଛି - 'ସତ୍ୟ, ଅହିଂସା ଓ ଶାନ୍ତିର ପ୍ରତୀକ ।' ମହାତ୍ମା ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ସଂପର୍କରେ ଏହା ହିଁ ହେଉଛି ଅତି ସଂକ୍ଷିପ୍ତ ଅଥଚ ଭାବଗର୍ଭକ ଉକ୍ତି ।

ଜୀବନର ପ୍ରାକ୍‌କାଳରେ ମହାତ୍ମା ଗାନ୍ଧୀ, ଟଲଷ୍ଟୟ, ଥୋରା ଏବଂ ରସ୍କିନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ । ସେମାନଙ୍କ ଜୀବନ ଆଦର୍ଶରେ ସେ ନିଜକୁ ପ୍ରତିଫଳିତ କରିପାରିଥିଲେ । ଆମେରିକାରେ କ୍ରୀତଦାସ ପ୍ରଥାର ଘୋର ବିରୋଧୀ ଥୋରା ମହାତ୍ମା ଗାନ୍ଧୀଙ୍କ ଚିନ୍ତା ଓ ଚେତନାକୁ ବହୁଳଭାବେ ପ୍ରଭାବିତ କରିଥିଲେ । ଥୋରା କହିଥିଲେ - 'If unjust laws exist, civil disobedience is an effective way to oppose and change them.' ମହାତ୍ମା ଗାନ୍ଧୀଙ୍କ ମତରେ - 'Thorean was one of the greatest and most moral men America had ever produced.' କହିବା ବାହୁଲ୍ୟ ଯେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଥୋରାଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲା ।

ମହାତ୍ମା ଗାନ୍ଧୀଙ୍କୁ ପ୍ରଭାବିତ କରିଥିବା ଅନ୍ୟ ଦୁଇଜଣ ବ୍ୟକ୍ତିବିଶେଷ ହେଲେ - ବିଲାତର ଜନ୍ ରସ୍କିନ ଓ ଋଷିଆର କାଉଣ୍ଟ ଲିଓ ଟଲ୍‌ଷ୍ଟୟ ।

୧୮୬୨ ମସିହାରେ ପ୍ରକାଶିତ ରସ୍କିନର ପୁସ୍ତକ 'Unto This Last' ଗାନ୍ଧୀଙ୍କ ଏକ ପ୍ରିୟ ପୁସ୍ତକ ଥିଲା । ଦକ୍ଷିଣ ଆଫ୍ରିକାରେ ଥିବାବେଳେ ମହାତ୍ମା ଗାନ୍ଧୀ ଏହି ପୁସ୍ତକକୁ ପଢ଼ିବାର ସୁଯୋଗ ପାଇଥିଲେ । ଏହି ବହି ମହାତ୍ମା ଗାନ୍ଧୀଙ୍କ ଚିନ୍ତା ଓ ଚେତନାକୁ ଏତେ ବ୍ୟାପକ କଲା ଯେ ଏହି ବହିର ସାରମର୍ମକୁ ସେ ନିଜ ଜୀବନର ଆଦର୍ଶ ଭାବେ ସ୍ଥିର କରି ନେଲେ । ଏହି ବହିର ସାରମର୍ମ ହେଲା - ସମସ୍ତଙ୍କ କଲ୍ୟାଣରେ ନିଜର କଲ୍ୟାଣ ନିହିତ । ରସ୍କିନଙ୍କ ମତରେ ଅର୍ଥ ଲାଳସା ଓ ଟଙ୍କା - ପଇସା ଠୁଳ କରିବାରେ ପ୍ରକୃତି ସୁଖୀ ଜୀବନର ପରିମାପକ ନୁହେଁ । ଏହି ଶିକ୍ଷାକୁ ଆଧାର କରି ଗାନ୍ଧିଜୀ ନିଜ ସାମାଜିକ ଓ ରାଜନୈତିକ ଆଦର୍ଶକୁ ସ୍ଥିର କରି ନେଲେ ଏବଂ ଏହାର ନାମ ଦେଲେ ସର୍ବୋଦୟ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗାନ୍ଧୀଙ୍କ 'ହିନ୍ଦ୍ ସ୍ୱରାଜ' ଏହି ସମୟରେ ପ୍ରକାଶ ପାଇଥିଲା । ରସ୍କିନଙ୍କ ଚିନ୍ତାଧାରା ମହାତ୍ମା ଗାନ୍ଧୀଙ୍କୁ ଏତେ ପ୍ରଭାବିତ କରିଥିଲା ଯେ ସେ ସବୁବେଳେ କହୁଥିଲେ ରସ୍କିନ ହେଉଛନ୍ତି ଜଣେ ଭବିଷ୍ୟତ ଦ୍ରଷ୍ଟା ମହାପୁରୁଷ । ଋଷ ଦେଶର ବିଖ୍ୟାତ ଦାର୍ଶନିକ କାଉଣ୍ଟ ଲିଓ ଟଲଷ୍ଟୟ ମଧ୍ୟ ମହାତ୍ମା ଗାନ୍ଧୀଙ୍କ ଚିନ୍ତା ଓ ଚେତନାକୁ ପ୍ରଭାବିତ କରିଥିଲେ । ଟଲଷ୍ଟୟ କହୁଥିଲେ ହିଂସା ମାର୍ଗରେ ଅତ୍ୟାଚାରକୁ ପ୍ରତିହତ କରିବା ପରିବର୍ତ୍ତେ ଅହିଂସା ଓ ଅସହଯୋଗ ହେଉଛି ପ୍ରକୃତ ମାର୍ଗ । ଟଲଷ୍ଟୟଙ୍କ ଏହି କଥା ମହାତ୍ମା ଗାନ୍ଧୀଙ୍କ ମନକୁ ଏତେ ଛୁଇଁଥିଲା ଯେ ସେ ଏହାକୁ ନିଜ ଜୀବନର ନୀତି ଓ ଆଦର୍ଶ କରିନେଲେ । ଗାନ୍ଧୀଙ୍କ ଉପରେ ମନ୍ତବ୍ୟ ଦେଇ ଜଣେ ଲେଖକ କହନ୍ତି - 'Gandhi extolled Tolstoy to the skies.' ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୧୦ ମସିହାରେ ଗାନ୍ଧିଜୀ 'Home Rule' ସଂକ୍ରାନ୍ତରେ ଟଲଷ୍ଟୟଙ୍କ ସହ ପରାମର୍ଶ କରିଥିଲେ । ସେହି ୧୯୧୦ ମସିହା ନଭେମ୍ବର ମାସ ୨୦ ତାରିଖ ଦିନ ଟଲଷ୍ଟୟଙ୍କ ଦେହାନ୍ତ ହୋଇଗଲା । ଟଲଷ୍ଟୟଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ମହାତ୍ମା ଗାନ୍ଧୀ କହିଥିଲେ, 'ଟଲଷ୍ଟୟଙ୍କ ଆତ୍ମାର ବିନାଶ ନାହିଁ, ମୃତ୍ୟୁ ନାହିଁ । ଭାରତବର୍ଷରେ ସେ ଜନ୍ମ ହୋଇଥିଲେ ଆମେ ତାଙ୍କୁ କହିଥାନ୍ତୁ ମହର୍ଷି, ମହାଜ୍ଞାନୀ, ଜଣେ ଫକୀର । ଅନ୍ୟାୟ ବିରୁଦ୍ଧରେ ଅହିଂସା ସଂଗ୍ରାମର ସେ ଜଣେ ବିଶିଷ୍ଟ ସମର୍ଥକ ।'

ମହାତ୍ମା ଗାନ୍ଧୀ ଥିଲେ ସମକାଳୀନ ବିଶ୍ୱରେ ସତ୍ୟ, ଅହିଂସା ଓ ଶାନ୍ତିର ମୂର୍ତ୍ତିମନ୍ତ ପ୍ରତୀକ, ଇଂରେଜ ବୁଦ୍ଧିଜୀବୀମାନେ ତାଙ୍କୁ କହୁଥିଲେ ମୋରାଲ ଜିନିୟସ୍ ।

ଲକ୍ଷ ଲକ୍ଷ ଲୋକଙ୍କୁ ଅହିଂସା ମହାମନ୍ତ୍ରରେ ଅନୁପ୍ରାଣିତ କରାଇ ସ୍ୱାଧୀନତା ସଂଗ୍ରାମରେ ଲିପ୍ତ କରାଇବା ହେଉଛି ମହାତ୍ମା ଗାନ୍ଧୀଙ୍କ ଚରିତ୍ରର ବୈଶିଷ୍ଟ୍ୟ । ସେଇଥିପାଇଁ ତ ସେ ଆଜି ମହାମାନବ ତଥା

ବିଶ୍ୱବନ୍ଦିତା । ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ମିଳିତ ଜାତିସଂଘ କହିଥିଲା 'ଗାନ୍ଧୀ ହେଉଛନ୍ତି ଆଧୁନିକ ବିଶ୍ୱଶାନ୍ତିର ଦାର୍ଶନିକ ।'

ଅନ୍ୟ ଏକ ଦୃଷ୍ଟିରୁ ବିଚାର କଲେ ଆଜି ଯେଉଁ ଧର୍ମ ନିରପେକ୍ଷ କଥା କୁହାଯାଉଛି ତା'ର ଏକ ପ୍ରତିଛବି ହେଉଛନ୍ତି ମହାତ୍ମା ଗାନ୍ଧୀ । ତାଙ୍କ ପ୍ରାର୍ଥନା ସଭାରେ 'ରଘୁପତି ରାଘବ ରାଜାରାମ' ଭଜନ ଗାନ କରାଯାଇଥିଲା ଏବଂ ବାଇବେଲରେ ଥିବା ଯୀଶୁଖ୍ରୀଷ୍ଟଙ୍କ 'ସରମନ ଅନ ଦି ମାଉଣ୍ଟ' ମଧ୍ୟ ପାଠ ହେଉଥିଲା । କୌଣସି ସଂକୀର୍ଣ୍ଣ ଧର୍ମର ଆଚରଣ ମଧ୍ୟରେ ଗାନ୍ଧିଜୀ ନିଜକୁ ଆବଦ୍ଧ କରି ରଖିପାରିନଥିଲେ । ତାଙ୍କ ପ୍ରିୟ ପ୍ରାର୍ଥନା ଥିଲା -

'ଈଶ୍ୱର ଆଲ୍ଲା ତେରେ ନାମ
ସବ୍‌କୋ ସନମତ ଦେ ଭଗବାନ୍ ।'

ଅନ୍ୟ ଭାଷାରେ କହିବାକୁ ଗଲେ ସର୍ବଧର୍ମ ସମନ୍ୱୟ ହେଉଛି ମହାତ୍ମା ଗାନ୍ଧୀଙ୍କ ଜୀବନ ଆଦର୍ଶ । ୧୯୩୩ ମସିହାରେ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଗାନ୍ଧୀ ଲଣ୍ଡନ ଯାଇଥିଲେ । ତାଙ୍କ ପ୍ରାର୍ଥନା ସଭାକୁ ଦେଖି ଇଂରେଜ ମହିଳାମାନେ ଅବାକ୍ ହୋଇଗଲେ । ସେମାନଙ୍କ ମତରେ 'ଆମ ଦେଖିବାରେ ସର୍ବୋତ୍ତମ ଖ୍ରୀଷ୍ଟୀୟାନ ହେଉଛନ୍ତି ଜଣେ ହିନ୍ଦୁ ।'

ଗାନ୍ଧୀ କେବଳ ସ୍ୱାଧୀନତା ଆନ୍ଦୋଳନରେ ଭଗୀରଥ ବା ଧର୍ମନିରପେକ୍ଷ ବ୍ୟକ୍ତିବିଶେଷ ଥିଲେ ତାହା ନୁହେଁ, ଦରିଦ୍ର, ଅବହେଳିତ ତଥା ନିଷ୍ପେଷିତ ଜନତାଙ୍କ ପାଇଁ ସେ ଥିଲେ ଈଶ୍ୱର ଦୂତ ସଦୃଶ୍ୟ । ୧୯୩୮ ମସିହାରେ ଓଡ଼ିଶା ପରିଦର୍ଶନ ସମୟରେ ଡେଲାଙ୍ଗଠାରେ ଓଡ଼ିଶାର କାରିଗରମାନଙ୍କ ଦ୍ୱାରା ପ୍ରସ୍ତୁତ ବିରାଟ ପ୍ରଦର୍ଶନୀକୁ ଉଦ୍‌ଘାଟନ କରି ମହାତ୍ମା ଗାନ୍ଧୀ କହିଥିଲେ - 'Orissa is the land of my love in India. Ever since I landed in India, I begain to hear of Orissa's poverty and famine. Thakkar Bapa came in connection with it and organised famine relief and I also realised that if I could serve Orissa somewhat. I would be so doing service to India.' ସମସାମୟିକ ଦୁନିଆରେ ମହାତ୍ମା ଗାନ୍ଧୀ ଥିଲେ ସତ୍ୟ, ଶାନ୍ତି ଓ ଅହିଂସାର ମୂର୍ତ୍ତିମନ୍ତ ପ୍ରତୀକ । ଏକଥା କହିଲେ କିଛି ଅତିରଞ୍ଜିତ ହେବ ନାହିଁ ଯେ ମହାତ୍ମା ଗାନ୍ଧୀଙ୍କ ପରି ବିକଳ୍ପ ବ୍ୟକ୍ତିତ୍ୱ ଏ ପର୍ଯ୍ୟନ୍ତ ଜନ୍ମ ନେଇନାହାନ୍ତି । ପରିଶେଷରେ ବିଖ୍ୟାତ କମ୍ୟୁନିଷ୍ଟ ନେତା ମୋହିତ ସେନ୍‌ଙ୍କ ଭାଷାରେ କହିବାକୁ ଗଲେ, 'ଭାରତ ବୋଇଲେ ହିମାଳୟ କଥା ମନକୁ ଆସିବ, ଗଙ୍ଗାନଦୀ ମନେ ପଡ଼ିବ ଏବଂ ଗାନ୍ଧୀଙ୍କ କଥା ବି ମନକୁ ଆସିଯିବ ।'

ଅନୁଶାସନ ସଚିବ
ଅର୍ଥ ବିଭାଗ, ଭୁବନେଶ୍ୱର

---

# ଲେଖା ହେବ ନୂଆ ଇତିହାସ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ହେ ନୂତନ ବରଷ
ଆମ ମନେ ଭରିଦିଅ ଅପୂର୍ବ ସାହସ
କ୍ଳୀବତ୍ୱ ହେଉ ଦୂର
ବୀରତ୍ୱ ହେଉ ପରକାଶ ॥

କଳିଙ୍ଗାଃ ସାହସିକାଃ ଜାତି
ଉଠୁ ଆଉଥରେ ମାତି
ସୃଷ୍ଟି କରୁ ବିଶ୍ୱବକ୍ଷରେ ହୃତକମ୍ପ
ସୂର୍ଯ୍ୟଙ୍କୁ କରିବାକୁ ଗ୍ରାସ
ହନୁମାନ ପରି
ମାରୁ ସରଗକୁ ଲମ୍ଫ ॥

ସାଗର ଲଂଘନ କରି
ତୋଳି ଦେଉ ବାଣିଜ୍ୟର ତରୀ

ବିଦେଶ ମାଟିରେ ଉଡ଼ୁ
ଆମରି ପତାକା
ମୈତ୍ରୀର ସନ୍ଦେଶ ପ୍ରଚାରିତ କରି ॥

ନୂତନ କୋଣାର୍କ ହୋଇବ ତିଆରି
ଲେଖା ହେବ ନୂଆ ଇତିହାସ
ଆମ ମନେ ଦିଅ ଅପୂର୍ବ ସାହସ
ହେ ନୂଆ ବରଷ ॥

ବିଧାୟକ, ମାହାଙ୍ଗା
ଡି.ଏସ୍.-୧୭/୧
ୟୁନିଟ୍-୪, ଭୁବନେଶ୍ୱର

# ଗାନ୍ଧିଜୀଙ୍କ ଦୃଷ୍ଟିରେ : ଆମ ଖଦୀ ଓ ହସ୍ତଶିଳ୍ପ ପରମ୍ପରା

ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତ୍ସ)

ପରାଧୀନ ଭାରତରୁ ଖଦୀ ଓ ଅନ୍ୟାନ୍ୟ କୌଳିକ କୁଟୀରଶିଳ୍ପଗୁଡ଼ିକ ଲୋପ ପ୍ରାୟ ହେଲାବେଳକୁ ଜାତିର ଜନକ ମହାତ୍ମା ଗାନ୍ଧୀ ସ୍ୱଦେଶୀ ଆନ୍ଦୋଳନ ଭିତ୍ତିରେ ଖଦୀ ଶିଳ୍ପର ପୁନରୁଦ୍ଧାର କରାଇଥିଲେ । ଏହା ସେବେଳରେ ସ୍ୱାଧୀନତାର ଏକ ବିଶିଷ୍ଟ ଅସ୍ତ୍ର ରୂପେ କାର୍ଯ୍ୟ କଲା ଏବଂ ଯାହା ପାଇଁ ଇଂରେଜ ଶାସକବର୍ଗଙ୍କ ବାଣିଜ୍ୟ ନଚଳିବାରୁ, ଭାରତ ଛାଡ଼ିବାକୁ ବାଧ ହୋଇଥିଲେ । ଖଦୀ ଓ ଗ୍ରାମୋଦ୍ୟୋଗ ଶିଳ୍ପଗୁଡ଼ିକର ପ୍ରତିଷ୍ଠା ଯୋଗୁଁ ଦାରିଦ୍ର୍ୟ ନିପୀଡ଼ିତ କର୍ମଶୂନ୍ୟ ଗ୍ରାମବାସୀମାନଙ୍କର ଅର୍ଥନୈତିକ ସ୍ଥିତିରେ ଉନ୍ନତି ଘଟିଲା ।



ସ୍ୱଦେଶ ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟରେ ଗାନ୍ଧିଜୀ ୧୯୧୬ ମସିହାରେ ପୁନାଠାରେ ସ୍ୱରାଜ ପାଇଁ ସତ୍ୟାଗ୍ରହ ଆରମ୍ଭ କରି ବିଦେଶୀ ଇଂରେଜ ଜାତିର ବିରୁଦ୍ଧରେ ପ୍ରଥମ ଓ ସର୍ବ ବଳିଷ୍ଠ ଅହିଂସ ଅସ୍ତ୍ର ରୂପେ 'ବିଦେଶୀ ବସ୍ତ୍ର ପରିଧାନ କରିବା ବ୍ରହ୍ମଚର୍ଯ୍ୟର ବିରୋଧୀ', ଏହି ସ୍ଲୋଗାନ ପ୍ରୟୋଗ କରିଥିଲେ । ଯା'ଫଳରେ ଇଂରେଜଙ୍କ ବ୍ୟବସାୟ ବାଧା ପ୍ରାପ୍ତ ହେଲା ଏବଂ ଭାରତର କୋଟି କୋଟି ଜନତା ସ୍ୱଦେଶ ପ୍ରୀତିରେ ଆପ୍ଲୁତ ହୋଇ ନିଜ ହାତରେ ସୂତାକାଟି ଦେଶୀୟ ବସ୍ତ୍ର ପରିଧାନ କରିବାକୁ ଲାଗିଲେ । କ୍ରମଶଃ ଗାନ୍ଧିଜୀଙ୍କ ଦ୍ୱାରା ନିଖିଳ ଭାରତ ଚରଖାସଂଘ ପ୍ରତିଷ୍ଠା ହେଲା । ଏହି ଚରଖା ସଂଘ କେବଳ ଖଦଡ଼ ଲୁଗା ପ୍ରସାର ସଂକ୍ରାନ୍ତୀୟ କାର୍ଯ୍ୟରେ ଲିପ୍ତରହି ବହୁବିଧ ପଦ୍ଧତିର ଲୁଗା ବୁଣିବା କୌଶଳ ବାହାର କଲା । ୧୯୩୪ରେ ଗାନ୍ଧିଜୀ ପୁଣି ଗ୍ରାମୋଦ୍ୟୋଗ ସଂଘର ସ୍ଥାପନ କଲେ । ଭାରତୀୟ ଗ୍ରାମଗୁଡ଼ିକରୁ ଯେଉଁସବୁ ହସ୍ତଶିଳ୍ପ ଧ୍ୱଂସ ପାଇ ଯାଉଥିଲା, ସେହିସବୁ ଶିଳ୍ପଗୁଡ଼ିକୁ ପୁନର୍ଜୀବନ ଦେବାକୁ ଯାଇ ଏହି ସଂଘ ଶିଳ୍ପୀମାନଙ୍କୁ ଚିହ୍ନଟ କରି ଆବଶ୍ୟକୀୟ ସ୍ୱଳ୍ପ ପୁଂଜି ପ୍ରଦାନ ପୂର୍ବକ ଅଗଣିତ ଗ୍ରାମମାନଙ୍କରେ ଗ୍ରାମୋଦ୍ୟୋଗଗୁଡ଼ିକୁ କର୍ମତତ୍ପର କଲା । ଏହାଦ୍ୱାରା ଗ୍ରାମର ପାରମ୍ପରିକ କୁଶଳୀ ଶିଳ୍ପୀବୃନ୍ଦ ସେମାନଙ୍କ ଜୀବିକାର୍ଜ୍ଜନର ଏକ ଅବଲମ୍ବନ ପାଇବାରେ କ୍ରମଶଃ ସମର୍ଥ ହେବାକୁ ଲାଗିଲେ । ବିଭିନ୍ନ କଂଗ୍ରେସ ଅଧିବେଶନଗୁଡ଼ିକରେ ଏହି ଶିଳ୍ପୀମାନଙ୍କ ପ୍ରସ୍ତୁତ ବିଭିନ୍ନ ସାମଗ୍ରୀଗୁଡ଼ିକୁ ପ୍ରଦର୍ଶନୀ ଅନୁଷ୍ଠିତ କରାଇ ଶିଳ୍ପୀମାନଙ୍କର କଳାର ପ୍ରଶଂସା କରାଯାଉଥିଲା । ସେପରି ଲକ୍ଷ୍ନୌଠାରେ ଅନୁଷ୍ଠିତ ଏକ ଖଦୀ ଗ୍ରାମ ଶିଳ୍ପ ପ୍ରଦର୍ଶନୀରେ ଓଡ଼ିଶାର କ୍ଷୁଦ୍ର ଶିଳ୍ପ ସାମଗ୍ରୀ ଉପରେ ଗାନ୍ଧିଜୀଙ୍କ ଭାଷଣର କିଛି ଅଂଶ ଉଦ୍ଧାର କଲେ । ଗ୍ରାମ୍ୟ ଶିଳ୍ପ ପ୍ରାଚୁର୍ଯ୍ୟ ଉପରେ ତାଙ୍କର ଥିବା ଭାବାବେଗ ଅନୁଭବ କରିହୁଏ ଏବଂ ଓଡ଼ିଶାର ଦାରିଦ୍ର୍ୟ ଓ ପ୍ରାଚୁର୍ଯ୍ୟର ସ୍ୱାଦ ପରଖି ନିଆଯାଇପାରେ । ସେହି ଉଦ୍ଧୃତିର କିୟଦଂଶ ଥିଲା - 'ତୁମେ ଓଡ଼ିଶା ଓ ତା'ର ଦାରିଦ୍ର୍ୟର କଙ୍କାଳମୟ ଚିତ୍ର ଦେଖିଛ କି ? ଜାଣିଛ କିଭଳି ଅନାହାର ପ୍ରପୀଡ଼ିତ କଙ୍କାଳମୟ ଭୂମିରୁ ବି ଲୋକେ ଏହି ପ୍ରଦର୍ଶନୀକୁ ହାଡ଼, ଶିଂଘ ଏବଂ ରୂପାର ତିଆରି କାରୁକାର୍ଯ୍ୟ ମାନ ଘେନି ଆସିଛନ୍ତି ? ସେଗୁଡ଼ିକୁ ଦେଖିଲେ ଆଖି ଝଲସି ଯିବ । ଯାଅ ଦେଖିଆସ । ଖାଲି ତିଆରି ଜିନିଷ ନୁହଁ, କେମିତି ମୃତ ଜଡ଼ ଶିଂଘ ଓ ଧାତୁକୁ ସେମାନେ ଜୀବନ ଦେଇ ଗଢୁଛନ୍ତି ଏବଂ ତିଆରି କରୁଛନ୍ତି । ତାହା ମଧ୍ୟ ପ୍ରଦର୍ଶନୀରେ ପ୍ରଦର୍ଶିତ ହେଉଛି । ମାଟି କାଦୁଅ ଭିତରୁ ଦରିଦ୍ର କୁମ୍ଭାରଟିଏ ଅଲୌକିକ ବୈଚିତ୍ର୍ୟ ଦେଖାଇପାରିଛି । ମୁଁ ଯେଉଁସବୁ ଦ୍ରବ୍ୟଗୁଡ଼ିକର ଦର କେତେଟଙ୍କା ହୋଇଥିବ ବୋଲି ଭାବୁଥିଲି, ସେଗୁଡ଼ିକ ମାତ୍ର କେଇ ଅଣାରେ ବିକ୍ରୀ ହେଉଛି ଏବଂ କି ସୁନ୍ଦର କାରୁକାର୍ଯ୍ୟ ସବୁ ହେଇଛି ସେଥିରେ । ସେଦିନ ମୁଁ ଦେଖିଲି ଜଣେ ଭଉଣୀ ହାତୀଦାନ୍ତ ତିଆରି ଏକ କୃଷ୍ଣମୂର୍ତ୍ତି କିଣିଥିଲେ । ସେ କୃଷ୍ଣଙ୍କ ପୂଜା କରନ୍ତି ନାହିଁ, କିନ୍ତୁ ସେ ଏବେ ଆସି ମୋତେ କହୁଛନ୍ତି 'କୃଷ୍ଣ ମୂର୍ତ୍ତିଟି ଏଡ଼େ ସୁନ୍ଦର ହୋଇଛି ଯେ, ମୁଁ ତାକୁ ପୂଜା ନକରି ରହିପାରୁନାହିଁ । ତେଣୁ ଏହି ସବୁ ପ୍ରଦର୍ଶନୀ କେବଳ ପ୍ରଚାର ପାଇଁ

ରଖାଯାଇଛି ବୋଲି ମନେ କର ନାହିଁ । ଏହା ଆମର ରୁଚି ଚିନ୍ତାଧାରାକୁ ମଧ ବଦଳାଇ ଦେଇପାରେ । ଆମର ରୁଚି ଓ ଚିନ୍ତା ଆଜି ପରାଧୀନତାର ଦାସତ୍ୱରେ ଏମିତି ଦୂଷିତ ହୋଇଗଲାଣି ଯେ, ଏମିତିକା କ୍ଷୁଦ୍ର ଜିନିଷ ସବୁ ମୃତ୍ତିକାରୁ ତିଆରି ହୋଇଥିଲେବି ଏତେ ଯେ କାରୁକାର୍ଯ୍ୟ ଖଚିତ ଓ ସୁନ୍ଦର ହୋଇ ଶିଳ୍ପୀ ହାତରେ ତିଆରି କରାଯାଇପାରେ ଏହାକୁ ଆମେ ବିଶ୍ୱାସ କରିପାରୁ ନାହୁଁ ଏବଂ ଯେଉଁମାନଙ୍କ ପାଖରେ ଏହା ଉତ୍ସାହ ଓ ପ୍ରୋତ୍ସାହନର ଅଭାବରୁ ବୁଡ଼ିବାକୁ ଯାଉଛି, ତା'ର ପୁନରୁଦ୍ଧାର କରିବା ନିମନ୍ତେ ଯେତିକି ଆଗ୍ରହ ଦେଖାଇବାର କଥା ଆମେ ଦେଖାଉ ନାହୁଁ ।

ଇଂରେଜମାନେ ଆମର ଖଦୀ, ରେଶମ ଓ ହସ୍ତଶିଳ୍ପକୁ ଧ୍ୱଂସ କରି ନିଜର ଅର୍ଥନୈତିକ ଓ ରାଜନୈତିକ ଅଧିକାର ହାସଲ କରିଥିଲେ । ଇଂରେଜ ଅମଳରେ କେହି ଖଦୀ ପିନ୍ଧିଲେ ତାକୁ ରାଜଦ୍ରୋହୀ ବୋଲି ଧରା ଯାଉଥିଲା । ସରକାରୀ କର୍ମଚାରୀଙ୍କୁ ଖଦୀ ବସ୍ତ୍ର ପିନ୍ଧିବା ମନାଥିଲା । ସ୍କୁଲ କଲେଜକୁ ଖଦୀ ପିନ୍ଧି ଯାଉଥିବାରୁ କେତେକ ଛାତ୍ରଙ୍କୁ ସେବେଳରେ ନାନାପ୍ରକାର ନିର୍ଯ୍ୟାତନା ସହ ଶିକ୍ଷାନୁଷ୍ଠାନରୁ ବିତାଡ଼ିତ କରି ଦିଆଯାଉଥିଲା । ସାଧାରଣ ଆଇନ ଅମାନ୍ୟ ଅପରାଧଠାରୁ ଖଦୀ ପ୍ରଚଳନକୁ ଆହୁରି ଭୟଙ୍କର ଇଂରେଜ ବିରୋଧୀ ବୋଲି ଅଭିହିତ କରାଯାଇ ଦଣ୍ଡବିଧାନ କରାଯାଇଥିଲା । ଭାରତୀୟ କଳାସ୍ଥାପତ୍ୟ ଓ ଭାସ୍କର୍ଯ୍ୟର କଣ୍ଠରୋଧ କରି ଇଂରେଜମାନେ ଫାଇଦା ନେଉଥିଲେ । ଯେତେବେଳେ ଇଂରେଜମାନେ ବଣିକ ସାଜି ଭାରତକୁ ଆସିଥିଲେ, ସେତେବେଳେ ଭାରତର ଖଦୀ ବସ୍ତ୍ର, ରେଶମ ଓ ପଶମ ବସ୍ତ୍ର ସହ ଅନ୍ୟାନ୍ୟ ହାତ ତିଆରି ଚାରୁକଳାର ସୌନ୍ଦର୍ଯ୍ୟପୂର୍ଣ୍ଣ ସାମଗ୍ରୀ ସବୁର ମାଦକତା ଭରି ରହିଥିଲା । ଇଂରେଜମାନେ ଏହି ସମାଗ୍ରୀ ସବୁକୁ ଇଂଲଣ୍ଡରେ ବିକ୍ରୀ କରି ଅଧିକା ଲାଭ କରୁଥିଲେ ଏବଂ ଏହି ସାମଗ୍ରୀଗୁଡ଼ିକର କାଟ୍‌ତି ବିଦେଶରେ ଏତେ ବଢ଼ିବାକୁ ଲାଗିଲା ଯେ ଇଂଲଣ୍ଡ ଉତ୍ପାଦିତ ସାମଗ୍ରୀଗୁଡ଼ିକର ବଜାର ମାନ୍ଦା ହୋଇ ପଡ଼ିଲା ଓ ଉତ୍ପାଦିତ କାରଖାନା ସବୁ ଅବହେଳିତ ହେଇ ପଡ଼ିରହିବାକୁ ଲାଗିଲା । ଏପ୍ରକାର ଅର୍ଥନୈତିକ ବିପତ୍ତିରୁ ମୁକୁଳିବା ପାଇଁ ଇଂରେଜ ସରକାର ୧୭୦୦ ଖ୍ରୀଷ୍ଟାବ୍ଦରେ ଏକ ସ୍ୱତନ୍ତ୍ର ଆଇନ ଆଣି ଇଂରେଜ ଲୋକେ ଯଦି ଭାରତୀୟ ରେଶମ ବସ୍ତ୍ର ପିନ୍ଧିବେ ବା କ୍ରୟ କରିବେ ସେମାନଙ୍କୁ ପାଞ୍ଚପାଉଣ୍ଡ ଜୋରିମାନା ନିର୍ଦ୍ଧାରଣ କଲେ ଏବଂ ଏହି ଆଇନକୁ କଡ଼ାକଡ଼ି ଭାବେ ମଧ ପ୍ରୟୋଗ କଲେ । ତଥାପି ଭାରତୀୟ ଦ୍ରବ୍ୟର ଚାହିଦାକୁ ନିୟନ୍ତ୍ରିତ କରାଯାଇ ନପାରିବାରୁ ଇଂରେଜୀ ବେପାରୀମାନଙ୍କୁ ଭାରତୀୟ ରେଶମ ବିକ୍ରୀ କରିବାକୁ ନିଷେଧ କରାଗଲା ଓ ଏହାର ଅବମାନନା କଲେ ପଚିଶି ପାଉଣ୍ଡ ଜୋରିମାନା ପାଇଁ ଆଇନ ହେଲା । ଏମିତିକି କେହି ମୃତ ଶବକୁ ଭାରତୀୟ ଖଦୀବସ୍ତ୍ର ରେଶମରେ ଢାଙ୍କିବାକୁ ଚାହିଁଲେ ମଧ ଜୋରିମାନା ଦଣ୍ଡରେ କଡ଼ାକଡ଼ି ଭାବେ ଦଣ୍ଡିତ ହେଲେ । ଉପରୋକ୍ତ କେତେକ ଐତିହାସିକ ତଥ୍ୟରୁ ଜାଣିବାକୁ ମିଳେ ଯେ, ଭାରତୀୟ ହସ୍ତ ଓ ଖଦୀ ଶିଳ୍ପ ଆଦିର ବିଦେଶୀ ଚାହିଦା କିଭଳି ଆଶାତୀତ ଭାବେ ବୃଦ୍ଧି ପାଉଥିଲା ଓ ବିଦେଶୀୟମାନେ କିଭଳି ଚେଷ୍ଟା କରି ତା'ର ଦ୍ରବ୍ୟଗୁଣକୁ ପରାହତ କରିପାରୁନଥିଲେ । ଶେଷରେ ଇଂରେଜ ଶାସକମାନେ କଳେବଳେ କୌଶଳେ ଭାରତର ଗ୍ରାମ ଓ ଗ୍ରାମଭିତ୍ତିକ କୁଟୀର ହସ୍ତଶିଳ୍ପ ଶିଳ୍ପାୟନ ଅର୍ଥନୀତିକୁ ନଷ୍ଟ କରିବାରେ ସଫଳ ହୋଇ ଦେଶ ଶାସନ କରିବାରେ ଲାଗିଲେ । ଶେଷରେ ଏହି ବିଦେଶୀ ବର୍ଜନ ଓ ସ୍ୱଦେଶୀ ଜାଗରଣ ଆନ୍ଦୋଳନ ନେଇ ଇଂରେଜମାନେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିବାକୁ ବାଧ ହୋଇଥିଲେ । ଇଂରେଜମାନେ ହସ୍ତଶିଳ୍ପୀମାନଙ୍କର ବେଉସାକୁ ବୁଡ଼େଇବା ପାଇଁ ନିଜ ଦେଶର ମିଲ୍ ଲୁଗାକୁ ଆମ ଦେଶରେ ଚଳାଇବାକୁ ଲାଗିଥିଲେ ।

ପରମପୂଜ୍ୟ ଗାନ୍ଧିଜୀଙ୍କର ସ୍ୱଦେଶୀ ଆନ୍ଦୋଳନ କ୍ରମରେ ଭାରତ ସ୍ୱାଧୀନ ହେଲା ଏବଂ ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ଅବସ୍ଥାରେ ଗାନ୍ଧିଜୀ କହିଥିଲେ, 'ଆମ ସମ୍ମୁଖରେ ସରକାର କେମିତି ଚଳାଇବା, ଏହା ମୁଖ୍ୟ ଓ ଜରୁରୀ ସମସ୍ୟା ନୁହଁ । ପ୍ରଶ୍ନ ହେଉଛି, ଆମର ଲୋକଙ୍କୁ ଖାଇବାକୁ ଓ ପିନ୍ଧିବାକୁ କେମିତି ଯୋଗାଇ ପାରିବା ।' ତାହାର ସମାଧାନ ପାଇଁ ମହାମାନବ ମହାତ୍ମାଙ୍କ ଦର୍ଶନ ଥିଲା, ଭାରତ ଭଳି ଏକ ଜନବହୁଳ ରାଷ୍ଟ୍ରରେ ଲୋକ ଶ୍ରମର ଉପଯୋଗ କରିବାକୁ ପଡ଼ିବ । ଗ୍ରାମାଞ୍ଚଳରେ ବାସ କରୁଥିବା ଲକ୍ଷ ଲକ୍ଷ ଅନାହାରୀ, ଅର୍ଦ୍ଧାହାରୀ ଅଧିବାସୀଙ୍କୁ ଖଦୀ ଗ୍ରାମୋଦ୍ୟୋଗ ଓ ବିଭିନ୍ନ ଘରୋଇ କୌଳିକ କୁଟୀର ଶିଳ୍ପ ଭଳି ବିଭିନ୍ନ ଫଳପ୍ରଦ କର୍ମରେ ନିୟୋଜିତ କରାଇ, ବେ-ରୋଜଗାରୀ ସହ ଖଦୀବସ୍ତ୍ରର ଅଭାବକୁ ଦୂର କରାଯାଇପାରିବ । ଏହି ଦର୍ଶନ ଏବେବି ଆମ ପାଇଁ ଆବଶ୍ୟକ ହେଇପଡ଼ିଛି ।

ଆସିକା ବିଜ୍ଞାନ ମହାବିଦ୍ୟାଳୟ
ଆସିକା, ଗଂଜାମ-୭୬୧୧୧୧

■ ■ ■ ■



# ସ୍ୱାଧୀନତା ସଂଗ୍ରାମର ସାରଥୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷ

ଶ୍ରୀନିବାସ ଆଚାର୍ଯ୍ୟ

**ଅ**ଜ୍ଞାତ ପଥର ପଥିକ ପରି ଦୁଃସାହସିକ କାର୍ଯ୍ୟକୁ ସମ୍ପାଦନ କରି ସାଫଲ୍ୟମଣ୍ଡିତ କରିବା ଯେପରି ଅତ୍ୟନ୍ତ କଷ୍ଟଦାୟକ, ସେପରି ଭାବରେ ଭାରତର ସ୍ୱାଧୀନତା ମଇଦାନରେ ଝାସ ଦେଇ ପରାଧୀନତା ଶୃଙ୍ଖଳରୁ ଜନ୍ମଭୂମି ଭାରତବର୍ଷକୁ ମୁକ୍ତି କରିବା ମଧ୍ୟ ଦୁରୂହ ବ୍ୟାପାର । ଏଥିପାଇଁ ଭାରତର ହଜାର ହଜାର ଦେଶପ୍ରେମୀ, ବୀର ସଂଗ୍ରାମୀ, ସାହସୀ ଓ ଲଢୁଆ ଯୋଦ୍ଧାମାନେ ସେମାନଙ୍କର ସୁଖ, ଶାନ୍ତିକୁ ପାଦରେ ଆଡ଼େଇ ଦେଇ ଦେଶମାତୃକାର ସେବା କରିବା ପାଇଁ ଶହୀଦ ଓ କାରାବରଣ କରି ଏକ ଗୌରବମୟ ଇତିହାସ ସୃଷ୍ଟି କରିଛନ୍ତି । ଜନ୍ମଭୂମିର ମୁକ୍ତି ପାଇଁ ଯେଉଁ କେତେଜଣ ମହାନ୍ ଜନନାୟକ ସ୍ୱପ୍ନ ଦେଖୁଥିଲେ ଓ ସେହି ସ୍ୱପ୍ନକୁ ସାକାର କରିବା ପାଇଁ ଅତୁଳନୀୟ ତ୍ୟାଗ ଓ ସାଧନାକୁ ମୃତ୍ୟୁ ପର୍ଯ୍ୟନ୍ତ ଜାରି ରଖିଥିଲେ, ସେମାନଙ୍କ ମଧ୍ୟରେ ମୁକ୍ତି ସଂଗ୍ରାମର ସାରଥୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଥିଲେ ଅଦ୍ୱିତୀୟ । ସେ ଥିଲେ ଧୀଶକ୍ତି ସମ୍ପନ୍ନ ବୁଦ୍ଧିଜୀବୀ, ଜ୍ୱଳାମୟୀ ବିଦ୍ରୋହର ଏକ ଲଢୁଆ ସୈନିକ, ବୈପ୍ଳବିକ ମାନବବାଦୀ ମହାପୁରୁଷ ତଥା ଭାରତ ସ୍ୱାଧୀନତା ସଂଗ୍ରାମ ଇତିହାସର ଏକ ପ୍ରବାଦ ପୁରୁଷ ।

ସୁଭାଷ ଚନ୍ଦ୍ର ବୋଷ ଓଡ଼ିଶା ମାଟିରେ ଜନ୍ମ ହୋଇଥିବାରୁ ଆଜି ସମଗ୍ର ଓଡ଼ିଶାବାସୀ ଗର୍ବିତ ଓ ସେ ସମଗ୍ର ବିଶ୍ୱରେ ପ୍ରଶଂସିତ । ୧୮୯୭ ମସିହା ଜାନୁଆରୀ ମାସ ୨୩ ତାରିଖ ଶନିବାର ଦିବା ୧୨ ଘଣ୍ଟା ୧୫ ମିନିଟ ସମୟରେ ପିତା ରାୟବାହାଦୁର ଜାନକୀନାଥ ବୋଷ ଓ ମାତା ପ୍ରଭାବତୀ ଦେବୀଙ୍କ ଔରଷରୁ ଐତିହାସିକ ପ୍ରସିଦ୍ଧ କଟକ ସହରର ଓଡ଼ିଆ ବଜାରଠାରେ ସେ ଜନ୍ମଗ୍ରହଣ କରିଥିଲେ । ପିତା ଜାନକୀନାଥଙ୍କ ୧୪ଟି ପୁତ୍ର ଓ କନ୍ୟା ମଧ୍ୟରେ ସେ ଥିଲେ ନବମ ସନ୍ତାନ । ଜାନକୀନାଥଙ୍କର ଜନ୍ମ ପଶ୍ଚିମବଙ୍ଗସ୍ଥିତ ଚବିଶ ପ୍ରଗଣା ଜିଲ୍ଲା ଅନ୍ତର୍ଗତ କୋଦଲିଆ ଗ୍ରାମରେ । ସେ ଥିଲେ ଜଣେ ପ୍ରଖ୍ୟାତ ଆଇନ୍‌ଜୀବୀ । କଟକ ସହର ପ୍ରତି ଆକୃଷ୍ଟ ହୋଇ ଜାନକୀନାଥ ବୋଷ ଆଇନ ବ୍ୟବସାୟକୁ ନିଜର ଜୀବିକା ରୂପେ ସ୍ଥାୟୀ ଭାବରେ ଆଦରି ନେଇ ବସବାସ କରୁଥିଲେ ।

ତୁଳସୀ ଦୁଇ ପତ୍ରରୁ ବାସିଲାପରି ସୁଭାଷଙ୍କଠାରେ ଶୈଶବାବସ୍ଥାରୁ ଜଣେ ପ୍ରତିଭାବାନ୍ ମହାପୁରୁଷ ହେବାର ଲକ୍ଷଣଗୁଡ଼ିକ ପ୍ରସ୍ଫୁଟିତ ହୋଇଥିଲା । ୧୯୦୨ ମସିହାରେ ପାଞ୍ଚବର୍ଷ ବୟସରେ ଜାନକୀନାଥ ତାଙ୍କ ପୁଅ ସୁଭାଷଙ୍କର କଟକର ଏକ ମିଶନ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଥିଲେ । କିନ୍ତୁ ତା'ପୂର୍ବରୁ ସେ ଘରେ ଇଂରାଜୀ ୨୬ ଅକ୍ଷର ସମେତ ଅକ୍ଷର ଓ ସଂଖ୍ୟାଲିଖନ ଇତ୍ୟାଦି ପାଠ ପଢ଼ାଇଥିଲେ । ୧୯୦୯ ମସିହାରେ ଓଡ଼ିଶାର ପ୍ରଥମ ଓ ପୁରାତନ ବିଦ୍ୟାଳୟ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ ଆରମ୍ଭ କରିଥିଲେ । ୧୯୧୩ ମସିହାରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହି ସମୟରେ ସେ ସ୍ୱାମୀ ବିବେକାନନ୍ଦଙ୍କ ପୂଜ୍ୟ ଗୁରୁ ଶ୍ରୀଶ୍ରୀରାମକୃଷ୍ଣ ପରମହଂସ ଦେବଙ୍କ ଲେଖାବଳୀ ପଢ଼ିଥିଲେ । ଏତଦ୍‌ବ୍ୟତୀତ ସେ ବ୍ରହ୍ମଚର୍ଯ୍ୟ, ଧ୍ୟାନଯୋଗ, ହଟଯୋଗ ଓ ରାଜଯୋଗ ଇତ୍ୟାଦି ବହି ଆଣି ପଢ଼ିଥିଲେ । ସେ ସ୍ୱାମୀଜୀଙ୍କ ନୀତି ଓ ଆଦର୍ଶ ମାର୍ଗରେ ଅନୁପ୍ରାଣିତ ହୋଇ ଦେଶ ମାତୃକାର ସେବା କାର୍ଯ୍ୟକୁ ନିଜଜୀବନଠାରୁ ଅଧିକ ଭଲ ପାଇଥିଲେ । ୧୯୧୩ ମସିହାରେ କଲିକତାସ୍ଥିତ ପ୍ରେସିଡେନ୍‌ସି କଲେଜରେ ଛାତ୍ର ଭାବରେ ଯୋଗ ଦେଇ ୧୯୧୫ ମସିହାରେ ଆଇ.ଏ. ପରୀକ୍ଷାରେ ପ୍ରଥମ ସ୍ଥାନରେ ଉତ୍ତୀର୍ଣ୍ଣ ହୋଇଥିଲେ । ଛାତ୍ର ଦଣ୍ଡାଦେଶ ପାଇ ୨ ବର୍ଷ ପାଠପଢ଼ା ଛାଡ଼ିଥିଲେ ମଧ୍ୟ ୧୯୧୯ ମସିହାରେ ବି.ଏ. ପରୀକ୍ଷାରେ ଅନର୍ସ ସହିତ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି କୃତକାର୍ଯ୍ୟ ହୋଇଥିଲେ । ୧୯୧୯ ମସିହା ସେପ୍ଟେମ୍ବର ୧୫ ତାରିଖରେ ଲଣ୍ଡନ ଯାତ୍ରା କରିଥିଲେ ଓ ୬ ମାସରେ ୧୯୨୦ ମସିହାରେ ଇଣ୍ଡିଆନ ସିଭିଲ ସର୍ଭିସ ପରୀକ୍ଷାରେ ଚତୁର୍ଥ ସ୍ଥାନ ଅଧିକାର କରି କୃତକାର୍ଯ୍ୟ ହୋଇଥିଲେ । ନିଜର ବ୍ୟକ୍ତିଗତ ହିତ ଅପେକ୍ଷା ଜାତି

ଓ ଦେଶର ସର୍ବାଙ୍ଗୀନ ହିତ ପାଇଁ ୧୯୨୧ ମସିହାରେ ଆଇ.ସି.ଏସ୍. ପଦବୀକୁ ପ୍ରତ୍ୟାଖ୍ୟାନ କରି ଦେଶ ସେବାରେ ମନ ନିଯୋଗ କଲେ ।

ସେ ଚାହିଁଥିଲେ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇ ସୁଖ ଓ ସ୍ୱଚ୍ଛନ୍ଦରେ ଜୀବନଟିକୁ ଉପଭୋଗ କରିପାରିଥାନ୍ତେ, କିନ୍ତୁ ମାତୃଭୂମିର ସେବା ଓ ଭାରତୀୟଙ୍କ ଦୁଃଖ ଦୁର୍ଦ୍ଦଶା ତାଙ୍କୁ ବିଚଳିତ କରି ପକାଇଲା । ତେଣୁ ପରାଧୀନ ମାତୃଭୂମିକୁ ସ୍ୱାଧୀନ ସୂର୍ଯ୍ୟାଲୋକରେ ଉଦ୍ଭାସିତ କରାଇବା ପାଇଁ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ । ୧୯୨୦ ମସିହାର ଜାଲିଆନାୱାଲବାଗର ନରସଂହାର ରକ୍ତରଞ୍ଜିତ ବିକଟାଳ ଦୃଶ୍ୟ ଓ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନ ତାଙ୍କୁ ବିଚଳିତ କରି ପକାଇଥିଲା । ତତ୍‌କାଳୀନ ସମୟରେ ଭାରତର ଏକ ପ୍ରମୁଖ ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କର ପରାମର୍ଶକ୍ରମେ ଭାରତୀୟ ଜାତୀୟ କଂଗ୍ରେସରେ ଲମ୍ଫ ପ୍ରଦାନ କରିଥିଲେ । ଗାନ୍ଧୀ ଓ ଚିତ୍ତରଞ୍ଜନ ବାବୁଙ୍କ ନୀତି ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜନୈତିକ ଜୀବନ ଆରମ୍ଭ କରିଥିଲେ ମଧ୍ୟ ତାଙ୍କର ବୈପ୍ଳବିକ ଚିନ୍ତାଧାରା ତାଙ୍କୁ ଅଧିକ ଅଗ୍ରସର କରାଇଥିଲା ।

୧୯୨୧ ମସିହା ଜୁଲାଇ ମାସରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ମହାତ୍ମା ଗାନ୍ଧୀଙ୍କ ସହ ବମ୍ବେସ୍ଥିତ ମଣି ଭବନରେ ପ୍ରଥମ ସାକ୍ଷାତରେ ସ୍ୱାଧୀନତା ସମ୍ପର୍କରେ ବିସ୍ତୃତ ଆଲୋଚନା ହୋଇଥିଲା । ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଜୀବନରେ ପ୍ରଥମ ଥର ପାଇଁ ଛଅ ମାସ ଜେଲ ଗଲେ । ୧୯୨୨ ମସିହାରେ ବଙ୍ଗଳାରେ କରାଳ ବନ୍ୟା ହୋଇଥିଲା । ଏହି ବନ୍ୟାରେ ପ୍ରପୀଡ଼ିତ ନିରୀହ ଜନତାଙ୍କର ସେବା କରି ନିଜର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ପ୍ରଥମେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ପରାମର୍ଶକ୍ରମେ ବଙ୍ଗଳାର ଗ୍ରାମେ ଗ୍ରାମେ ବୁଲି ଛାତ୍ର, ଶିକ୍ଷକ, କୃଷକ, ଓକିଲ, ସରକାରୀ କର୍ମଚାରୀ ଓ ଜନସାଧାରଣଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ଭାଷଣ ମାଧ୍ୟମରେ ଦେଶାତ୍ମବୋଧକ ସ୍ଲୋଗାନର ସ୍ୱର ମିଶାଇ ସମଗ୍ର ବଙ୍ଗଳାବାସୀଙ୍କୁ ଦେଶମାତୃକାର ସ୍ୱାଧୀନତା ପାଇଁ ପ୍ରଭାବିତ କରିପାରିଥିଲେ । ଗାନ୍ଧିଜୀ ଓ ଚିତ୍ତରଞ୍ଜନ ବାବୁଙ୍କ ସହ ନେତାଜୀଙ୍କର ଅତୁଳନୀୟ ତ୍ୟାଗ ଓ ସାଧନା ମିଶ୍ରଣରେ ଭାରତ ସ୍ୱାଧୀନତାର ଏକ ନୂତନ ଅଧ୍ୟାୟ ସୃଷ୍ଟି ହୋଇଥିଲା । ସୁଭାଷଚନ୍ଦ୍ର ବୋଷ ବଙ୍ଗଳା ପ୍ରାଦେଶିକ ଜାତୀୟ କଂଗ୍ରେସର ଏକ ଦୈନିକ ସମାଚାର 'ଫରୱାର୍ଡ଼'ର ସମ୍ପାଦକୀୟ ଦାୟିତ୍ୱ ନିର୍ଭୀକ ଭାବରେ ସମ୍ପାଦନ କରିବାରେ ସମର୍ଥ ହୋଇଥିଲେ । ୧୯୨୩ ମସିହାରେ ଚିତ୍ତରଞ୍ଜନଙ୍କ ନେତୃତ୍ୱରେ 'ସ୍ୱରାଜ୍ୟ' ନାମକ ଏକ ପାର୍ଟି ଗଠନ କରିଥିଲେ । ସୁଭାଷ ଚନ୍ଦ୍ର ବୋଷ ଏହି ପାର୍ଟିର ମୁଖ୍ୟ ଭୂମିକା ଗ୍ରହଣ କରି ପର୍ଯ୍ୟାୟକ୍ରମେ ବଙ୍ଗଳା କାହିଁକି ସମଗ୍ର ଭାରତରେ ଲୋକ ପ୍ରିୟ ହୋଇଥିଲେ ।

ମାତ୍ର ୨୭ ବର୍ଷ ବୟସରେ ସେ କଲିକତା କର୍ପୋରେସନକୁ ବିପୁଳ ଜନସମର୍ଥନରେ ନିର୍ବାଚିତ ହୋଇ ଚିଫ୍ ଏକଜ୍ୟୁଟିଭ୍ ପଦରେ ଅଧିଷ୍ଠିତ ହୋଇଥିଲେ । ଜଣେ ଦକ୍ଷ ପ୍ରଶାସକ ତଥା ସୁ-ସଂଗଠକ ଭାବେ ଲୋକହିତକର କାର୍ଯ୍ୟମାନ କରି ଜାତୀୟସ୍ତରରେ ଆଦରଣୀୟ ହୋଇପାରିଥିଲେ । ତାଙ୍କର ଲୋକପ୍ରିୟତା ଓ ପ୍ରଜାବତ୍ସଳତା ଗୁଣରେ ବ୍ରିଟିଶ ସରକାର ଈର୍ଷାନ୍ୱିତ ହୋଇ ଓ ବ୍ରିଟିଶ ବିରୋଧୀ ସନ୍ତ୍ରାସବାଦୀମାନଙ୍କ ସହ ସମ୍ପର୍କର ଆଳ ଦେଖାଇ ସୁଭାଷଙ୍କୁ ବନ୍ଦୀ କରାଇ ବର୍ମାର ମାଣ୍ଡାଲେ ଜେଲରେ ୧୯୨୪ରୁ ୧୯୨୭ ମସିହା ପର୍ଯ୍ୟନ୍ତ ରଖିଥିଲେ । ଶରୀର ଅସୁସ୍ଥତା ହେତୁ ତାଙ୍କୁ ୧୯୨୭ ମସିହା ମେ ମାସ ୨୩ ତାରିଖରେ ବନ୍ଦୀରୁ ଖଲାସ କରିଥିଲେ । ୧୯୨୯ ମସିହାରେ ରାଜନୈତିକ ବନ୍ଦୀ ଭାବେ ସରକାରୀ ଦମନ ନୀତିର ତୀବ୍ର ବିରୋଧ କରି ରାଜଦ୍ରୋହୀ ଭାବରେ ତାଙ୍କୁ ବନ୍ଦୀ କରାଯାଇଥିଲା । ୧୯୩୦ ମସିହାରେ ବନ୍ଦୀ ଅବସ୍ଥାରେ ଥାଇ ମଧ୍ୟ କଲିକତା ମୁନିସିପାଲ କର୍ପୋରେସନ୍‌ର ମେୟର ଭାବରେ ନିର୍ବାଚିତ ହୋଇଥିଲେ । ତତ୍‌ପରେ ସେ ବିଭିନ୍ନ ସ୍ଥାନରେ ହେଉଥିବା ସଭା ଓ ସମ୍ମିଳନୀରେ ଜ୍ୱଳାମୟୀ ଓ ଓଜସ୍ୱିନୀ ଭାଷଣ ମାଧ୍ୟମରେ ଯୁବଛାତ୍ରମାନଙ୍କୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଆକୃଷ୍ଟ କରାଇଥିଲେ । ଭାଷଣରେ ବନ୍ଦେ ମାତରଂ ଧ୍ୱନୀ ସହ ଭାରତ ସ୍ୱାଧୀନ ପାଇଁ ଆମର ବହୁମୂଲ୍ୟ ସମୟ ତ୍ୟାଗ ଓ ଅସରନ୍ତି ସାଧନା ଏକାନ୍ତ ଆବଶ୍ୟକ ବୋଲି କହୁଥିଲେ । ଏହାଫଳରେ ଆମ୍ଭମାନଙ୍କର ଦୁଃଖ, କଷ୍ଟ ଓ ଯନ୍ତ୍ରଣା ଦୂର ହୋଇ ସୁନାର ଭାରତ ଗଢ଼ି ଉଠିବ । ତାଙ୍କର ତ୍ୟାଗ, ନିଷ୍ଠା ଓ ସାଧନା ତାଙ୍କୁ ଜାତୀୟ ରଙ୍ଗମଞ୍ଚରେ ଜଣେ ମହାନ୍ ବିପ୍ଳବୀ ଯୋଦ୍ଧା ତଥା ବୀର ରୂପେ ଅଧିଷ୍ଠିତ କରାଇପାରିଥିଲା । ସେ ଥିଲେ ଜଣେ ଭାରତର ଅଦ୍ୱିତୀୟ ମହାପୁରୁଷ, ଯେ କି ଦେଶ ସ୍ୱାଧୀନତାର ସଚେତନାବାଣୀ ଭାରତର ସାମାଜିକ, ରାଜନୈତିକ, ସାମରିକ, ଅର୍ଥନୈତିକ ଓ ଭୌଗୋଳିକ ପରିବେଶର ସମ୍ପୂର୍ଣ୍ଣ ରୂପେ ନୂତନ ଭୀତି ସ୍ଥାପନ କରାଇପାରିଥିଲେ । ସେ ଥିଲେ ବାସ୍ତବବାଦୀ ଚିନ୍ତାଧାରାର ଏକ ଅଲୌକିକ ଦର୍ପଣ ସଦୃଶ । କାରଣ ଭାଷଣ ମାଧ୍ୟମରେ ସମଗ୍ର ଭାରତବାସୀଙ୍କୁ ଯାହା କୁହନ୍ତି, କାର୍ଯ୍ୟ ମାଧ୍ୟମରେ ତାହା ହିଁ ପ୍ରତିଫଳିତ କରିଥାନ୍ତି । କର୍କଶମୟୀ ଓ ନିଷ୍ଠୁର ଭାଷଣ ମାଧ୍ୟମରେ ଇଂରେଜ ସରକାରଙ୍କର ମୁଖା ଖୋଲି ଦେଉଥିଲେ । ତାଙ୍କର ସଂକଳ୍ପବୋଧ, ନିର୍ଭୀକତା, କର୍ତ୍ତବ୍ୟ ପରାୟଣତା ଏକନିଷ୍ଠ ତ୍ୟାଗ ଓ ଅସୀମ ସାହସିକତା ପାଖରେ ପ୍ରଜା ଶୋଷଣକାରୀ ଇଂରେଜ ସରକାରଙ୍କ ମୁଣ୍ଡ ନଇଁ ଯାଉଥିଲା । ଯାହାଫଳରେ ତାଙ୍କର ସାମରିକ ଶକ୍ତି ଉପରେ ସମଗ୍ର ଭାରତବାସୀଙ୍କର ଆତ୍ମବିଶ୍ୱାସ ସୃଷ୍ଟି ହୋଇଥିଲା ।

୧୯୩୩ ମସିହାରେ ଅସୁସ୍ଥତା ଯୋଗୁଁ ଜେଲରୁ ମୁକ୍ତି ହୋଇ ସେ ୟୁରୋପ ଗଲେ । ସେଠାରେ ଭିଏନାରେ ମିସେଜ ମୁଲରଙ୍କ ସାହାଯ୍ୟରେ 'ଦି ଇଣ୍ଡିଆନ୍ ଷ୍ଟ୍ରଗଲ' ନାମକ ଏକ ପୁସ୍ତକ ରଚନା କରିଥଲେ । ୟୁରୋପ ଓ ଫ୍ରାନ୍‌ସ ଦେଶରେ ବିଭିନ୍ନ ସ୍ଥାନ ଭ୍ରମଣ କରି ଇଂରେଜ ସରକାର ଭାରତରେ ଭାରତୀୟମାନଙ୍କ ଉପରେ କରୁଥିବା

ଅନ୍ୟାୟ ଓ ଅତ୍ୟାଚାର ସମ୍ପର୍କରେ ଧାରଣା ସୃଷ୍ଟି କରାଇଥିଲେ । ଆଉମଧ ସେ ସ୍ୱତନ୍ତ୍ରତାର କ୍ରାନ୍ତିକାରୀ ଭାଷଣମାନ ଦେବାକୁ ପଛାଇ ନଥିଲେ । ମହାଭାରତ ଯୁଦ୍ଧର ପିତାମହ ଭୀଷ୍ମଙ୍କ ପରି ନେତାଜୀ ଦୃଢ଼ ସଂକଳ୍ପ ନେଇ ଇଂରେଜ ସରକାରଙ୍କ ମେରୁଦଣ୍ଡ ଉପରେ ତୁହାକୁ ତୁହା ଅଗ୍ନିବର୍ଷା ପରି ସଂଗ୍ରାମ ଅକ୍ଷୁଣ୍ଣ ଭାବରେ ସ୍ୱାଧୀନତା ହେବା ପର୍ଯ୍ୟନ୍ତ ଜାରି ରଖିଥିଲେ । ସେ ସର୍ବଭାରତୀୟ ଜାତୀୟ କଂଗ୍ରେସର ସଭାପତି ରୂପେ ୧୯୩୮ ମସିହାରେ ନିର୍ବାଚିତ ହୋଇଥିଲେ ମଧ, ୧୯୩୯ ମସିହାରେ ଗାନ୍ଧିଜୀଙ୍କ ନୀତି ଆଦର୍ଶକୁ ସ୍ୱୀକାର ନକରି ଗାନ୍ଧୀବାଦୀଙ୍କ ଚାପରେ ଇସ୍ତଫା ଦେଇଥିଲେ । ଗାନ୍ଧିଜୀଙ୍କ ସହ ୧୯୩୯ ମସିହାରେ ନାଗପୁର ଅଧିବେଶନରେ ନେତାଜୀଙ୍କର ହୋଇଥିଲା ମନମାଳିନ । କାରଣ ଗାନ୍ଧୀ ଥିଲେ ନରମପନ୍ଥୀ ଅର୍ଥାତ୍ ବିନା ରକ୍ତପାତରେ ଅହିଂସା ମାର୍ଗରେ ଦେଶ ସ୍ୱାଧୀନ କରିବା ଥିଲା ମୂଳମନ୍ତ୍ର । କିନ୍ତୁ ସୁଭାଷ ଚନ୍ଦ୍ର ବୋଷ ଥିଲେ ଗାନ୍ଧୀଙ୍କ ନୀତି ଆଦର୍ଶର ପ୍ରତିକୂଳ ସଂଗ୍ରାମ ମାଧ୍ୟମରେ ଦେଶକୁ ସ୍ୱାଧୀନ କରିବା ଥିଲା ସୁଭାଷଚନ୍ଦ୍ର ବୋଷଙ୍କର ମୂଳମନ୍ତ୍ର । ଯଦିଓ ସେମାନଙ୍କର ମୂଳଲକ୍ଷ୍ୟ ଥିଲା ଅଭିନ୍ନ କିନ୍ତୁ ସେମାନଙ୍କର ଗନ୍ତବ୍ୟ ପଥ ଥିଲା ପୃଥକ୍ । ତେଣୁ ନାଗପୁର ଅଧିବେଶନରେ ନେତାଜୀ ବଡ଼ ନୈରାଶ୍ୟ ମନୋଭାବ ସହ ଗାନ୍ଧୀଙ୍କଠାରୁ ବିଦାୟ ନେଇଥିଲେ । ବିନା ରକ୍ତପାତରେ ଅର୍ଥାତ୍ ଯୁଦ୍ଧ ବିନା ଦେଶ ସ୍ୱାଧୀନ ଅସମ୍ଭବ ବୋଲି ତାଙ୍କ ମନରେ ଦୃଢ଼ ଧାରଣା ଜାଗ୍ରତ ହୋଇଥିଲା । ତେଣୁ ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟ, ବୈପ୍ଳବିକ ମନୋବୃତ୍ତି ଓ ଅସୀମ ସାହସିକତା ତାଙ୍କୁ ଗନ୍ତବ୍ୟ ପଥରେ ଅଗ୍ରସର କରାଇଥିଲା ।

୧୯୩୯ ମସିହାରେ 'ଫରୱାର୍ଡ଼ବ୍ଲକ୍' ନାମକ ଏକ ନୂଆ ରାଜନୈତିକ ଦଳ ଜାତୀୟ ସ୍ତରରେ ଗଠନ କରି ଇଂରେଜ ସରକାରଙ୍କ ବିରୁଦ୍ଧରେ ସେ ବିଦ୍ରୋହ ଜାରି ରଖିଥିଲେ । ତତ୍କାଳୀନ ସମୟରେ ଇଂରେଜ ସରକାରର ବିରୋଧୀ ରାଷ୍ଟ୍ର ଜର୍ମାନ ସହଯୋଗରେ ଦେଶକୁ ସ୍ୱାଧୀନ କରିବାର ସ୍ୱପ୍ନ ଦେଖୁଥିଲେ ବୀର ସଂଗ୍ରାମୀ ସୁଭାଷଚନ୍ଦ୍ର ବୋଷ । ଏହାକୁ କାର୍ଯ୍ୟରେ ପରିଣତ କରବା ପାଇଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବାବେଳେ ସେ ପୋଲିସ ଆଖିରେ ଧୂଳିଦେଇ ୧୯୪୧ ମସିହା ଜାନୁଆରୀ ମାସ ଷୋହଳ ତାରିଖ ମଧ୍ୟରାତ୍ରିରେ ଛଦ୍ମବେଶରେ ଭାରତରୁ ଆଫଗାନି ସ୍ଥାନ ପଳାଇଥିଲେ । ସେଠାରୁ ଜର୍ମାନ ଯାଇଥିଲେ । ତତ୍କାଳୀନ ସମୟର ଜର୍ମାନୀର ଶାସକ ହିଟଲରଙ୍କୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇ ଥିଲେ । ତତ୍‌ପରେ ଜାପାନ ଆସି, ଜାପାନ ସରକାରଙ୍କର ସାହାଯ୍ୟ ଭିକ୍ଷା କରିଥିଲେ । ଜର୍ମାନ ଓ ଜାପାନରେ ବନ୍ଦୀ ଅବସ୍ଥାରେ ଥିବା ପ୍ରାୟ ୪୫ ହଜାର ଭାରତୀୟ ସୈନ୍ୟମାନଙ୍କୁ ମୁକ୍ତି କରି ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଏକ ଲଢୁଆ ସଂଗ୍ରାମବାହିନୀ ଗଠନ କରିଥିଲେ । ତାଙ୍କରି ବଳିଷ୍ଠ ନେତୃତ୍ୱ ଓ ଜାପାନ ସରକାରଙ୍କର ସାହାଯ୍ୟ ଓ ସହଯୋଗରେ ୧୯୪୩ ମସିହା ଜୁଲାଇ ଦୁଇ ତାରିଖରେ 'ଆଜାଦ୍ ହିନ୍ଦ୍ ଫୌଜ' ନାମକ ଏକ ଶକ୍ତିଶାଳୀ ସୈନ୍ୟବାହିନୀ ଗଠନ କରିଥିଲେ ।

ଆଜାଦ୍-ହିନ୍ଦ୍-ଫୌଜ ବାହିନୀକୁ ଗୋଟିଏ ସୁସଂଗଠିତ ଓ ଶକ୍ତିଶାଳୀ ବାହିନୀ ରୂପେ ପରିଣତ କରିବା ପାଇଁ ନେତାଜୀଙ୍କୁ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ତାଲିମ୍ ଦେବାକୁ ପଡ଼ିଥିଲା । ଆଉମଧ ଏହି ବାହିନୀ ଗଠନ କରିବାରେ ଜାପାନ ଓ ଜର୍ମାନ ସରକାର ସାହାଯ୍ୟ ଯୋଗାଇ ଥିଲା । ଇଂରେଜ ସରକାରଙ୍କର ବିଦ୍ରୋହୀ ଦେଶଗୁଡ଼ିକ ସୁଭାଷଙ୍କର କାର୍ଯ୍ୟକୁ ସୁହାଇଥିଲା ଓ ବଳିଷ୍ଠ ନେତୃତ୍ୱ ସାହସିକତାକୁ ବିଶ୍ୱାସ କରିଥିଲେ । । ତେଣୁ ଜର୍ମାନ, ଜାପାନ ବ୍ରହ୍ମଦେଶ, ଫିଲ୍‌ପାଇନସ୍ ଇତ୍ୟାଦି ସୁଭାଷଙ୍କୁ ବିପୁଳ ସାମରିକ, ଆର୍ଥିକ ଓ ମାନସିକ ଶକ୍ତି ଯୋଗାଇ ଦେଇଥିଲେ । ଏହି ସୁବିଧା ଓ ସୁଯୋଗକୁ ଅନାଦର ନକରି ନେପୋଲିୟନଙ୍କ ପରି ସୁଭାଷଙ୍କର ବୀରତ୍ୱ, ସାହସିକତା ଓ କର୍ମନିଷ୍ଠା ଦ୍ୱିଗୁଣିତ ହୋଇଥିଲା । ଆଜାଦ-ହିନ୍ଦ୍-ଫୌଜ ବାହିନୀ ଭାରତ ମାଟିରେ ପ୍ରବେଶ କରି ନାଗାଲାଣ୍ଡର କୋହିମା ଦଖଲ କଲେ । ତତ୍‌ପରେ ମଣିପୁରର ରାଜଧାନୀ ଇମ୍ଫାଲକୁ ଘେରାଉକରି ଜାତୀୟ ପତାକା ଉଡାଇଥିଲେ । ସେହି ସମୟରେ ଜାପାନୀମାନେ ଇଂରେଜ ସରକାରଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ଫଳରେ ସୁଭାଷଙ୍କୁ ଆଉ ଜାପାନୀମାନଙ୍କ ସାହାଯ୍ୟ ମିଳିଲା ନାହିଁ । ତଥାପି ନେତାଜୀ କର୍ତ୍ତବ୍ୟରେ ପଶ୍ଚାଦପଦ ନହୋଇ ଆଜାଦ୍-ହିନ୍ଦ୍-ଫୌଜ ବାହିନୀ ଦ୍ୱାରା ରଣହୁଙ୍କାର ଦେଇ ଇଂରେଜ ସରକାରଙ୍କ ବିରୁଦ୍ଧରେ ବୀରତ୍ୱର ନମୁନା ଦେଇଛନ୍ତି । ଏହାର ପ୍ରତିବାଦରେ ଇଂରେଜ ସରକାର ନେତାଜୀଙ୍କୁ ଜାପାନୀ ସରକାରର ସଖୀ କଣ୍ଢେଇ ପରି ବିଦ୍ରୂପ କରିଥିଲେ । କିନ୍ତୁ ଆମେରିକା ସରକାର ନେତାଜୀଙ୍କ ଦ୍ୱାରା ଗଠିତ ଅସ୍ଥାୟୀ ସରକାରଙ୍କୁ ଭୟକରି ଭାରତକୁ ସ୍ୱାଧୀନ କରିବା ପାଇଁ ଇଂରେଜ ସରକାରଙ୍କୁ ପରାମର୍ଶ ଦେଇଥିଲେ ।

କେବଳ ଐତିହାସିକଙ୍କ ମତରେ ଭାରତୀୟ ସ୍ୱାଧୀନତା ସଂଘର୍ଷର କର୍ଣ୍ଣଧାର ନେତାଜୀ ସୁଭାଷଚନ୍ଦ୍ର ବୋଷ ମୃତ କି ଜୀବିତ ଏକ ରହସ୍ୟମୟ ହୋଇ ରହିବା ସଂଗେସଂଗେ ଜାତୀୟ ଇତିହାସରେ ଶୂନ୍ୟସ୍ଥାନ ହୋଇ ରହିଅଛି । କେହି କେହି କହନ୍ତି ୧୯୪୫ ମସିହାରେ ଏକ ବିମାନ ଦୁର୍ଘଟଣାରେ ସେ ମୃତ୍ୟୁବରଣ କରିଥିଲେ । ଏହାର ପ୍ରକୃତ ସତ୍ୟାସତ୍ୟ ଜାଣିବା ପାଇଁ ୧୯୯୮ରେ କୋଲକତା ହାଇକୋର୍ଟର ଏକ ନିର୍ଦ୍ଦେଶ ଅନୁଯାୟୀ ୧୯୯୯ ମେ ୧୪ ତାରିଖରେ ଗଠିତ ହୋଇଥିଲା ଜଷ୍ଟିସ ମୁଖାର୍ଜୀ କମିଶନ । ନଭେମ୍ବର ୮ ତାରିଖରେ ଏହାର ଫାଇନାଲ ରିପୋର୍ଟ ସରକାରଙ୍କ ପାଖରେ ପେଶ କରିଥିଲେ । କିନ୍ତୁ ଏହି ରିପୋର୍ଟ ଅତୀତରେ ଗଠିତ ହୋଇଥିବା ଖୋସଲା କମିଶନ ଓ ଶାହା ନୱାଜ କମିଶନଠାରୁ ପୃଥକ୍ ଥିଲା । ବହୁ ବାଦବିବାଦ, ପର୍ଯ୍ୟବେକ୍ଷଣ ଓ ଆଲୋଚନା ମାଧ୍ୟମରେ ଭାରତର କେତେକ ପ୍ରମୁଖ ରାଜନୈତିକ ଓ ଐତିହାସିକଙ୍କ ମତରେ ନେତାଜୀଙ୍କ ମୃତ୍ୟୁକୁ ବିଶ୍ୱାସ ନକରି ଜୀବିତ ବୋଲି ମତପୋଷଣ କରିଛନ୍ତି । ବର୍ତ୍ତମାନ ନେତାଜୀଙ୍କ ମୃତ୍ୟୁ ହୋଇଛି କି ଜୀବିତ ଅଛନ୍ତି ଏକ ପ୍ରଶ୍ନବାଚୀ ହୋଇ ରହିଅଛି ।

ନେତାଜୀ ସୁଭାଷଚନ୍ଦ୍ର ବୋଷ ଥିଲେ ପୂର୍ବ ଦିଗ୍‌ବଳୟର ଉଦୟଗାମୀ ସୂର୍ଯ୍ୟ ସଦୃଶ । କାରଣ ସୂର୍ଯ୍ୟରଶ୍ମୀ ଯେପରି ଘଞ୍ଚ ଅନ୍ଧକାରକୁ ଦୂରେଇ ଆଲୋକର ଧାରା ସମଗ୍ର ବିଶ୍ୱଦରବାରର ଘଞ୍ଚ ଜଙ୍ଗଲ, ପାହାଡ଼, ପର୍ବତ, ନଦନଦୀ, ଗ୍ରାମ ଓ ସହର ଇତ୍ୟାଦି ଗଳିକନ୍ଦିରେ ବିଚ୍ଛୁରୀତ ହୋଇଥାଏ, ଠିକ୍ ସେପରି ନେତାଜୀଙ୍କ ପ୍ରତିଭାର ଜ୍ୟୋତି ବିଶ୍ୱର ସମଗ୍ର ମାନବ ସମାଜର ହୃଦୟକୁ ସ୍ପର୍ଶ କରିପାରିବା ସଂଗେସଂଗେ ମାନସପଟରେ ଲିପିବଦ୍ଧ ହୋଇ ରହିଅଛି । ପଶୁରାଜ ସିଂହ ପରି ସେ ଥିଲେ ବୀରତ୍ୱ ଓ ସାହସିକତାର ପ୍ରତୀକ । ତାଙ୍କ ଶରୀରର ପ୍ରତ୍ୟେକ ଲୋମକୂପରେ ଭରି ରହିଥିଲା ଜନ୍ମଭୂମି ଭାରତ ମାତାର ରକ୍ତ କଣିକା । ସେ ଥିଲେ ବୈପ୍ଳବିକ ଚେତନାର ଏକ ବୀର ମହାପୁରୁଷ । ଆଜିର ଯୁବପିଢ଼ି ତାଙ୍କର ଚୀର ସ୍ମରଣୀୟ ଜ୍ୱଳନ୍ତ ଆଶା ଓ ଆକାଂକ୍ଷାକୁ କାର୍ଯ୍ୟରେ ପରିଣତ କରିବା ଅର୍ଥାତ୍ ସୁନାର ଭାରତ ଗଠନ କରିବା ଏକାନ୍ତ କାମ୍ୟ । ଭାରତ ସ୍ୱାଧୀନତା, ବୈଦେଶିକ ନୀତିର ଅବଦାନ ପାଇଁ ସେ ଭାରତ କାହିଁକି ସମଗ୍ର ବିଶ୍ୱର ମାନବସମାଜ ପାଖରେ ଚୀର ସ୍ମରଣୀୟ ହୋଇରହିବା ସଂଗେସଂଗେ ବିଶ୍ୱ ଇତିହାସରେ ଏକ ଉଦିୟମାନ ରବି ପରି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ଯୁଗ ଯୁଗ ଧରି ରହିଥିବେ ।

ଘ.ନଂ.-ଟୁ.ଆର.ଏ.-୩୫/୭
ଆଠ ନମ୍ବର, ଭୁବନେଶ୍ୱର

# କଳାହାଣ୍ଡି ଜଳବିଭାଜିକା ମିଶନ୍‌ର ସଫଳ ରୂପାୟନ - ମହାଜନଗୁଡ଼ା

କଳାହାଣ୍ଡି ଜିଲ୍ଲା କୋକସରା ବ୍ଳକ୍ ଅନ୍ତର୍ଗତ ମହାଜନଗୁଡ଼ା । ଗ୍ରାମଟି କୋକସରାଠୁଁ ୫ କି.ମି. ଦୂରରେ । ଜଳବିଭାଜିକା କମିଟି, ଚେୟାରମେନ, ସେକ୍ରେଟେରୀ, ସ୍ୱୟଂ ସହାୟକ ଦଳ, ବ୍ୟବହାରକାରୀ ଦଳ, ଗ୍ରାମବାସୀ ସମସ୍ତେ ସମବେତ ହୋଇଥିଲେ ।

ଏହି ଜଳବିଭାଜିକାଟି ସମନ୍ୱିତ ପତିତ ଜମି ଉନ୍ନୟନ ଯୋଜନାରେ ବିକଶିତ ହୋଇଛି । ୨୦୦୧-୦୨ରେ ଆରମ୍ଭ ହୋଇ ଏହି ବର୍ଷ ପ୍ରକଳ୍ପର କାର୍ଯ୍ୟକାଳ ସରିବାକୁ ଯାଉଛି । ଏହା ଦୁଇଟି ଗ୍ରାମ ମହାଜନଗୁଡ଼ା ଓ ବାଂଜିବାହାଲକୁ ନେଇ ଗଠିତ । ୧୫୨ଟି ପରିବାର । ୮୦ ଭାଗ ପରିବାର ହରିଜନ ଆଦିବାସୀ । ୫୫୦ ହେକ୍ଟର ଜମିକୁ ଉନ୍ନୀତ କରିବା ପାଇଁ ଲକ୍ଷ୍ୟ ସ୍ଥିର କରାଯାଇଥିଲା । ଏ ପର୍ଯ୍ୟନ୍ତ ୪୫୦ ହେକ୍ଟର ଜମିର ଉନ୍ନତିକରଣ ସମ୍ଭବ ହୋଇପାରିଛି । ପ୍ରକଳ୍ପ ପାଇଁ ୨୨ ଲକ୍ଷ ଟଙ୍କା ମିଳିସାରିଛି ଓ ୧୮ ଲକ୍ଷ ୭୮ ହଜାର ଟଙ୍କା ବିନିଯୋଗ କରାଯାଇଛି । ଏହାଦ୍ୱାରା ବିଭିନ୍ନ କାର୍ଯ୍ୟକ୍ରମ ଯଥା- ବର୍ଷାଜଳ ସଂଗ୍ରହ ପାଇଁ ୧୦ ଗୋଟି ବନ୍ଧ, ମୃତ୍ତିକା ଓ ଜଳ ସଂରକ୍ଷଣ ପାଇଁ ୧୭ ହେକ୍ଟର ଢିପ ଜମିରେ ହୁଡ଼ା ନିର୍ମାଣ, ୪ ହେକ୍ଟର ଜମିରେ ବୃକ୍ଷରୋପଣ, ଧୋତା ନିୟନ୍ତ୍ରଣ, ଘରବାଡ଼ିରେ ବିଭିନ୍ନ ଚାରାଗଛ ରୋପଣ, ଚାଷପାଇଁ ଯନ୍ତ୍ରପାତି ଓ ଉନ୍ନତ ବିହନ ଯୋଗାଣ, ମାଛଚାଷ, ଗରିବ ଲୋକଙ୍କ ଜୀବିକା ପାଇଁ ସହାୟତା କରାଯାଇଛି ।

ଏହି ଯୋଜନାରେ ୧୧ ଗୋଟି ସ୍ୱୟଂ ସହାୟକ ଦଳ ମଧ୍ୟ ଗଠନ କରାଯାଇଛି । ଏହାଦ୍ୱାରା ଗାଁରେ ସଂଚୟ ବଢ଼ିଯାଇଛି ଓ ସ୍ତ୍ରୀଲୋକମାନେ ଉପାର୍ଜନକ୍ଷମ ହୋଇପାରିଛନ୍ତି । ଜଳ ବିଭାଜିକା ଯୋଜନାରେ ସେମାନେ ବିଭିନ୍ନ ସାମାଜିକ ସୁରକ୍ଷା ଯୋଜନା ଯଥା- ସାଧାରଣ ବଣ୍ଟନ (ପି.ଡି.ଏମ୍.)ରେ ସାମିଲ ହୋଇପାରିଛନ୍ତି । ଫଳରେ ଯୋଜନା ଠିକ୍ ଭାବରେ ଚାଲିପାରିଛି ଓ ଗ୍ରାମବାସୀ ସନ୍ତୁଷ୍ଟ ଅଛନ୍ତି । ଦଳ ମଧ୍ୟ ଗାଁ ପୋଖରୀ ଲିଜ୍ ନେଇ ମାଛଚାଷ କରିପାରିଛନ୍ତି ।

ସେଠାରେ ମାଇଗ୍ରେସନ ପୂରାପୂରି ଭାବେ ବନ୍ଦ ହୋଇପାରିଛି । ପାଞ୍ଚବର୍ଷ ପୂର୍ବେ ଗାଁର ପ୍ରାୟ ୯୦ ଭାଗ ଲୋକେ କାମଧନ୍ଦା ଅନ୍ୱେଷଣରେ ରାଜ୍ୟ ବାହାରକୁ ଯାଉଥିଲେ । ଜଳବିଭାଜିକାର ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସେମାନେ କର୍ମନିଯୁକ୍ତି ପାଇ ପାରିଛନ୍ତି । ରବିଚାଷ ଅଂଚଳ ଆଶାତୀତ ଭାବେ ବୃଦ୍ଧି ପାଇଛି । ପ୍ରକଳ୍ପ ଆରମ୍ଭରେ ୫ ଏକରରୁ ଏବେ ୫୦ ଏକରରେ ପହଞ୍ଚିଛି । ଯୋଜନା ତରଫରୁ ବିଭିନ୍ନ କିସମର ବିହନ ଯୋଗାଇ ଦିଆଯାଇଛି । ଖାରବେଳ ଧାନବିହନ ସବୁଠାରୁ ଗ୍ରହଣୀୟ ହୋଇପାରିଛି । ମୁଗ, ପିଆଜ, ମଟର, ବିରି, ପନିପରିବା, ଚାଷ ବହୁପରିମାଣରେ ଚାଷୀକୁ ଲାଭବାନ କରିପାରିଛି । ଗରିବ ଲୋକମାନଙ୍କୁ ଛେଳିଚାଷ ପାଇଁ ସହାୟତା କରାଯାଇଛି । ସେମାନେ ତଦ୍ୱାରା ଉନ୍ନତି କରିପାରିଛନ୍ତି । ଗାଁର ଆଉ ମରୁଡ଼ିର ଭୟ ନାହିଁ ।

ସୌଜନ୍ୟ : ଜିଲ୍ଲା ସୂଚନା ଅଧିକାରୀ, କଳାହାଣ୍ଡୀ

# ସ୍ୱାଧୀନତା ସଂଗ୍ରାମର ମହାନ ସାରଥୀ ବିପ୍ଳବୀ ବୀର ଚକରା ବିଶୋଇ

ଡଃ ସୁରେଶ ଚନ୍ଦ୍ର ପଣ୍ଡା

ଅନନ୍ତ ଆକାଶକୁ ନ ଦେଖିଲେ ଯେମିତି ତା'ର ବିଶାଳତାକୁ ଉପଲବ୍ଧି କରି ହୁଏନା, ସାଗରର ବିସ୍ତୃତି ପ୍ରତି ଦୃଷ୍ଟି ନିକ୍ଷେପ ନକଲେ ତା'ର ଗଭୀରତାକୁ ଯେଭଳି ମାପ କରି ହୁଏନା, ଠିକ୍ ସେହିପରି ଉତ୍କଳର ଗୌରବମୟ ଐତିହ୍ୟ ସଂପର୍କରେ କହିଲାବେଳେ ଏହାର ଭୌଗୋଳିକ ସରହଦ ମଧ୍ୟରେ ଅବସ୍ଥିତ ଘୁମୁସର ସଂପର୍କରେ ନ କହିଲେ ଉତ୍କଳର ଇତିହାସ ପୂର୍ଣ୍ଣତା ଲାଭ କରିପାରେନା । କାରଣ କାଳର ପ୍ରବାହରେ ଦିନେ ଏପରି ସମୟ ଆସିଛି, ଯେତେବେଳେ ଓଡ଼ିଆ ଭାଷା ତଥା ଜାତିର ସ୍ଥିତି ଉପରେ ପ୍ରଶ୍ନ ଉଙ୍କି ମାରିଛି । ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଘୁମୁସରରେ ଜନ୍ମଲାଭ କରିଥିବା ମହାନ୍ କବି ଉପେନ୍ଦ୍ର ଭଞ୍ଜଙ୍କ ଚଳଚଞ୍ଚଳ ଲେଖନୀ ନିଃସୃତ ଅଜସ୍ର କାବ୍ୟଗ୍ରନ୍ଥ ଓଡ଼ିଆ ଭାଷା ତଥା ଜାତିକୁ ବଞ୍ଚାଇ ଦେଇଛି । ପୁଣି ପରାଧୀନ ଜନ୍ମଭୂମିର କ୍ରନ୍ଦନକୁ ଉପଲବ୍ଧି କରି ଏହାର ସ୍ୱାଧୀନତାକୁ ଫେରାଇ ଆଣିବା ପାଇଁ ଏହି ମାଟି ଦିନେ ରକ୍ତରଂଜିତ ହୋଇଉଠିଛି । ଏ ଜାତିର ଦୁର୍ଦ୍ଦିନରେ ସାମ୍ରାଜ୍ୟବାଦୀ ବିଦେଶୀ ଶାସନର ମୂଳୋତ୍ପାଟନ ନିମନ୍ତେ ରଣହୁଙ୍କାର ଦେଇ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୁଃସାହସିକ ସଂଗ୍ରାମକୁ ଜାରି ରଖିଥିବା ଅନ୍ୟ ଜଣେ ପ୍ରବାଦପୁରୁଷ ହେଉଛନ୍ତି ଘୁମୁସରର ସୁଯୋଗ୍ୟ ସନ୍ତାନ ସଂଗ୍ରାମୀ ବୀର ଚକରା ବିଶୋଇ ।

ସେଦିନ ଥିଲା ୧୮୨୩ ମସିହା ଶାମ୍ବ ଦଶମୀ । ଉତ୍କଳର ଭାଗ୍ୟାକାଶରେ ଏକ ବିସ୍ମୟ ଶିଶୁ ଆବିର୍ଭାବ ହୋଇଥିଲା । ଘୁମୁସରର ଘୁମନ୍ତ ପ୍ରକୃତି ମଧ୍ୟରେ କୁଆଁ କୁଆଁ ରାବକରି ଏହାର ନିସ୍ତବ୍ଧତାକୁ ଭଙ୍ଗ କରିଥିବା ସେହି ନବଜାତ ଶିଶୁଟି ଥିଲା ଚକରା ବିଶୋଇ । ବାସ୍ତବିକ ସେଦିନ ପିତାମାତାଙ୍କ କୋଳ ମଣ୍ଡନ କରିଥିବା ଶିଶୁକୁ ପାଇ ବିଶୋଇ ପରିବାର ଧନ୍ୟ ହୋଇଥିଲେ । ସତେ ଯେପରି ଜନ୍ମଭୂମିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବାପାଇଁ ଦୁର୍ବାର ସ୍ୱପ୍ନ ନେଇ ସେ ଜନ୍ମ ହୋଇଥିଲା । ପିତାମାତାଙ୍କ କୋଳରେ ବଢୁଥିବା ଚକରା ବିଶୋଇ ଉପରେ ସ୍ୱାଧୀନତା ସଂଗ୍ରାମର ପ୍ରଭାବ ପଡ଼ିଥିଲା । କାରଣ ଏହି ପରିବାରର ବ୍ରିଟିଶ ଶାସନକୁ ହଟାଇବା ପାଇଁ ସଂଗ୍ରାମକୁ ଜାରି ରଖିଥିବା ଦୋହରା ବିଶୋଇ ଓ ଶ୍ୟାମ ବିଶୋଇଙ୍କର ରକ୍ତ ତାଙ୍କ ଶରୀରରେ ପ୍ରବାହିତ ହେଉଥିଲା । ସୁତରାଂ ସେ ନିଜ ପିତୃସ୍ୱଦଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ଜନ୍ମଭୂମିର ସେବା କରିବା ନିମନ୍ତେ ବ୍ରତୀ ହୋଇଥିଲେ । ସେ ଚାହିଁଥିଲେ ନିଜ ସାଂସାରିକ ଜୀବନକୁ ଭୋଗ ବିଳାସରେ କଟାଇପାରିଥାନ୍ତେ କିନ୍ତୁ ଜନ୍ମଭୂମିର ମୁକ୍ତିର ସ୍ୱପ୍ନରେ ବିଭୋର ହୋଇ ତୁଳିତଳ୍ପ ପରିତ୍ୟାଗ ପୂର୍ବକ ସେ ଆପଣେଇ ନେଇଥିଲେ ଦୁଷ୍କର ତଥା ବନ୍ଧୁର ପଥକୁ ।

ଚକରା ବିଶୋଇଙ୍କ ସଂଗ୍ରାମୀ ଜୀବନର ଅବତାରଣା କରାଯିବା ପୂର୍ବରୁ ଘୁମୁସରର ଐତିହାସିକ ପୃଷ୍ଠଭୂମି ଉପରେ ସମ୍ୟକ୍ ଆଲୋଚନା ନିତାନ୍ତ ଆବଶ୍ୟକ । ୮୩୨ ଖ୍ରୀଷ୍ଟାବ୍ଦ ବେଳକୁ ବୌଦରେ ଭଂଜବଂଶର ରାଜାମାନେ ରାଜୁତି କରୁଥିଲେ । ଏତିକିବେଳେ ତତ୍କାଳୀନ ବୌଦର ରାଜା ରଘୁନାଥ ଭଂଜ ଘୁମୁସରର ରାଜ୍ୟ ପ୍ରତିଷ୍ଠା କରିଥିଲେ । ଏହି ସମୟରୁ ହିଁ ଏଠାରେ ଭଂଜ ବଂଶର ରାଜୁତି ଆରମ୍ଭ ହେଲା । ଏହାପରେ ଘୁମୁସର ଯେତେବେଳେ ମୋଗଲମାନଙ୍କ ପରୋକ୍ଷ ଶାସନରେ ରହିଛି ତ କେତେବେଳେ ମରହଟ୍ଟା, ଫରାସୀ ଓ ଇଂରେଜ କର୍ତ୍ତୃତ୍ୱାଧୀନ ହୋଇଛି । ତଥାପି ଘୁମୁସରର ଭୌଗୋଳିକ ଅବସ୍ଥିତି ଅତୁଟ ରହିବା ସହିତ ଭଂଜ ବଂଶର ରାଜାମାନେ ଏହାର ପ୍ରତ୍ୟକ୍ଷ ଶାସନରେ ରହିଛନ୍ତି । ଘୁମୁସରର ପ୍ରବଳ ପ୍ରତାପୀ ରାଜା କୃଷ୍ଣଚନ୍ଦ୍ର ଭଂଜ ବିଦେଶୀମାନଙ୍କ ପ୍ରଭାବକୁ ଲୋପ କରିବା ନିମନ୍ତେ ୧୭୬୩ ଖ୍ରୀଷ୍ଟାବ୍ଦରେ ଏଠାରେ ସଂଗ୍ରାମର ଶୁଭାରମ୍ଭ କରିଥିଲେ । ୧୭୬୬ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ଦ୍ୱିତୀୟ ଶାହାଆଲମ୍ଙ୍କ ସ୍ୱୀକୃତି ଲାଭ କରିବା ଫଳରେ ଘୁମୁସରର ମାଡ୍ରାସ ପ୍ରେସିଡେନ୍ସିଭୁକ୍ତ ହୋଇ ଇଂରେଜ ଶାସନାଧୀନ ହୋଇଥିଲା ।

ସେହିଦିନଠାରୁ ଘୁମୁସର ରାଜ୍ୟର ସ୍ୱାଧୀନତାକୁ ଫେରାଇ ଆଣିବା ନିମନ୍ତେ ଏଠାରେ ସଂଗ୍ରାମ ଜାରି ରହିଥିଲା । ୧୮୩୬ ମସିହାବେଳକୁ ଘୁମୁସରର ରାଜାଥିଲେ ଧନଞ୍ଜୟ ଭଂଜ । ସେ ଥିଲେ ଜଣେ ପ୍ରଭାବଶାଳୀ ତଥା ସ୍ୱାଭିମାନି ଶାସକ । ତାଙ୍କର ପ୍ରଧାନ ସେନାପତି ଥିଲେ ଦୋହରା ବିଶୋଇ । ଧନଞ୍ଜୟ ଭଂଜ ଇଂରେଜ ସରକାରଙ୍କୁ ଘୁମୁସରର ରାଜସ୍ୱ ପଇଠ ନ କରିବାରୁ ତାଙ୍କୁ ଗାଦିଚ୍ୟୁତ କରାଗଲା । ଫଳରେ ପୂର୍ବରୁ ଜୁହୁଳୁଥିବା ସଂଗ୍ରାମ ଏକ ମୁକ୍ତି ଆନ୍ଦୋଳନରେ ରୂପାନ୍ତରିତ ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ

ବିଶ୍ୱସ୍ତ ଦେଶଭକ୍ତ ତଥା ମହାନ୍ ସ୍ୱାଧୀନତା ସଂଗ୍ରାମୀ ଦୋହରା ବିଶୋଇ । ତାଙ୍କୁ ଉପଯୁକ୍ତ ସହାୟତା କରିଥିଲେ ଚକରା ବିଶୋଇ । ୧୮୩୫ ମସିହାରୁ ୧୮୩୭ ମସିହା ପର୍ଯ୍ୟନ୍ତ ସେ ସଂଗ୍ରାମକୁ ଜାରି ରଖି ଇଂରେଜମାନଙ୍କ ଅଶେଷ କ୍ଷତି ଘଟାଇଥିଲେ ।

୧୮୩୭ ମସିହାରେ ଇଂରେଜ ସେନାପତି ଏବଂ ଦୋହରାଙ୍କ ସେନାର ଏକ ସଂଘର୍ଷ ଘଟିଥିଲା । ହେଲେ ପ୍ରବଳ ପ୍ରତାପୀ ଇଂରେଜ ସେନାର ଗୁଳିଗୋଳା ସମ୍ମୁଖରେ ପାରମ୍ପରିକ ଖଣ୍ଡାଧାର ଧନୁ ତୀର ପରି ଅସ୍ତ୍ର ଧରି ଦୋହରା ବେଶି କାଳ ତିଷ୍ଠି ପାରିନଥିଲେ । ଇଂରେଜ ସେନା ଅତି ନୃଶଂସ ଭାବରେ ବିଶୋଇ ପରିବାରକୁ ହତ୍ୟା କରିଥିଲେ । କେବଳ ଚକରା ଜଣେ ବାଳକ ହୋଇଥିବାରୁ ତାଙ୍କୁ ଛାଡ଼ି ଦିଆଯାଇଥିଲା । ଏହି ଘଟଣା ଥିଲା ଚକରାଙ୍କ ପ୍ରତି ବଜ୍ରପାତ ସ୍ୱରୂପ । ତଥାପି ଏହା ତାଙ୍କୁ ସଂଗ୍ରାମ କରିବାକୁ ବିରତ କରିପାରିନଥିଲା । ବରଂ ଅଧିକ ସଂଗ୍ରାମ କରିବା ନିମନ୍ତେ ଶତସିଂହର ବଳପ୍ରଦାନ କରିଥିଲା । ଫଳରେ ଘୁମୁସରରେ ନିଜ ସଂପ୍ରଦାୟ ମଧ୍ୟରେ ଜାଗରଣ ସୃଷ୍ଟି କରି ବର୍ବର ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନକୁ ତୀବ୍ର କରିଥିଲା । ଚକରାଙ୍କୁ ଦମନ କରିବା ନିମନ୍ତେ ସରକାର କ୍ୟାପ୍‌ଟେନ୍ ମେଲ୍‌ଫର୍ ସନ୍ ଓ ପରେ କର୍ଣ୍ଣେଲ କ୍ୟାମ୍ପବେଲଙ୍କ ପରି ସେନା ଅଫିସର୍‌ମାନଙ୍କୁ ପଠାଇଥିଲେ । ହେଲେ ଚକରାଙ୍କୁ ସେମାନେ ଧରିପାରିଲେ ନାହିଁ । କିମ୍ବା ଆନ୍ଦୋଳନ ବନ୍ଦ ହେଲା ନାହିଁ । ଚକରାଙ୍କ ବିଦ୍ରୋହରେ ତତ୍କାଳୀନ ଭାରତର ବଡଲାଟ ଲର୍ଡ଼ ଡେଲହାଉସୀ ମଧ୍ୟ ବ୍ୟସ୍ତ ହୋଇପଡ଼ିଲେ । ଚକରାଙ୍କୁ ଧରିବା ପାଇଁ ଦୀନବନ୍ଧୁ ପଟ୍ଟନାୟକଙ୍କ ପରି କେତେକ ଦେଶଦ୍ରୋହୀ ଇଂରେଜ ସରକାରଙ୍କୁ ସାହାଯ୍ୟ କରିଥିଲେ । ତଥାପି ତାଙ୍କୁ ଧରିବାରେ ଇଂରେଜ ପ୍ରଶାସନ ବ୍ୟର୍ଥ ହୋଇଥିଲେ ।

ଚକରା ବିଶୋଇଙ୍କ ୧୮୪୨ ମସିହାରୁ ୧୮୫୬ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୫ ବର୍ଷର ଅଦମ୍ୟ ସଂଗ୍ରାମ କେବଳ ଘୁମୁସର କାହିଁକି ସମଗ୍ର ଭାରତବର୍ଷର ଜନଗଣଙ୍କ ମଧ୍ୟରେ ଜାତୀୟତାର ବହ୍ନିକୁ ଜଳାଇ ପାରିଥିଲା । କାରଣ ଏହାର ପରବର୍ତ୍ତୀ ସମୟରେ ସିପାହୀ ବିଦ୍ରୋହର ଆରମ୍ଭ ହୋଇଥିଲା । ଆଉ ପ୍ରଥମ କରି ଭାରତୀୟମାନେ ଗୋଟିଏ ସୂତ୍ରରେ ଆବଦ୍ଧ ହୋଇ ଇଂରେଜ ଶାସନକୁ ଲୋପ କରିବା ନିମନ୍ତେ ସଂଗ୍ରାମ କରିଥିଲେ । ଚକରା ବିଶୋଇ ନିଜ ସ୍ୱାର୍ଥ ପାଇଁ କେବେ ବିପ୍ଳବ କରିନଥିଲେ କିମ୍ବା ଶାସନଗାଦିର ମୋହ ତାଙ୍କର ନଥିଲା । ବରଂ ଜଣେ ନିଃସ୍ୱାର୍ଥପର ସଚ୍ଚା ଦେଶପ୍ରେମୀଭାବେ ମାତୃଭୂମି ପ୍ରତି ଗଭୀର ମମତ୍ୱବୋଧ ଓ ଉଗ୍ର ଜାତୀୟତାବୋଧ ତାଙ୍କୁ ବ୍ରିଟିଶ ବାହିନୀ ବିରୁଦ୍ଧରେ ବିପ୍ଳବ କରିବା ନିମନ୍ତେ ପ୍ରେରଣା ଯୋଗାଇ ଥିଲା । ଦୁର୍ଦ୍ଦଶ ବ୍ରିଟିଶସେନା ଚକରାଙ୍କର ଗରିଲା ଯୁଦ୍ଧର ସମ୍ମୁଖୀନ ହୋଇନପାରି ଯେତେବେଳେ ତାଙ୍କୁ ନାନା ପ୍ରଲୋଭନ ଦେଖାଇ ସନ୍ଧି ପ୍ରସ୍ତାବ ଦେଇଥିଲେ, ସେତେବେଳେ ଚକରା କହିଥିଲେ - 'ମୁଁ ଆଉ କିଛି ଚାହେଁନା, ମୁଁ ଚାହେଁ ମୋର ଜନ୍ମମାଟିର ମୁକ୍ତି ।' ଏପରିକି ତାଙ୍କୁ ଧରାଇ ଦେଲେ ପ୍ରଚୁର ଅର୍ଥ ପୁରସ୍କାରର ମଧ୍ୟ ଘୋଷଣା କରାଯାଇଥିଲା । ହେଲେ ତାଙ୍କ ପ୍ରତି ସବୁଶ୍ରେଣୀର ଲୋକଙ୍କର ରହିଥିଲା ଅଜସ୍ର ସ୍ନେହ ତଥା ଶ୍ରଦ୍ଧା । ଏଣୁ ଜନସାଧାରଣଙ୍କଠାରୁ ସେ ସର୍ବଦା ସହଯୋଗ ପାଉଥିଲେ । ୧୮୪୮ ମସିହାରେ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଡେଲହାଉସୀ ମାନ୍ଦ୍ରାଜ ପ୍ରେସିଡେନ୍‌ସିକୁ କଡ଼ା ନିର୍ଦ୍ଦେଶ ଦେଇଥିଲେ ଚକରାକୁ ଧରିବା ପାଇଁ । ଏହାର ପ୍ରତ୍ୟୁତ୍ତରରେ ଇଷ୍ଟଇଣ୍ଡିଆ କମ୍ପାନୀର ବୋର୍ଡ଼ ଅଫ୍ କଣ୍ଟ୍ରୋଲର ପ୍ରେସିଡେଣ୍ଟଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ - 'ଚକରା ବିଶୋଇ ହେଉଛନ୍ତି ଜଣେ ଦୁଃସାହସିକ ବିଦ୍ରୋହୀ । ତାଙ୍କୁ ଧରିବା ପାଇଁ ପର୍ବତ କନ୍ଦରରୁ ଉପତ୍ୟକା ପର୍ଯ୍ୟନ୍ତ ଖୋଜା ଚାଲିଛି । ହେଲେ ତାଙ୍କର ସନ୍ଧାନ ପାଇବା କଷ୍ଟକର ହୋଇପଡ଼ିଛି । ତଥାପି ତାଙ୍କୁ ଓ ତାଙ୍କର ଅନୁଗାମୀମାନଙ୍କୁ ଦିନେ ନା ଦିନେ ଧରାଯିବ ।' ଏହି ଚିଠିରୁ ଚକରାଙ୍କର ଅସାଧାରଣ ମୁକ୍ତି ସଂଗ୍ରାମ ସଂପର୍କରେ ସୂଚନା ମିଳେ । ଏହାଛଡ଼ା ସରକାରଙ୍କ ସମସ୍ତ ପ୍ରଲୋଭନକୁ ପରିତ୍ୟାଗ କରି ସେ ଯେଉଁ ଅପୂର୍ବ ସଂହତି ଓ ତ୍ୟାଗ ଭାବର ପରାକାଷ୍ଠା ପ୍ରଦର୍ଶନ କରି ଯାଇଛନ୍ତି ତାହା ତାଙ୍କ ଦେଶପ୍ରେମର ଉଜ୍ଜ୍ୱଳ ନିଦର୍ଶନ ଅଟେ ।

ଚକରା ବିଶୋଇଙ୍କ ଜୀବନର ଅନ୍ୟ ଏକ ଦିଗ ହେଲା ସେ ଜଣେ ପ୍ରଖ୍ୟାତ ଦେବୀ ସାଧକ ଥିବାର ଜଣାଯାଏ । ଲେମ୍ବେଇ ଗ୍ରାମର ଅଦୂରରେ ଥିବା ନିଘଞ୍ଚ ଅରଣ୍ୟ ମଧ୍ୟରେ ଚକ୍ରଘାଟିଠାରେ ସେ ଦେବୀ ଦୁର୍ଗାଙ୍କୁ ସାଧନା କରୁଥିଲେ । ସେଠାରୁ ହିଁ ବ୍ରିଟିଶ ବାହିନୀ ବିରୁଦ୍ଧରେ ଗରିଲାଯୁଦ୍ଧକୁ ପରିଚାଳନା କରୁଥିଲେ । ଦେବୀଙ୍କ ଉଦ୍ଦେଶ୍ୟରେ ସେ ରଖିଥିବା ଦୁଇଟି ଘଣ୍ଟି ଅଦ୍ୟାପି ସେଠାରେ ରହିଛି । ଫାଲଗୁନ ମାସରେ ତାରସିଙ୍ଗ୍ ଗ୍ରାମର ଅଧିବାସୀମାନେ ଏହି ଘଣ୍ଟି ଦୁଇଟିକୁ ଗ୍ରାମସାରା ବଡ଼ପଟୁଆର କରି ବୁଲାଇଥାନ୍ତି । ଏହା 'ରଣଘଣ୍ଟା' ପର୍ବ ନାମରେ ଖ୍ୟାତ । କୁହାଯାଏ, ବ୍ରିଟିଶ୍ ବାହିନୀ ବିରୁଦ୍ଧରେ ସଂଗ୍ରାମୀ ଦେଶଭକ୍ତମାନଙ୍କୁ ସତର୍କ କରିବା ପାଇଁ ଆବଶ୍ୟକ ବେଳେ ଏହି ଘଣ୍ଟି ଦୁଇଟି ଆପେ ଆପେ ବାଜି ଉଠେ ।

ଐତିହାସିକ ପ୍ରଭାତ ମୁଖାର୍ଜୀଙ୍କ ଭାଷାରେ - 'Chakara Bisoyi the Chief of some insignificant Muthas had been ignored because of his obscure birth though he deserves to be ranked with Jagabandhu Vidyadhara and Surendra Sai.'

ବାସ୍ତବିକ ମାତୃଭୂମିର ସୁରକ୍ଷାପାଇଁ ଦୋହରା ବିଶୋଇ ଦେଇଥିବା ବଚନର ପାଳନ ନିମନ୍ତେ ଭଞ୍ଜ ରାଜ ପରିବାରକୁ ପୁଣି ଥରେ କ୍ଷମତାସୀନ କରିବା ନିମନ୍ତେ ଚକରା ଯେଉଁ ଇଂରେଜ ବିରୋଧୀ ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ କରିଥିଲେ ଉନବିଂଶ ଶତାବ୍ଦୀର ସାମରିକ ଇତିହାସରେ ଏହିପରି ସଂଗ୍ରାମର ଦୃଷ୍ଟାନ୍ତ ବିରଳ ।

ବିପ୍ଳବୀ ଚକରାଙ୍କ ଜନ୍ମ ଓ ପରିବାର ସଂପର୍କରେ ବିଭିନ୍ନ ଗବେଷକ ଭିନ୍ନ ଭିନ୍ନ ମତ ଦିଅନ୍ତି । ପ୍ରଖ୍ୟାତ ଗବେଷକ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ଅନ୍ୟ କେତେକଙ୍କ ମତରେ ଚକରା ଘୁମୁସରର ସୀମାନ୍ତ ଗ୍ରାମ ତୋରାବାଡ଼ିଠାରେ ଦୋହରା ବିଶୋଇଙ୍କ ପୁତ୍ର ଭାବେ ଜନ୍ମଗ୍ରହଣ କରିଥିଲେ । ଅବଶ୍ୟ ଦୋହରା ବିଶୋଇ ଘୁମୁସର ବିଦ୍ରୋହ ସମୟରେ ପରିବାରର ସୁରକ୍ଷା ନିମନ୍ତେ ନିଜ ଜନ୍ମସ୍ଥାନ ବିଞ୍ଜିଗିରି ପରିତ୍ୟାଗ କରି ଘନ ଅରଣ୍ୟାନୀ ପରିବେଷ୍ଟିତ ପାର୍ବତ୍ୟ ଗ୍ରାମ ତୋରାବାଡ଼ିଠାରେ ଅବସ୍ଥାନ କରୁଥିଲେ । ଏହି ସମୟରେ ଚକରାଙ୍କର ଜନ୍ମ ହୋଇଥିଲା ବୋଲି ସ୍ୱର୍ଗତଃ ପଟ୍ଟନାୟକ ମତ ଦିଅନ୍ତି । ପରିବାର ସଂପର୍କରେ ମତରେ ବିଭିନ୍ନତା ଥିଲେ ମଧ ଚକରା ଯେ ଦୋହରାଙ୍କ ଅତି ନିକଟତର ଥିଲେ ଓ ଏକ ସ୍ୱାଧୀନତା ସଂଗ୍ରାମୀ ଭାବେ ଉତ୍ସର୍ଗୀକୃତ ପରିବାର ମଧ୍ୟରେ ତାଙ୍କର ଜନ୍ମ ହୋଇଥିଲା ଏହା ନିଃସନ୍ଦେହ ।

ଶିକ୍ଷା ଓ ସଭ୍ୟତାର ଆଲୋକଠାରୁ ଦୂରରେ ଥିଲା ସେହି ଗ୍ରାମ ଯେଉଁଠାରେ ଚକରାଙ୍କ ବାଲ୍ୟ ଜୀବନ ନିଘଞ୍ଚ ଅରଣ୍ୟ ଭିତରେ କେତେକ ଆଦିବାସୀ ସଂପ୍ରଦାୟର ପିଲାଙ୍କ ମଧ୍ୟରେ କଟିଥିଲା । ତାରକା ନାମ୍ନୀ ବାଳିକା ଥିଲା ସେମାନଙ୍କ ମଧ୍ୟରେ ଅନ୍ୟତମ । ପରବର୍ତ୍ତୀ ସମୟରେ କୈଶୋର ପ୍ରାପ୍ତି ପରେ ସେ ତାରକାଙ୍କୁ ବିବାହ କରିଥିଲେ । ନିଜର ପିତାଙ୍କ ଦୁର୍ବାର ସ୍ୱପ୍ନକୁ ସାର୍ଥକ କରିବା ନିମନ୍ତେ ସେ ବରାବର ମହିୟସୀ ଜନନୀ ଓ ପତ୍ନୀ ତାରକାଙ୍କଠାରୁ ପ୍ରେରଣା ପାଉଥିଲେ । ଫଳତଃ ପରମ ଶକ୍ତିଶାଳୀ ଦୁର୍ଦ୍ଧର୍ଷ ସେନା ବିରୁଦ୍ଧରେ ଏତେଦିନ ଧରି ସେ ସଂଗ୍ରାମକୁ ଜାରି ରଖି ପାରିଥିଲେ ।

ଚକରା ବିଶୋଇଙ୍କ ଶେଷ ଜୀବନ ଆଜି ସୁଦ୍ଧା ରହସ୍ୟମୟ ହୋଇରହିଯାଇଛି । ଯଦିଓ ଐତିହାସିକ ତଥା ଗବେଷକମାନଙ୍କ ମତରେ ୧୮୫୭ ମସିହାରେ ଘଟି ଯାଇଥିବା ମହାନ୍ ଭାରତୀୟ ବିପ୍ଳବ ପୂର୍ବରୁ ଚକରାଙ୍କ ମୃତ୍ୟୁ ହୋଇଥିଲା । ତଥାପି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପରି ସେ କେଉଁ ଅବସ୍ଥାରେ କିପରି ମୃତ୍ୟୁ ବରଣ କଲେ ଅଦ୍ୟାବଧି ରହସ୍ୟମୟର ବଳୟ ମଧ୍ୟରେ ରହିଯାଇଛି । କିନ୍ତୁ ଚକରା କେବେ ହେଲେ ବ୍ରିଟିଶ୍ ବାହିନୀ ଆଗରେ ଆତ୍ମସମର୍ପଣ କରି ନଥିଲେ ଓ ବ୍ରିଟିଶ୍ ବାହିନୀ କଦାପି ତାଙ୍କୁ ଧରି ପାରିନଥିଲେ । ଭାରତବର୍ଷର ସ୍ୱାଧୀନତା ସ୍ୱପ୍ନରେ ବିଭୋର ହୋଇ ଘୁମୁସରର ମୁକ୍ତି ଆନ୍ଦୋଳନକୁ ତୀବ୍ରକରି ସେ ଯେଉଁ ଉତ୍ସର୍ଗୀକୃତ ଦେଶପ୍ରେମର ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ବାସ୍ତବିକ ଭାରତ ଇତିହାସରେ ଏକ ଅବିସ୍ମରଣୀୟ ଅଧ୍ୟାୟ ହୋଇ ରହିବ । ଚକରା ଏତେ ବଡ଼ ସଂଗ୍ରାମୀ ହେଲେ ମଧ ଦୀର୍ଘଦିନ ଧରି ଲୋକଲୋଚନକୁ ଆସି ନପାରିବାର ମୁଖ୍ୟ କାରଣ ହେଲା ଏଭଳି ଜଣେ ସଂଗ୍ରାମୀଙ୍କ ସଂଗ୍ରାମ ସର୍ବତ୍ର ବ୍ୟାପି ଯିବାର ଆଶଙ୍କା ରହିଥିଲା । ଏଣୁ ଇଂରେଜ ସରକାର ତାଙ୍କ ସଂପର୍କିତ ରେକର୍ଡ଼କୁ ଲୁକ୍କାୟିତ କରି ରଖିଥିଲେ । କାଳର ଚୌହଦୀ ମଧ୍ୟରେ ତାଙ୍କର ନଶ୍ୱର ଶରୀର ସମାଧିତ୍ୱ ଲାଭ କରିଛି, ହେଲେ ଜନ୍ମଭୂମିର ସେବାରେ ତାଙ୍କର ମହନୀୟ ତ୍ୟାଗ ଓ ଉତ୍ସର୍ଗ ଲାଗି ଭାରତୀୟ ଜନସମାଜରେ ସେ ଚିରଦିନ ଅମର ହୋଇ ରହିବେ, ଏହା ନିଃସନ୍ଦେହ ।

କଳିଙ୍ଗ ନଗର
ଭଂଜନଗର, ଗଞ୍ଜାମ

# ଦଳ ଯୋଗାଏ ବଳ

'ଦଳ ଯୋଗାଏ ବଳ' ଏଇ ନୀତିରେ ଆମେ ବିଶ୍ୱାସ କରି ୧୦ ଜଣ ଏକାଠି ହେଲୁ । ଆମ ପ୍ରତ୍ୟେକଙ୍କର ପରିବାର ଆର୍ଥିକ ମାନଦଣ୍ଡର ବହୁ ତଳେ ରହିଥିଲା ଓ ଏଭଳି ସମୟ ମଧ ଆସିଛି ଯେତେବେଳେ ଆମେ ସଂପୂର୍ଣ୍ଣ ଅସହାୟ ମଧ ହୋଇପଡ଼ିଥିଲୁ । ସେତିକିବେଳେ ଆମକୁ ନୂତନ ଆଶା ଓ କିରଣ ଯୋଗାଇଲା ସରକାରଙ୍କ ସ୍ୱୟଂ ସହାୟକ ଗୋଷ୍ଠୀଗଠନ ଓ ସହାୟତାର ନବରବି । ଏକଥା ଉତ୍ସାହର ସହ କୁହନ୍ତି ମା' ମଙ୍ଗଳା ସ୍ୱୟଂ ସହାୟକ ଗୋଷ୍ଠୀର ସଭାପତି ଯାତ୍ରା ଗୋଛାୟତ, କଣିହାଁ ବ୍ଲକ୍, ଗ୍ରାମପଞ୍ଚାୟତର ଭାଲିଆବେଢ଼ା ଗ୍ରାମରେ ଏହି ସ୍ୱୟଂ ସହାୟକ ଦଳଟି କାର୍ଯ୍ୟ କରୁଛି । ପ୍ରାଥମିକ ଅବସ୍ଥାରେ ସରକାରୀ ଋଣ ନେଇ ନ ଶୁଝିଲେ ଘର ତଲାସିର ଭୟ ପାଇଥିବା ଏହି ଦଳଟି କଣିହାଁ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଓ ପ୍ରଗତି ସହାୟକଙ୍କର କଥାରେ ଭରସା କରି ୧୬.୮.୨୦୦୧ରେ ୨ ଲକ୍ଷ ଟଙ୍କାର ଋଣ ନେଇଥିଲେ ଯେଉଁ ଥିରେ କି ଶତକଡ଼ା ୫୦ ଭାଗ ଅର୍ଥାତ୍ ୧ ଲକ୍ଷ ଟଙ୍କାର ସବ୍‌ସିଡି ରହିଥିଲା । ଯାତ୍ରା ଗୋଛାୟତ ଏବଂ ତାଙ୍କର ଅନ୍ୟାନ୍ୟ ସାଥୀମାନେ ଟେଣ୍ଟ ହାଉସଟିଏ କରିବାର ଯୋଜନା କଲେ ଯାହାକି ଆଖପାଖ ଅଞ୍ଚଳ ପାଇଁ ବେଶ୍ ଉପଲବ୍ଧ ହୋଇପାରିଲା । ଗୋଟିଏ ଗୋଟିଏ କଲ୍‌ରେ ସେମାନେ ୫ରୁ ୧୦ ହଜାର ଟଙ୍କା ଯାଏ ଅର୍ଥ ରୋଜଗାର କରିଥାନ୍ତି, ଯେଉଁଥିରେ ଲାଭର ପରିମାଣ ବେଶ୍ ଆଖିଦୃଶିଆ ବୋଲି କୁହନ୍ତି ମୁକୁଟୁ ଗୋଛାୟତ । ଅଦ୍ୟାବଧି ସଂପୂର୍ଣ୍ଣ ଋଣ ପରିଶୋଧ କରିଥିବା ଏହି ଦଳ ଆହୁରି କିଛି ଅଧିକ ଋଣ ଆଣି ବ୍ୟବସାୟକୁ ଅଧିକ ପରିବ୍ୟାପ୍ତ କରିବାକୁ ଯୋଜନା ରଖିଛନ୍ତି ।

# ଭାରତର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ ଓ ଖାନ୍-ଇ-ଦୁରାନ

ଡକ୍ଟର ଜନ୍ମେଜୟ ଚୌଧୁରୀ

**ସ**ମଗ୍ର ଓଡ଼ିଶାରେ ଖୋର୍ଦ୍ଧାର ଏକ ନିଜସ୍ୱ ଐତିହ୍ୟ ଓ ପରମ୍ପରାର ସ୍ୱତନ୍ତ୍ର ସ୍ଥାନ ଥିଲା । ଏହାର ପୃଷ୍ଠଭୂମି ହେଉଛି ଖୋର୍ଦ୍ଧା ଭୋଇ ରାଜବଂଶର ସମୃଦ୍ଧ ଇତିହାସ । ଏହାକୁ ଦୀର୍ଘ ଅଢ଼େଇଶହ ବର୍ଷ ବ୍ୟାପୀ ଓଡ଼ିଶାର ଇତିହାସ ବୋଲି କୁହାଯାଏ । ଓଡ଼ିଆ ଜାତିର ଆରାଧ୍ୟ ଦେବତା ଓ ପ୍ରାଣ ପ୍ରଦୀପ ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱ ସହିତ ସେ ଇତିହାସ ଓତଃପ୍ରୋତଃ ଭାବେ ଜଡ଼ିତ । ତେଣୁ ଖୋର୍ଦ୍ଧାର ସଂସ୍କୃତି ହିଁ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି । ଏହି ଖୋର୍ଦ୍ଧା ଏକଦା ଓଡ଼ିଶା ରାଜ୍ୟକୁ ବୁଝାଉଥିଲା । ଯେଉଁ ବୀର ପୁରୁଷମାନଙ୍କର ଗୌରବ ଗାଥାକୁ ନେଇ ଖୋର୍ଦ୍ଧା ଇତିହାସ ସମୃଦ୍ଧ, ସେମାନଙ୍କ ମଧ୍ୟରେ ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବ, ସେହି ବଂଶର ଦ୍ୱାଦଶ ରାଜା ମୁକୁନ୍ଦଦେବ ଓ ତାଙ୍କ ସେନାପତି ବୀର ଶ୍ରେଷ୍ଠ ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ ଏବଂ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ ।

ଗଜପତି ପ୍ରତାପରୁଦ୍ରଦେବଙ୍କ ସମୟରୁ ଓଡ଼ିଶାର ପତନ ଆରମ୍ଭ ହୋଇଥିଲା । କାରଣ ଏହାଙ୍କ ମୃତ୍ୟୁପରେ କୌଣସି ସୁଯୋଗ୍ୟ ବଂଶଧର ଓଡ଼ିଶାର ରାଜନୈତିକ ଦିଗ୍‌ବଳୟରେ ଆବିର୍ଭୂତ ହୋଇନଥିଲେ । ତତ୍‌ସହିତ ଗଜପତି ପ୍ରତାପରୁଦ୍ରଦେବଙ୍କ ବିଶିଷ୍ଟ ବିଶ୍ୱସ୍ତ ସେନାପତି ଗୋବିନ୍ଦ ବିଦ୍ୟାଧରଙ୍କ ବିଶ୍ୱାସଘାତକତା ମଧ୍ୟଯୁଗୀୟ ଓଡ଼ିଶାର ପତନ ପାଇଁ ମଧ୍ୟ ଦାୟୀ ଥିଲା । ପ୍ରତାପରୁଦ୍ରଦେବ ବଙ୍ଗଳାର ମୁସଲମାନ ଶାସକ ହୁସେନ୍ ଶାହାଙ୍କୁ ପରାଜିତ କରି ବଙ୍ଗ ଅଧିକାର କରିଥିଲେ ଏବଂ ଏହି ସମୟରେ ହୁସେନ୍ ଶାହା ବାଧ୍ୟ ହୋଇ ମନ୍ଦାରନ୍ ଦୁର୍ଗରେ ଆଶ୍ରୟ ନେଇଥିଲେ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଏହି ଦୁର୍ଗ ଓଡ଼ିଶା ସୈନ୍ୟମାନଙ୍କ ଦ୍ୱାରା ଅବରୋଧ ହୋଇଥିଲା । ଏହି ସମୟରେ ବିଜୟୋଲ୍ଲାସରେ ଓଡ଼ିଶା ସୈନ୍ୟମାନେ ମତ୍ତ ଥିଲାବେଳେ ପ୍ରତାପରୁଦ୍ରଦେବଙ୍କ ସେନାପତି ଗୋବିନ୍ଦ ବିଦ୍ୟାଧର ତାଙ୍କ ପ୍ରତି ବିଶ୍ୱାସଘାତକତା କରି ବଙ୍ଗଳାର ଶାସକ ହୁସେନ୍ ଶାହାଙ୍କୁ ସପକ୍ଷ କରିବାରୁ ପରବର୍ତ୍ତୀ ଯୁଦ୍ଧରେ ଗଜପତି ପ୍ରତାପରୁଦ୍ରଦେବ ହୁସେନ୍ ଶାହାଙ୍କଠାରୁ ପରାଜିତ ହୋଇ ପଳାୟନ କଲେ । ଓଡ଼ିଶାର ଏହି ଦୁର୍ଦ୍ଦିନରେ ସେ ଏହିଭଳି ଜଣେ ପ୍ରତାରକଙ୍କୁ ହତ୍ୟା ନକରି ପୁନର୍ବାର ତାହାରି ହସ୍ତରେ ଓଡ଼ିଶାର ସୈନ୍ୟବାହିନୀ ପରିଚାଳନା ଭାର ନ୍ୟସ୍ତ କରିବାରୁ ଓଡ଼ିଶାର ସୈନ୍ୟମାନଙ୍କର ମନୋବଳ ଭାଙ୍ଗି ଯାଇଥିଲା । ଏହି ବିଶ୍ୱାସଘାତକ ଗୋବିନ୍ଦ ବିଦ୍ୟାଧର ହିଁ ଗଜପତି ଶାସନର ପୂର୍ଣ୍ଣଚ୍ଛେଦ ଟାଣି ଭୋଇବଂଶ ପ୍ରତିଷ୍ଠା କରିଥିଲେ । ତତ୍‌ସହିତ ବିଜୟ ନଗରର ରାଜା କୃଷ୍ଣଦେବ ରାୟ ଓଡ଼ିଶା ଆକ୍ରମଣ କରି ପ୍ରତାପରୁଦ୍ରଦେବଙ୍କୁ ପରାଜିତ କରି ରାଜକୁମାରୀ ଜଗମୋହିନୀଙ୍କୁ ବଳପୂର୍ବକ ବିବାହ କରିଥିଲେ । ଏହାକୁ ପ୍ରତିବାଦ କରି ପ୍ରତାପରୁଦ୍ରଦେବଙ୍କ ବୀରପୁତ୍ର ବୀରଭଦ୍ର କୃଷ୍ଣଦେବ ରାୟଙ୍କ ରାଜଦରବାରରେ ଆତ୍ମହତ୍ୟା କରିଥିଲେ । ପ୍ରତାପରୁଦ୍ରଦେବଙ୍କ ପରେ ତାଙ୍କର ଅନ୍ୟ ଦୁଇପୁତ୍ର ରାମଚନ୍ଦ୍ରଦେବ ଓ ପୁରୁଷୋତ୍ତମଦେବ ଖୁବ୍ ଅଳ୍ପ ଦିନ ବ୍ୟବଧାନରେ ଓଡ଼ିଶାର ସିଂହାସନ ଅଳଙ୍କୃତ କରିଥିଲେ । ମାତ୍ର ଏମାନଙ୍କର ଦୁର୍ବଳତାର ସୁଯୋଗ ନେଇ ଭ୍ରାତୃଦ୍ୱୟଙ୍କୁ ହତ୍ୟା କରିଥିଲେ ପ୍ରତାପରୁଦ୍ରଦେବଙ୍କ ବିଶ୍ୱାସଘାତକ ସେନାପତି ଗୋବିନ୍ଦ ବିଦ୍ୟାଧର । ଫଳରେ ସୂର୍ଯ୍ୟବଂଶୀ ଗଜପତି ରାଜଦରବାର ଭଗ୍ନସ୍ତୂପ ଉପରେ ବିଶ୍ୱାସଘାତକ ଗୋବିନ୍ଦ ବିଦ୍ୟାଧରଙ୍କ ଆରମ୍ଭ ହେଲା ଭୋଇବଂଶର ହର୍ମ୍ୟ ।

ସୂର୍ଯ୍ୟବଂଶ ପରେ ୧୫୪୦ ଖ୍ରୀ:ଅ:ରୁ ୧୫୬୦ ଖ୍ରୀ:ଅ: ପର୍ଯ୍ୟନ୍ତ ଭୋଇବଂଶ ଏବଂ ୧୫୬୦ରୁ ୧୫୬୮ ଖ୍ରୀ:ଅ: ପର୍ଯ୍ୟନ୍ତ ଚାଲୁକ୍ୟ ତେଲେଙ୍ଗା ମୁକୁନ୍ଦଦେବ କଟକର ବାରବାଟୀ ଦୁର୍ଗ ଉପରେ ଓଡ଼ିଶାର ସ୍ୱାଧୀନ ଧ୍ୱଜା ଉଡ଼ାଇଥିଲେ । ମୁକୁନ୍ଦଦେବ ଜଣେ ଅତ୍ୟନ୍ତ ପରାକ୍ରମଶାଳୀ ରାଜା ଓ ବିଚକ୍ଷଣ ଶାସକ ଭାବରେ ମାତ୍ର ୮ ବର୍ଷ ମଧ୍ୟରେ ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । କିନ୍ତୁ ୧୫୬୮ ଖ୍ରୀ:ଅ:ରେ ଓଡ଼ିଶାର ଏହି ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଓଡ଼ିଶାରେ ରାଜନୈତିକ ଅରାଜକତା ଦେଖାଦେଲା । ମାଦଳାପାଞ୍ଜିରେ ଲିଖିତ ଅଛି ତେଲେଙ୍ଗା ମୁକୁନ୍ଦଦେବଙ୍କ ପରେ ଗଉଡ଼ିଆ ଗୋବିନ୍ଦଦେବ ଦୁଇ ବର୍ଷ ଶାସନ କରିଥିଲେ । ମାତ୍ର ଏହା ଐତିହାସିକମାନଙ୍କ ଦ୍ୱାରା ସମର୍ଥିତ ନୁହେଁ । ଏହାପରେ ବଙ୍ଗଳାର ଆଫ୍‌ଗାନ ସୁଲତାନ ସୁଲେମାନ କରାନୀ ଖ୍ରୀ:୧୫୬୮ରେ ଓଡ଼ିଶା ଅଧିକାର କରିଥିଲେ ହେଁ ଦେଶୀୟ ସାମନ୍ତ ରାଜଗଣ ସ୍ୱାଧୀନ ଥିଲେ । ଖ୍ରୀ:୧୫୭୨ରେ କରାନୀଙ୍କ ମୃତ୍ୟୁ

ପରେ ତାଙ୍କ ପୁତ୍ର ବାୟାଜିଦ୍ ଓ ତତ୍‌ପରେ ଦାଉଦ ଓଡ଼ିଶାର ଶାସକ ଥିଲେ । ଦିଲ୍ଲୀର ମୋଗଲ ସମ୍ରାଟ ଆକବରଙ୍କ ମନ୍ତ୍ରୀ ତୋଡ଼ରମଲ୍ଲ ଓ ସେନାପତି ମୁନିସ୍ ଖାଁଙ୍କ ହସ୍ତରେ ଖ୍ରୀ:୧୫୭୪ ଓ ୧୫୭୬ରେ ପରାସ୍ତ ଓ ମୃତ୍ୟୁବରଣ କରିଥିଲେ ଦାଉଦ । ଦିଲ୍ଲୀର ମୋଗଲ ସମ୍ରାଟ ଓ ବଙ୍ଗ ତଥା ଓଡ଼ିଶାର ଆଫଗାନ ଶାସକଙ୍କ ମଧ୍ୟରେ ଦୀର୍ଘଦିନ ଧରି କ୍ଷମତା ଯୁଦ୍ଧ ଲାଗି ରହିଥିଲା । ମୋଗଲମାନଙ୍କଠାରୁ ପରାଜୟ ବରଣ କରି ସନ୍ଧିସୂତ୍ରରେ କୁୟା ଖାଁ ଓ କୁତଲୁ ଖାଁ ଲୋହାନୀ ଆଫ୍‌ଗାନ ଶାସକଦ୍ୱୟ ଓଡ଼ିଶାର ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । ଏହିପରି ଭାବରେ ମାତ୍ର ପାଞ୍ଚଜଣ ଆଫଗାନ୍ ଶାସକ ଓଡ଼ିଶାରେ କାର୍ଯ୍ୟ କରିଥିଲେ । ଆଫଗାନମାନଙ୍କର ଏହିପରି ଅତ୍ୟାଚାରୀ ମନୋବୃତ୍ତି ଓ ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ ଫଳରେ ଓଡ଼ିଶାବାସୀଙ୍କର ସେମାନେ ଅନାଦରପାତ୍ର ହୋଇଥିଲେ । ଖ୍ରୀ:୧୫୫୬ରେ ଆକବର ଦିଲ୍ଲୀର ବାଦଶାହା ରୂପେ ସିଂହାସନ ଆରୋହଣ କରିଥିଲେ । ସେତେବେଳକୁ ମୁକୁନ୍ଦ ହରିଚନ୍ଦନ ଓଡ଼ିଶାର ଶାସକ ଥିଲେ । ଆକବର ତାଙ୍କର ବିଶ୍ୱସ୍ତ ମନ୍ତ୍ରୀ ତୋଡ଼ରମଲ୍ଲ ଓ ସେନାଧକ୍ଷ ମୁନିମ୍ ଖାଁଙ୍କ ଜରିଆରେ ଓଡ଼ିଶାରୁ ଆଫ୍‌ଗାନ ଶାସନକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲେ ହେଁ ପୁଣି ଆଫଗାନମାନେ ମୁଣ୍ଡ ଟେକିବାରୁ ୧୫୯୨ ଖ୍ରୀ:ଅ:ରେ ଆକବରଙ୍କ ସୁଦକ୍ଷ ସେନାପତି ରାଜାମାନସିଂହ ଓଡ଼ିଶା ଆକ୍ରମଣ କରି ଆଫଗାନ ଶକ୍ତିକୁ ସମ୍ପୂର୍ଣ୍ଣ ଭାବେ ଓଡ଼ିଶା ମାଟିରୁ ବିଲୋପ ଘଟାଇଥିଲେ । ମାନସିଂହ ବାରବର୍ଷ କାଳ ଓଡ଼ିଶା ଶାସନର ତତ୍ତ୍ୱାବଧାରକ ଥିଲେ । ଆଫଗାନ ଶାସକ ସୁଲେମାନ କରାନୀଙ୍କ ଶାସନ କାଳରେ ମନ୍ତ୍ରୀ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ରମାଇ ରାଉତରାୟ ମହାପାତ୍ର ମୁକୁନ୍ଦ ହରିଚନ୍ଦ୍ରଙ୍କ ମୃତ୍ୟୁ ପରେ ରାଜମାହେନ୍ଦ୍ରି ନିକଟସ୍ଥ ଗୋଟାମାଗଡ଼ର ବନ୍ଦୀଶାଳାରୁ ମୁକ୍ତ ହୋଇ ଖୋର୍ଦ୍ଧା ଅଞ୍ଚଳର ସାମନ୍ତ ରାଜାଙ୍କ ସହାୟତାରେ ପୁନର୍ବାର ସ୍ୱାଧୀନ ଭୋଇବଂଶ ପ୍ରତିଷ୍ଠା କରିଥିଲେ ଓ ତାହାର ନାମ ଦେଇଥିଲେ 'ଜଗନ୍ନାଥପୁର, କଟକ' । ମାଦଳାପାଞ୍ଜିରେ ଏପରି ବର୍ଣ୍ଣିତ ଅଛି, 'ଯଦୁବଂଶ ରାଜାଏ ଏଣେ ଉଦିତ ହୋଇଲେ । ଦନେଇ ବିଦ୍ୟାଧରଙ୍କ ପୁଅ 'ତୋଟମୀ ଗଡ଼'ରେ ଥିଲେ । ରାମଚନ୍ଦ୍ରଦେବ ରାଜା ହୋଇଲେ । ବଡ଼ ପ୍ରତାପୀ ରାଜା ହୋଇଲେ । ଖୋରଧା ନାମ ଆଦରେ ଜଗନ୍ନାଥପୁର କଟକ କରି ରହିଲେ, ବରୁଣାଇ ପର୍ବତ ତଳେ ।

ମୋଗଲ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱ କାଳର ଅନେକ ସରକାରୀ ନଥିପତ୍ରରେ ଖୁରୁଧାର ନାମ ମିଳିବା ସାଙ୍ଗକୁ ଅନେକ କାବ୍ୟ କବିତାରେ ମଧ୍ୟ ଖୁରୁଧାର ନାମ ଦୃଷ୍ଟିଗୋଚର ହୁଏ ।

'ପୃଥ୍ୱୀମଣ୍ଡଳ ସାର ଭୂମି ଓଡ଼ିଶା
ଖୋରଧା ନାମେ ନଗର
ତହିଁରେ ନୃପତି ଶ୍ରୀବୀର କେଶରୀ
ପତାପରେ ବୀରବର ହେ ।
ମୁକୁଟମଣି ଲକ୍ଷେ ରାଜାର ହେ
ଦୟାବନ୍ତ ଆରତ ଲୋକର ହେ
ତହୁଁ ଶତ୍ରୁ ମିତ୍ର ଏକାକାର ହେ ।

(ବିଚିତ୍ର ଭାରତ)

ସେ ଦିନ ମାନସିଂହ ସାହି, ଅଇଲା ଓଡ଼ିଶାକୁ ବାହି,
ସେ ଦିନେ ରାମଚନ୍ଦ୍ର ରାଜା, ଶୁଭେ ପାଳନ୍ତି ଜନପ୍ରଜା
ଖୋରଧା କଟକ ନଗର ରହିଣ ଥିଲେ ନୃପବର,
ଅଣଚାଳିଶ ଅଙ୍କ ଭୋଗ, କରି ହୋଇଲେ ମୃତ୍ୟୁ ଯୋଗ,
ତାହାଙ୍କ ନନ୍ଦନର ନାମ, ପୁରୁଷୋତ୍ତମ ନୃପ ଜାଣ,
ବଳଭଦର ଦେବ ନାମ ଖୋରଧା କଟକେ ବିଶ୍ରାମ ।

(ରସ ବିନୋଦ)

ମାଦଳାପାଞ୍ଜି ଓ ଚକଡ଼ା ପୋଥିରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବ ନବ ପ୍ରତିଷ୍ଠିତ ରାଜ୍ୟର ରାଜଧାନୀ ସ୍ୱରୂପ କଟକ ଓ ପୁରୀ ମଧ୍ୟରେ ବରୁଣେଇ ପର୍ବତର ପାଦଦେଶରେ ଖୋଲାପଲା ନିକଟସ୍ଥ ପୂର୍ବ ବର୍ଣ୍ଣିତ ଖୋରଧା ନାମକ ପଲ୍ଲୀ ଗ୍ରାମରେ ଏକ ସୁଦୃଢ଼ ଦୁର୍ଗ ପ୍ରତିଷ୍ଠା କରିଥିଲେ । କାରଣ ଅନଙ୍ଗ ଭୀମଦେବଙ୍କ ରାଜତ୍ୱ କାଳରୁ (୧୨୧୧-୧୨୩୮) ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ସର୍ଦ୍ଧ ତିନିଶତ ବର୍ଷକାଳ ଓଡ଼ିଶାର ରାଜଧାନୀ ଥିବା କଟକର ବାରବାଟୀ ଦୁର୍ଗ ମୁସଲମାନ ରାଜତ୍ୱ ଆରମ୍ଭରୁ ସେମାନଙ୍କ ରାଜଧାନୀରେ ପରିଣତ ହେଲା । ତେଣୁ ରାମଚନ୍ଦ୍ରଦେବ ବାରବାଟୀ ଉଦ୍ଧାରରେ ନିଜର ଶକ୍ତି କ୍ଷୟ ନକରି ପୁରୀ ଜିଲ୍ଲାର ଉଚ୍ଚତମ ବରୁଣେଇ ପର୍ବତର ପାଦଦେଶରେ ଲୁକ୍‌କାୟିତ ଗଭୀର ଅରଣ୍ୟାନୀ ପରିବେଷ୍ଟିତ ଓ ଚତୁର୍ଦ୍ଦିଗରେ ଅନ୍ୟାନ୍ୟ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ ଦ୍ୱାରା ସୁରକ୍ଷିତ ଖୁରୁଧା ଦୁର୍ଗ ପ୍ରତିଷ୍ଠିତ କରି ନିଜର ରଣକୌଶଳ ଓ ଦୂରଦୃଷ୍ଟିର ପରିଚୟ ଦେଇଥିଲେ । ଏ ଗଡ଼ର ଗଠନ ପ୍ରଣାଳୀ ଏପରି ଯେ ବାହ୍ୟଶତ୍ରୁ ପ୍ରବେଶ କରିବା ଅତି ଦୁଃସାଧ । ଗଡ଼ଟି ବର୍ଗାକାର ବିଶିଷ୍ଟ ବାହାରେ ଓ ଭିତରେ ପ୍ରାଚୀର ଦ୍ୱାରା ପରିବେଷ୍ଟିତ । ଏହାର ଚାରୋଟି ଦ୍ୱାର ରହିଛି, ପୂର୍ବଦ୍ୱାରଟି ହେଉଛି ପ୍ରବେଶ ପଥ । ବାହ୍ୟ ପ୍ରାଚୀର ପରେ ଗଡ଼ଖାଇ, ଗଡ଼ଖାଇ ପରେ ଭିତର ପ୍ରାଚୀର ରହିଛି । ଭିତର ପ୍ରାଚୀର ପରେ ରାଜପ୍ରାସାଦ ପ୍ରଭୃତିର ଭଗ୍ନାବଶେଷ ବର୍ତ୍ତମାନ ଦେଖାଯାଏ । ଏହି ଦୁର୍ଗର ସୁନ୍ଦର କେନାଲ ପ୍ରଣାଳୀ ସହ ଦୁର୍ଗ ମଧ୍ୟରେ ଏକ ଚତୁଃପାର୍ଶ୍ୱ ପାହାଚ ବନ୍ଧା ପୁଷ୍କରିଣୀ ଥିଲା । ଯାହାର ନାମ ରାଣୀ ପୁଷ୍କରିଣୀ । ଦୁର୍ଗରେ ମା' ହସ୍ତେଶ୍ୱରୀ ଠାକୁରାଣୀ ଥିଲେ । ପ୍ରବେଶ ପଥ ପରେ ଏକ ଶୈବ ମନ୍ଦିର ଥିଲା ଓ ଏହାର ପାର୍ଶ୍ୱରେ ଧର୍ମ ସାଗର ନାମକ ଅନ୍ୟ ଏକ ପୁଷ୍କରିଣୀ ମଧ୍ୟ ରହିଥିଲା । ଏପରି ସୁପ୍ରତିଷ୍ଠିତ ଖୋର୍ଦ୍ଧା ଦୁର୍ଗଟି ବୀର ପାଇକମାନଙ୍କର ବେଳାଭୂମି ଥିଲା ।

ସ୍ୱାଧୀନ ଖୋର୍ଦ୍ଧା ରାଜ୍ୟରେ ଭୋଇବଂଶର ରାଜାଗଣ ଖ୍ରୀ:୧୫୭୧ଠାରୁ ଦୀର୍ଘ ୨୩୬ ବର୍ଷ ରାଜୁତି କରିଥିଲେ । ମୋଗଲ ଓ ମରହଟ୍ଟା ରାଜତ୍ୱ କାଳରେ ବାହ୍ୟ ଶତ୍ରୁର ଆକ୍ରମଣ ପ୍ରତିହତ କରିବା

ନିମିତ୍ତ ସୁଦକ୍ଷ ମନ୍ତ୍ରୀ ଓ ସେନାପତି ଜନାର୍ଦ୍ଦନ ବିଦ୍ୟାଧରଙ୍କ ସୁଯୋଗ୍ୟ ପୁତ୍ର ବୀର ରାମଚନ୍ଦ୍ରଦେବଙ୍କ ଖୁର୍ଦ୍ଧା ଦୁର୍ଗ ପ୍ରମାଣିତ କରିବା ସହିତ ସ୍ୱାଧୀନ ଓଡ଼ିଆ ରାଜ୍ୟର ଏକ ବିଶିଷ୍ଟ ଅଂଶ ତଥା ଧର୍ମପୀଠ ଓ ଭୁବନେଶ୍ୱରର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳ କଳାପାହାଡ଼ର ଘୋର ଆତଙ୍କବାଦ ଓ ବିଭୀଷିକାମୟ ଆକ୍ରମଣଜନିତ ଅରାଜକତାରୁ ରକ୍ଷା କରିବା ପାଇଁ ସମର୍ଥ ହୋଇଥିଲା ।

'ତାଲୁକୀ ମୁକୁନ୍ଦଦେବ ଅନ୍ତେ ଜବନ ବରସ ୨୮ ଏକକର ପାତୀସା ହୌ ରାଜପୁତ୍ର ମାନସୀଘଂ ରାଜା 'କଟକେ ପଚ୍ଛାମେ ପରଙ୍ଗ ଖୁରୀଦାଧୀତ କଟକେ ସୁଦ୍ର ଗଜପତି ରାଜା ରାମଚନ୍ଦ୍ରଦେବ ୩୪ ଅଙ୍କ ଶାହୀ ।'

(ପ୍ରଥମ ଶ୍ରୀଜଙ୍ଗ ଶିଳାଲିପି, ୧୫୧୭ ଶତାବ୍ଦ ବା ୧୫୯୫ ଖ୍ରୀ:ଅ:)

'ଚଲୁକି ମୁକୁନ୍ଦଦେବ ଅନ୍ତେ ଜବନ ଭୋଗ ବରସ ୩୦ ଡିଲିସ୍ୱର ଏକଦର ପାତିସା ହୋଇ ରାଜପୁତ ମାନସିଂଘ ରାଜା ଆମଳ 'କଟେକ ପଛିମେ ପରଙ୍ଗ ଖୁରୀଦାଧୀତ କଟେକ ସୁଦ୍ର ରାଜା' ଗଜପ୍ତି ରାମଚନ୍ଦ୍ର ଦେବ ୩୭ ଅଙ୍କ ।'

(ଦ୍ୱିତୀୟ ଶ୍ରୀଜଙ୍ଗ ଶିଳାଲିପି, ୧୫୨୦ ଶତବ୍ଦ ବା ୧୫୯୮ ଖ୍ରୀ:ଅ:)

ଗଜପତି ରାମଚନ୍ଦ୍ରଦେବଙ୍କ ଦ୍ୱାରା ୧୫୬୦ରୁ ୧୫୭୫ ଖ୍ରୀ:ଅ: ମଧ୍ୟରେ ପ୍ରତିଷ୍ଠିତ ସୁଦୃଢ଼ ଏହି ଖୋର୍ଦ୍ଧା ଦୁର୍ଗ ପ୍ରାୟ ୧୭୦ ବର୍ଷ କାଳ ମୋଗଲମାନଙ୍କ ଘନ ଘନ ଆକ୍ରମଣର ପ୍ରତିରୋଧ କରି ଓଡ଼ିଶାର ଧର୍ମ ଓ ଜାତୀୟତା ରକ୍ଷାରେ ବିଶେଷ ସାହାଯ୍ୟ କରିଥିଲା ।

ରାଜା ରାମଚନ୍ଦ୍ରଦେବଙ୍କ ପରେ ପ୍ରଥମ ମୁକୁନ୍ଦଦେବ ଖୋର୍ଦ୍ଧା ଗଡ଼ରେ ରହି ରାଜତ୍ୱ କରୁଥିଲେ । ଐତିହାସିକ ବିବରଣୀରୁ ଜଣାଯାଏ ଯେ ଖାନ-ଇ-ଦୁରାନ ୧୬୬୧ ମସିହା ଫେବୃଆରୀ ୭ ତାରିଖରେ ମୋଗଲ ସେନା ଦ୍ୱାରା ଅଭିଜିତ ଦୁର୍ଗଗୁଡ଼ିକ ଅଧିକାର କରିବା ପାଇଁ କଟକରୁ ଯୁଦ୍ଧ ଯାତ୍ରା କଲେ । ଫେବୃଆରୀ ୧୬ ତାରିଖ ଦିନ ବରୁଣେଇ ପାହାଡ଼ର ପାଖାପାଖି କାଳୁପଡ଼ା, ମୋଟରି, କରକହି, ଖୁରଦିହ ବା ଘୋରଡିଆ ଓ ଅନ୍ୟ ତିନୋଟି ଦୁର୍ଗ ନିକଟରେ ମୋଗଲ ସେନା ପହଞ୍ଚିଗଲେ । ୧୭ ତାରିଖ ଦିନ ମୋଗଲ ସେନା ଦୁର୍ଗଗୁଡ଼ିକ ଅବରୋଧ କରିବାରୁ ଖୁରୁଧା ରାଜ୍ୟର ହଜାର ହଜାର ସଂଖ୍ୟାରେ ପାଇକ ଓ ଘୋଡ଼ାସବାର ସୈନ୍ୟ ଏକତ୍ର ହୋଇ ଭୀଷଣ ପ୍ରତିରୋଧ କଲେ । ରଣପୁର ଓ ବାଙ୍କୀର ଜମିଦାର ଦ୍ୱୟ ଅନ୍ୟ ଭୂଇଁଆ ଓ ଖଣ୍ଡାୟତମାନେ ସେମାନଙ୍କ ସହିତ ଯୋଗ ଦେଇ ତୁମୁଳ ଯୁଦ୍ଧ ଚଳାଇଥିଲେ । ମୋଗଲ ସେନା ବହୁ ବିଦ୍ରୋହୀ ସୈନ୍ୟଙ୍କୁ ହତ୍ୟା କରିଥିଲେ ଏବଂ ପାହାଡ଼ ପାଦଦେଶରେ ଖୁରୁଧା ସେନା ଆକ୍ରମଣ ଉଦ୍ଦେଶ୍ୟରେ ଖୋଳିଥିବା ଠଣାଗୁଡ଼ିକ ଅଧିକାର କରି ବାରମ୍ବାର ତୋପ ବନ୍ଧୁକରୁ ଗୋଳା ଫୁଟାଇ ସେମାନଙ୍କ ବ୍ୟୂହ ଭେଦ କରିଥିଲେ । ଖୁରୁଧା ସୈନ୍ୟମାନେ ଛୋଟ ବନ୍ଧୁକ, ଧନୁଶର, ଖଣ୍ଡା, ସାବଳ, ଦୋଆର, ଧୁକନ୍, ସିଣ୍ଟି ପ୍ରଭୃତି ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଯୁଦ୍ଧ ଚଳାଇଥିଲେ । କିନ୍ତୁ ଭୀଷଣ ଗୁଳିଗୋଳା ମାଡ଼ର ପ୍ରତିରୋଧ କରିବାକୁ ଅସମର୍ଥ ହୋଇ ନିଜ ନିଜ ପରିବାରମାନଙ୍କୁ ନେଇ ପଳାଇଗଲେ । ୧୬୬୧ ମସିହା ଫେବୃଆରୀ ୨୦ ତାରିଖରେ ଖାନ-ଇ-ଦୁରାନ ଗଭୀର ଅରଣ୍ୟ ମଧ୍ୟରେ ଅବସ୍ଥିତ ଓ ଉଚ୍ଚ ପର୍ବତ ବରୁଣେଇ ଦ୍ୱାରା ସୁରକ୍ଷିତ ରାଜା ମୁକୁନ୍ଦଦେବଙ୍କ ପୁରୁଷାନୁକ୍ରମିକ ରାଜଧାନୀ ଖୁରୁଧାଗଡ଼ ଅଧିକାର କରିବା ପାଇଁ ସୈନ୍ୟ ଚାଳନା କଲେ । ମୋଗଲ ସେନା ଖୁରୁଧାଗଡ଼ଠାରୁ ଏକ ମାଇଲ ଦୂରରେ ତମ୍ବୁ ପକାଇ ରହିଲେ । ଆକ୍ରମଣ ପୂର୍ବରୁ ରାଜା ପଳାୟନ କଲେ । ମୋଗଲ ସେନା ଅପରିମିତ ଲୁଣ୍ଠିତ ଧନରତ୍ନ ନେଇଗଲେ ଓ ରାଜଧାନୀରେ ବହୁଲୋକଙ୍କୁ ବନ୍ଦୀ କଲେ । ଗତ ୫୦ ବର୍ଷ ମଧ୍ୟରେ ଅନ୍ୟ କୌଣସି ସୁବାଦାର ଜୟ କରିପାରିନଥିବା ଏ ସମସ୍ତ ଦୁର୍ଗ ଖାନ-ଇ-ଦୁରାନ ଜୟ କରିବାକୁ ସମର୍ଥ ହେଲେ ଏବଂ ବହୁ ଲୋକଙ୍କୁ ଖଣ୍ଡା ଚୋଟରେ ହାଣିଥିଲେ । ସେ ଖୋର୍ଦ୍ଧା ଦୁର୍ଗ ଅଧିକାର କରି ମୁକୁନ୍ଦଦେବଙ୍କ କନିଷ୍ଠ ଭ୍ରାତା ଭ୍ରମରବରଙ୍କୁ ଖୁରୁଧା ସିଂହାସନରେ ବସାଇଲେ । ଏହାପରେ ବିଜୟୀ ସୁବାଦାର କେତେଦିନ ପର୍ଯ୍ୟନ୍ତ ଖୁରୁଧାରେ ବିଶ୍ରାମ ନେଇଥିଲେ ।

ମେଜର ଫ୍ଲେଞ୍ଚର ଖୁରୁଧାରେ ସରକାରୀ କଚେରୀ ନିର୍ମାଣ କରିଥିଲେ । ସେ ପାଇକମାନଙ୍କ ନିଷ୍କର ଜାଗିରୀ ସବୁ ଉଚ୍ଛେଦ କରି ଖାସମାହାଲ ସଙ୍ଗେ ସାମିଲ କଲେ ଏବଂ ସେହି ଜମି ଉପରେ ଖଜଣା ଧାର୍ଯ୍ୟ କରାଗଲା । ଏଥିରେ ପାଇକମାନେ ବିଶେଷ ଅସନ୍ତୁଷ୍ଟ ହେଲେ । ସରବରାକାରମାନଙ୍କ ଦ୍ୱାରା କଠୋର ଭାବରେ ରାଜସ୍ୱ ଆଦାୟ, ପୁଲିସ୍ କର୍ମଚାରୀମାନଙ୍କ ଅତ୍ୟାଚାର, ରାଜ୍ୟରେ ପ୍ରକୃତ ଶାସନ ଚଳାଉଥିବା ଅଧସ୍ତନ ବଙ୍ଗାଳୀ କର୍ମଚାରୀମାନଙ୍କ ଜୁଲୁମ୍, ପ୍ରାଚୀନ କାଳରୁ ଚଳି ଆସୁଥିବା କଉଡ଼ି ପରିବର୍ତ୍ତେ ଟଙ୍କାରେ ରାଜସ୍ୱ ଆଦାୟ ପ୍ରଭୃତି ଯୋଗୁଁ ପାଇକମାନଙ୍କର ଦୁଃଖ ଦୁର୍ଦ୍ଦଶାର ସୀମା ରହିଲା ନାହିଁ । ସରକାରଙ୍କ କଠୋର ଲୁଣକର ନୀତିରେ ଲବଣ ବ୍ୟବସାୟ ବନ୍ଦ ହୋଇଯିବାରୁ ଚିଲିକା ଏବଂ ସମୁଦ୍ର କୂଳବର୍ତ୍ତୀ ଯେଉଁ ପାଇକମାନେ ବର୍ଷରେ ୬ ମାସ କାଳ ଲୁଣମାରି ପେଟ ପୋଷୁଥିଲେ, ସେମାନଙ୍କ ପୈତୃକ ଜୀବିକା ଲୀନ ହେଲା । ଏହା ଫଳରେ ସେମାନଙ୍କ ଆର୍ଥିକ ଅବସ୍ଥା ମଧ୍ୟ ଶୋଚନୀୟ ହୋଇପଡ଼ିଲା । ଏହି ସମସ୍ତ କାରଣରୁ ନବପ୍ରତିଷ୍ଠିତ ଶୋଷଣମୂଳକ ଇଂରେଜ ଶାସନ ବିରୁଦ୍ଧରେ ସେମାନଙ୍କ ହୃଦୟରେ ବିଦ୍ରୋହ ବହ୍ନି କୁହୁଳୁଥିଲା । ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ଖୁରୁଧା ରାଜବଂଶର ବକ୍ସି ବା ସେନାପତି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର । ସେ ପୁରୁଷାନୁକ୍ରମେ ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗ କିଲ୍ଲାର ମାଲିକ ଥିଲେ । କର୍ଣ୍ଣେଲ ହାରକୋର୍ଟ ସେହିବାଟେ ପୁରୀକୁ ଯିବା ସମୟରେ ଜଗବନ୍ଧୁ ତାଙ୍କୁ ସାହାଯ୍ୟ ଦେଇଥିଲେ । ଓଡ଼ିଆ ଅଧିକାର ପରେ ୧୮୦୪ରେ ରୋଡ଼ଙ୍ଗ କିଲ୍ଲା ନିମନ୍ତେ ବକ୍ସି ଜଗବନ୍ଧୁଙ୍କ ସଙ୍ଗେ ଇଂରେଜ ସରକାରଙ୍କର ବଡ଼ନାବସ୍ତ

ମଧ୍ୟ ହୋଇଥିଲା । କିନ୍ତୁ କଲିକତା ନିକଟବର୍ତ୍ତୀ ପାଇକପଡ଼ାବାସୀ କଲେକ୍ଟରଙ୍କ ବଙ୍ଗାଳୀ ଦେୱାନ କୃଷ୍ଣଚନ୍ଦ୍ର ସିଂହଙ୍କ ଚକ୍ରାନ୍ତରେ ସେ ପୈତୃକ ରୋଡ଼ଙ୍ଗ କିଲ୍ଲା ଅଧିକାରରୁ ବଞ୍ଚିତ ହେଲେ । ବକ୍ସି ସରକାରଙ୍କଠାରେ ବହୁ ଆପତ୍ତି ଅଭିଯୋଗ କଲେ ମଧ୍ୟ ନ୍ୟାୟ ବିଚାର ପାଇଲେ ନାହିଁ । ସରକାରଙ୍କର ଅନ୍ୟାୟ ବିଚାର ଯୋଗୁଁ ଖୁରୁଧା ଗଜପତି ରାଜାଙ୍କ ପୁରୁଷାନୁକ୍ରମିକ ବକ୍ସି ପଥର ଭିକ୍ଷୁକ ହେବାରୁ ସେ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ସେ ବିଦ୍ରୋହୀ ପାଇକମାନଙ୍କ ସାହାଯ୍ୟରେ ରାଜା ମୁକୁନ୍ଦଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇବା ସମ୍ବାଦ ସର୍ବତ୍ର ପ୍ରଚାରିତ ହେଲା । ଏହା ପରେ ପାଇକମାନେ ପିପିଲିଠାରେ କମ୍ପାନୀର ସିପାହୀମାନଙ୍କୁ ହଟାଇ ଦେଲେ । ପୁରୀରେ ଏହି ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ ହେଲା । ବିଦ୍ରୋହୀ ପାଇକମାନଙ୍କ ସହିତ ରାଜଭକ୍ତ ସେବକ, ମନ୍ଦିର କର୍ମଚାରୀ ଓ ସହରବାସୀ ସହଯୋଗ କରିବାରୁ ଇଂରେଜ ସୈନ୍ୟ ଓ କର୍ମଚାରୀ ପୁରୀ ପରିତ୍ୟାଗ କରି କଟକ ଯାତ୍ରା କଲେ । ଏଠାରେ ବିଦ୍ରୋହ ଚରମସୀମା ସ୍ପର୍ଶ କରିଥିଲା । କ୍ୟାପ୍‌ଟେନ୍ ଲେ ଫେରବି ନାମକ ଦୁର୍ଦ୍ଦାନ୍ତ ଇଂରେଜ ସେନାପତି ଖୁରୁଧା ଅଧିକାର କରି ପାଇକମାନଙ୍କ ଶକ୍ତି ଧ୍ୱଂସ କଲେ । ଏହି ଦିନ ସେ ପୁରୀରେ ପହଞ୍ଚି ବିଦ୍ରୋହୀମାନଙ୍କୁ ଦମନ କରି ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀ କଲେ । ଇତି ମଧ୍ୟରେ ମେଜର ହାମିଲଟନ ପୁରୀରେ ପହଞ୍ଚି ଏହା ଦଖଲ କଲେ । କ୍ୟାପ୍‌ଟେନ ଲେ ଫେରବି ଖୋର୍ଦ୍ଧା ରାଜାଙ୍କୁ ନେଇ କଟକ ଗଲାବେଳେ ବାଟରେ ରାଜଭକ୍ତ ପାଇକମାନେ ତାଙ୍କୁ ଉଦ୍ଧାର କରିବା ପାଇଁ ଆକ୍ରମଣ ଚଳାଇଥିଲେ । କିନ୍ତୁ କ୍ୟାପ୍‌ଟେନ ଆର୍ମଷ୍ଟ୍ରଙ୍ଗ ବିଦ୍ରୋହୀ ପାଇକମାନଙ୍କୁ ସମ୍ପୂର୍ଣ୍ଣ ଦମନ କରିଥିଲେ । ଖୋର୍ଦ୍ଧା ରାଜା ବନ୍ଦୀ ହେବା ପରେ ବିଦ୍ରୋହାଗ୍ନି କ୍ରମଶଃ ଶିଥିଳ ହୋଇଥିଲା । ଖ୍ରୀ:ଅ:୧୮୦୪ ମସିହା ଡିସେମ୍ବର ୫ ତାରିଖରେ ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ ବିଦ୍ରୋହୀ ବୋଲି ଘୋଷିତ ହେଲେ ଏବଂ ତାଙ୍କୁ ଖୋର୍ଦ୍ଧା ରାଜଗାଦି ପରିତ୍ୟାଗ ପାଇଁ ଆଦେଶ ଦିଆଗଲା । ଏହାପରେ ଖୋର୍ଦ୍ଧା ଦୁର୍ଗ ଆକ୍ରମଣ ପାଇଁ ୭୦୦୦ ଇଂରେଜ ସୈନ୍ୟ ମୁକୁନ୍ଦ ପ୍ରସାଦ ଗ୍ରାମ ନିକଟରେ ଛାଉଣୀ ପକାଇଲେ । ଖୋର୍ଦ୍ଧା ରାଜ୍ୟରେ ଇଂରେଜ ଆଧିପତ୍ୟ ପ୍ରତିଷ୍ଠାର ବିରୋଧୀ ଜୟୀରାଜଗୁରୁ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚଳାଇ ଶେଷରେ ପରାଜିତ ଓ ବନ୍ଦୀ ହେଲେ । ତାଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇ ଇଂରେଜମାନଙ୍କ ବଶ୍ୟତା ସ୍ୱୀକାର ପାଇଁ ବାଧ୍ୟ କରାଗଲା । ମାତ୍ର ସ୍ୱାଧୀନଚେତା ଜୟୀ ରାଜଗୁରୁଙ୍କ ଉପରେ ତାହାର କୌଣସି ପ୍ରଭାବ ପଡ଼ିଲା ନାହିଁ । ଦୁର୍ବଳ ରାଜା ମୁକୁନ୍ଦ ଦେବ ଶେଷରେ ବନ୍ଦୀ ଗୃହରେ ଇଂରେଜ ଭୟରେ ନିଜର ମତ ପରିବର୍ତ୍ତନ କରି ଜୟୀ ରାଜଗୁରୁଙ୍କ ଉପରେ ସମସ୍ତ ଦୋଷ ଢାଳି ଦେଇଥିଲେ ଓ ରାଜା ଇଂରେଜମାନଙ୍କ ସମ୍ମୁଖରେ କ୍ଷମାଭିକ୍ଷା କରିବାରୁ ତାଙ୍କୁ ବନ୍ଦୀ ମୁକ୍ତ କରାଯାଇ ଖୋର୍ଦ୍ଧାରେ ନରହି ପୁରୀରେ ରହିବା ପାଇଁ ଇଂରେଜ ସରକାର ନିର୍ଦ୍ଦେଶ ଦେଲେ । ରାଜାଙ୍କର ଏହି ମତକୁ ଇଂରେଜମାନେ ଗ୍ରହଣ କରି ଜୟୀ ରାଜଗୁରୁଙ୍କୁ ଦୋଷୀ ମନେକରି ତାଙ୍କୁ ମେଦୀନିପୁରର ବାଘିତୋଟାକୁ ନେଇ ସେଠାରେ ତାଙ୍କର ବିଚାର କରିଥିଲେ ଓ ଏହି ବିଚାରରେ ତାଙ୍କୁ ମୃତ୍ୟୁଦଣ୍ଡରେ ସାବ୍ୟସ୍ତ କରାଯାଇ ୧୮୦୫ ମସିହାରେ ଅତି ଅମାନୁଷିକ ଭାବରେ ଫାଶି ଦିଆଗଲା । ଏଥିସହିତ ଖଣ୍ଡବିଖଣ୍ଡିତ ହୋଇଗଲା ଉତ୍କଳର ସ୍ୱାଧୀନତା, ଉନ୍ନତ ସଂସ୍କୃତି, ଐତିହ୍ୟ, ପରମ୍ପରା, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ । ସମଗ୍ର ଭାରତବର୍ଷର ପ୍ରଥମ ଅମର ଶହୀଦ ଜୟୀ ରାଜଗୁରୁଙ୍କର ଟୋପା ଟୋପା ରକ୍ତ ବିନ୍ଦୁ ଯେତେବେଳେ ମେଦୀନିପୁର ଭୂମିକୁ ରକ୍ତବର୍ଣ୍ଣ କରିଦେଲା, ସେତେବେଳେ କ୍ରନ୍ଦନ କରି ଉଠିଲା ଇଂରେଜ ଶାସନାଧୀନ କୋଟି କୋଟି ଭାରତବାସୀଙ୍କ ପ୍ରାଣ । ୧୮୦୪ ମସିହା ଡିସେମ୍ବର ମାସ ଶେଷ ସପ୍ତାହରୁ ଇଂରେଜ ବାହିନୀ ପକ୍ଷରୁ ଘନ ଘନ ତୋପ କମଣର ପ୍ରଚଣ୍ଡ ଆକ୍ରମଣକୁ ଦୀର୍ଘଦିନ ଧରି ପ୍ରତିହତ କରି ଆସିଥିବା ଦୁର୍ଦ୍ଧର୍ଷବୀର ଓଡ଼ିଆ ପାଇକ ବାହିନୀର ପ୍ରାଣମୂର୍ଚ୍ଛା । ଶେଷ ସଂଗ୍ରାମ ଉପରେ କ୍ରୁର ଯମଯାତନାର ଯବନିକା ପାତ କରି ଦୁର୍ଗମ ଦୁର୍ଭେଦ୍ୟ ଖୋର୍ଦ୍ଧା ଦୁର୍ଗର ସ୍ୱାଧୀନତା ସୂର୍ଯ୍ୟଙ୍କୁ ଚାରଦିନ ପାଇଁ ଗ୍ରାସ କରି ଦେଇଥିଲା ସେହି କାଳମୂହୁର୍ତ୍ତ । ଏହି ଦୁର୍ଗ ଉପରକୁ କ୍ରମାଗତ ଗୁଳିଗୋଳା ବର୍ଷଣ ସତ୍ତ୍ୱେ ଶକ୍ତିଶାଳୀ ଫିରିଙ୍ଗି ଫଉଜ ସେହି ଦୁର୍ଭେଦ୍ୟ ଦୁର୍ଗକୁ ଭେଦ କରିପାରିନଥିଲା କିମ୍ବା ଦୁର୍ଗମ ବରୁଣେଇ ପାହାଡ଼ର ସୁରକ୍ଷା ବଳୟ ଭେଦକରି ଦୁର୍ଗଙ୍କୁ ଅବରୋଧ କରିବା ସକ୍ଷମ ହୋଇନଥିଲା । ମାତ୍ର ପ୍ରତ୍ୟେକ ମୁହୂର୍ତ୍ତର ତୋପ ନାଦ, ଗୁଳିଗୋଳା ବର୍ଷଣ ଯୋଗୁଁ ଗଡ଼ର ପତନ ସମ୍ଭବ ମନେ କରି ଗଡ଼ ମଧ୍ୟରେ ଥିବା ସେନାପତି, ପ୍ରହରୀ, ପାଇକ ଯୋଦ୍ଧାମାନେ ପଳାୟନ କଲେ ଅନ୍ୟତ୍ର ଦିଗକୁ । ପରେ ଏହି ଦୁର୍ଗମ ଦୁର୍ଭେଦ୍ୟ ଦୁର୍ଗ ଧ୍ୱଂସ ବିଧ୍ୱସ୍ତ ହେଲା ଖୋର୍ଦ୍ଧା ଦୁର୍ଗର ଯବନିକା ପଡ଼ିଲା ସତ ମାତ୍ର ଖୋର୍ଦ୍ଧାର ପାଇକମାନେ ଦେଶ ଓ ଜାତିର ସଂହତିକୁ ଉଜ୍ଜୀବିତ କରିବା ପାଇଁ ପଛଘୁଞ୍ଚା ନଦେଇ ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ଦୁର୍ଗରେ ରହି ବିଦେଶୀ କବଳରୁ ମୁକ୍ତି ପାଇଁ ବଳିଷ୍ଠ ପଦକ୍ଷେପମାନ ନେଇଥିଲେ । ମୋଗଲ ଓ ମରହଟ୍ଟା ଶକ୍ତିକୁ ବାରମ୍ବାର ପ୍ରତିରୋଧ କରୁଥିବା ଖୋର୍ଦ୍ଧା ଦୁର୍ଗର ପତନ ପରେ ଖୋର୍ଦ୍ଧା ପାଇକର ଗୌରବ ରବି ଅସ୍ତମିତ ହେଲା । ଏହି ସୁଦୃଢ଼ ଖୋର୍ଦ୍ଧା ଦୁର୍ଗ ପ୍ରାୟ ୧୭୦ ବର୍ଷକାଳ ମୋଗଲମାନଙ୍କ ଘନ ଆକ୍ରମଣର ପ୍ରତିରୋଧ କରି ଓଡ଼ିଶାର ଧର୍ମ ଓ ଜାତୀୟତା ରକ୍ଷା ଦିଗରେ ବିଶେଷ ସାହାଯ୍ୟ କରିଥିଲା । ମାତ୍ର ଇଂରେଜ ଆକ୍ରମଣ ସମୟରେ ଧ୍ୱସ୍ତବିଧ୍ୱସ୍ତ ଉକ୍ତ ଦୁର୍ଗର ଧ୍ୱଂସାବଶେଷ ଦର୍ଶନରେ ଜାତୀୟ ବୀର ପାଇକମାନଙ୍କର ସ୍ମୃତି ଅଦ୍ୟାବଧି ବାଚରିତ ହୁଏ ।

ଜୟୀ ରାଜଗୁରୁଙ୍କ ଫାଶୀ ପରେ ଇଂରେଜ ସରକାର ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀରୁ ମୁକ୍ତ କରି ଦେଇଥିଲେ । ଏହାପରେ ଚାଲିଥିଲା ଇଂରେଜମାନଙ୍କ ଓଡ଼ିଶା ପ୍ରତି ଅକଥନୀୟ ଅନ୍ୟାୟ ଓ ଅତ୍ୟାଚାରର ବିଭୀଷିକା । ସେନାପତି ବକ୍ସି ଜଗବନ୍ଧୁ ଏଥିରେ ଅସହ୍ୟ ହୋଇ ୧୮୧୬ ମସିହାରେ ପୁରୀ ପୁରୁଣା ଶ୍ରୀନଅରରେ ଗଜପତିଙ୍କୁ ସାକ୍ଷାତ କରି ବିଦ୍ରୋହରେ ଯୋଗ ଦେବା ପାଇଁ ରାଜାଙ୍କର ଅନିଚ୍ଛା ସତ୍ତ୍ୱେ ଅନୁରୋଧ

କରିଥିଲେ । ଉତ୍କଳ ସେନାପତି ବଂଶର ଶେଷ ରଶ୍ମି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୬ ମସିହାରେ ପାଇକ ବିଦ୍ରୋହର ବହ୍ନି ଜଳି ଉଠିଲା । ଖୋର୍ଦ୍ଧାରେ ଲଢୁଆଳ ପାଇକମାନେ ୧୫୬୮ ମସିହାରୁ ୧୮୧୬ ମସିହା ପର୍ଯ୍ୟନ୍ତ ମୁସଲମାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କର ଅନ୍ୟାୟ ଓ ଅତ୍ୟାଚାରରେ ଯୁଗ ଯୁଗ ଧରି ଶିକାର ହୋଇଥିବାରୁ ତା'ର ପ୍ରତିବାଦ ସ୍ୱରୂପ ବକ୍ସିଙ୍କ ନେତୃତ୍ୱକୁ ବିନାଦ୍ୱିଧାରେ ଗ୍ରହଣ କରିନେଇଥିଲେ । ଏହି ବିଦ୍ରୋହ ସମସ୍ତ ପୁରୀ ଜିଲ୍ଲା, ନୟାଗଡ଼, ଦଶପଲ୍ଲା, ରଣପୁର, ବୌଦ୍ଧ, ଘୁମୁସର ଓ ଆଠମଲ୍ଲିକ ଇତ୍ୟାଦି ସ୍ଥାନକୁ ବ୍ୟାପିଥିଲା । ଗଞ୍ଜାମଠାରେ ଶ୍ରୀକର ଭଞ୍ଜ ଓ ବକ୍ସି ମିଶି ୨୦୦ ବର୍ଗ ମାଇଲ ଅଞ୍ଚଳରେ ଅଶାନ୍ତି ସୃଷ୍ଟି କରିଥିଲେ ।

୧୮୧୬ ମସିହା ମାର୍ଚ୍ଚ ମାସରେ ଘୁମୁସର ଅଞ୍ଚଳରୁ ୪୦୦ କନ୍ଧ ଖୁରୁଧା ରାଜ୍ୟରେ ପଶି ବିଦ୍ରୋହ କଲେ । ବକ୍ସିଙ୍କ ନେତୃତ୍ୱରେ ଶହ ଶହ ପାଇକ ଏହି ବିଦ୍ରୋହରେ ଯୋଗ ଦେଲେ । ପ୍ରଥମ ବିଦ୍ରୋହୀମାନେ ବାଣପୁରରେ ପୁଲିସ୍ଥାନା ଓ ସରକାରୀ କଚେରୀ ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଏହାପରେ ସେମାନେ ଖୋର୍ଦ୍ଧା ଆକ୍ରମଣ କରି ସରକାରୀ କଚେରୀ ଓ ଘରମାନ ଭାଙ୍ଗି ଦେଲେ ଏବଂ ଖଜଣାଖାନା ଲୁଣ୍ଠନ କଲେ । ଏହି ସମୟରେ ଅତ୍ୟାଚାରୀ ତହସିଲଦାର ଚରଣ ପଟ୍ଟନାୟକ ବିଦ୍ରୋହୀମାନଙ୍କ ଦ୍ୱାରା ନିହତ ହେଲେ । କମ୍ପାନୀର ସିପାହୀମାନେ ଗଙ୍ଗପଡ଼ାଠାରେ ପରାସ୍ତ ହେଲେ । ମାଜିଷ୍ଟ୍ରେଟଙ୍କ ଦ୍ୱାରା ଚାଳିତ ସିପାହୀମାନେ ପରାସ୍ତ ହୋଇ ପ୍ରାଣ ବିକଳରେ କଟକ ପଳାଇଗଲେ । ଅବସ୍ଥା କ୍ରମଶଃ ଗୁରୁତର ହେଲା । ଏ ସମୟରେ ବକ୍ସି ଜାଣି ଜାଣି ଲୋକମାନଙ୍କୁ ଉତ୍ତେଜିତ କରିବା ପାଇଁ ଇଂରେଜମାନଙ୍କ ବିରୋଧରେ ରାଜାଙ୍କ ନାମକୁ ଯୋଡ଼ି ଦେଲେ । ରାଜା ବାଧ ହୋଇ ବକ୍ସିଙ୍କ କଥାରୁ ବହିର୍ଭୂତ ହୋଇପାରିଲେ ନାହିଁ । ସରକାରୀ କଟକଣା ସତ୍ତ୍ୱେ ଏହାକୁ ଅମାନ୍ୟ କରି ରାଜା ସପରିବାର ଖୋର୍ଦ୍ଧାକୁ ଆଗମନ କଲେ ଓ ପୁନର୍ବାର ସିଂହାସନ ଆରୋହଣ ପାଇଁ ରାଜି ହେଲେ ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । କାରଣ ୧୮୧୬ ଏପ୍ରିଲ ୧୮ ତାରିଖରେ ଦୋକନ୍ଦାଠାରେ କ୍ୟାପ୍ଟେନ୍ ଲି ଫାବ୍ରେ ସହସ୍ରାଧିକ ପାଇକମାନଙ୍କ ଉପରେ ଆକ୍ରମଣ କରିବାରୁ ସେମାନେ ବିଚଳିତ ହୋଇ ପଡ଼ିଲେ । ଇଂରେଜ ସେନାପତି ୫୫୦ ସଶସ୍ତ୍ର ବାହିନୀ ଧରି ପୁରୀ ଆସୁଛନ୍ତି ଜାଣି ବକ୍ସି ହତୋତ୍ସାହ ହୋଇ ହଠାତ୍ ପୁରୀ ତ୍ୟାଗ କଲେ । ଆତ୍ମରକ୍ଷା ପାଇଁ ରାଜା ନୂତନ ନୀତି ଧାରଣ କରି ୧୮୧୬ ମସିହା ଜୁଲାଇ ୩ ତାରିଖରେ ସେ ଓ ବକ୍ସି ବାଣପୁର ଆଡ଼େ ଓ ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ କଣାସ ଆଡ଼େ ଲୁଚିକରି ପଳାଇଥିଲେ । ମାତ୍ର ଲି ଫାବ୍ରେ ରାଜାଙ୍କୁ ନଜର ବନ୍ଦୀ କଲେ ଓ ଭାରତର ବଡ଼ଲାଟଙ୍କ ନିର୍ଦ୍ଦେଶକ୍ରମେ ରାଜାଙ୍କୁ ପୁନଃ ବାରବାଟୀ ଦୁର୍ଗରେ ବନ୍ଦୀ କଲେ । ଉତ୍କଳର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଖୋର୍ଦ୍ଧା ଦୁର୍ଗର ଅଖଣ୍ଡ ସ୍ୱାଧୀନତାକୁ ରକ୍ଷା କରିବାକୁ ଯାଇ ସେଠାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଶେଷରେ ସରକାର ନିଜର ଘୋଷଣାନାମାନୁଯାୟୀ ବକ୍ସି ଓ ଦେଓ୍ୱାନଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ ବକ୍ସିଙ୍କୁ କଟକରେ ଥଇଥାନ କରି ମାସିକ ୨୦୦ ଟଙ୍କା ବୃତ୍ତି ପ୍ରଦାନ କରିଥିଲେ । ଏହି ମହାନ୍ ଜାତୀୟବୀର ଇତିହାସ ପୁରୁଷ କଟକରେ ନଜରବନ୍ଦୀରେ ରହି ୧୮୨୯ ମସିହା ଜାନୁଆରୀ ୨୦ ତାରିଖ ଶନିବାର ଦିନ ପ୍ରାଣ ତ୍ୟାଗ କରିଥିଲେ ।

ବକ୍ସିଙ୍କ ମୃତ୍ୟୁପରେ ଖୋର୍ଦ୍ଧା ରାଜ୍ୟର ଗୌରବ ରବି ଚିରକାଳ ପାଇଁ ଅସ୍ତମିତ ହୋଇଥିଲା । ସେ ସମଗ୍ର ଭାରତବର୍ଷର ଜଣେ ଶ୍ରେଷ୍ଠ ନରପତି, ଶ୍ରେଷ୍ଠ ବୀର ଶହୀଦ ରୂପେ ଚିରଦିନ ପାଇଁ ଅମର ହୋଇ ରହିଲେ । ଖୋର୍ଦ୍ଧା ଭୂମିକୁ ଅବହେଳିତ, ନିଷ୍ପେସିତ ଓ ଶୋଷଣରୁ ରକ୍ଷା କରିବାକୁ ଯାଇ ସେ ନିଜର ଜୀବନ ଉତ୍ସର୍ଗ କରି ଯେଉଁ ଉଜ୍ଜ୍ୱଳମୟୀ ଗୌରବର ପ୍ରଦର୍ଶନ କରିଛନ୍ତି ତାହା ଯୁଗ ଯୁଗ ଧରି ଲୋକମୁଖରେ ପ୍ରଚାରିତ ହେଉଥିବ ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା



ନୟାଗଡ଼ ଜିଲ୍ଲାର ଚାନ୍ଦପୁର ବସନ୍ତ ମଂଜରୀ ଟି.ବି. ହସ୍‌ପିଟାଲଠାରେ ସମବାୟ ମନ୍ତ୍ରୀ ଶ୍ରୀମତୀ ସୁରମା ପାଢ଼ୀ ରୋଗୀମାନଙ୍କୁ ଫଳ ବଣ୍ଟନ କରୁଛନ୍ତି ।



# ସେଦିନର ସଂଗ୍ରାମୀ କ୍ଷେତ୍ରମୋହନ

ଗୁରୁକଲ୍ୟାଣ ମହାପାତ୍ର

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ଉଲ୍ଲେଖନୀୟ ଭୂମିକାକୁ ଇତିହାସ କେବେହେଲେ ଅସ୍ୱୀକାର କରିପାରିବ ନାହିଁ । ଓଡ଼ିଶାର ଯେଉଁ କେତୋଟି ଅବିଭକ୍ତ ଉପକୂଳ ଜିଲ୍ଲାରୁ ଅଧିକ ସଂଖ୍ୟାରେ ସ୍ୱାଧୀନତା ସଂଗ୍ରାମୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ମୃତ୍ୟୁବରଣ କରିଥିଲେ କିମ୍ବା ଅକଥନୀୟ ନିର୍ଯ୍ୟାତନାର ଶରବ୍ୟ ହୋଇ କାରାବରଣ କରିଥିଲେ, ସେହି ଜିଲ୍ଲାଗୁଡ଼ିକ ହେଉଛି କଟକ, ପୁରୀ ଓ ବାଲେଶ୍ୱର । ସେହି ଅବିଭକ୍ତ କଟକ ଜିଲ୍ଲାର ଜଗତସିଂହପୁର (ଏବେ ଏହା ଏକ ଜିଲ୍ଲା) ଅନ୍ତର୍ଗତ ବାଲିକୁଦାସ୍ଥିତ ପୂରଣ ଗ୍ରାମରେ ୧୯୦୮ ମସିହା ଅପ୍ରେଲ ମାସରେ ଜନ୍ମଗ୍ରହଣ କରିଥିଲେ କ୍ଷେତ୍ରମୋହନ - ପିତା ଶ୍ରୀନାଥ କାନୁନଗୋ ଓ ମାତା ମୋତିଦେଈଙ୍କ କୋଳମଣ୍ଡନ କରି ।

ସେଦିନର ସେହି ଶିଶୁ କ୍ଷେତ୍ରମୋହନ ବଡ଼ ହୋଇ ଚବିଶ ବର୍ଷ ବୟସ ଅତିକ୍ରମ କରିବା ବେଳକୁ ପାଠପଢ଼ା ସମାପ୍ତ ହୋଇଥାଏ । ତେଣୁ କଟକର ବନ୍ଦୋବସ୍ତ କାର୍ଯ୍ୟାଳୟରେ ପ୍ରଥମେ ସେ ସରକାରୀ ଚାକିରିରେ ଯୋଗ ଦେଇଥିଲେ । ଅଳ୍ପ ବୟସରୁ ଅଚିରେ ସରକାରୀ ଚାକିରିରେ ପ୍ରବେଶ କରିଥିବା କ୍ଷେତ୍ରମୋହନ ଚାହିଁଥିଲେ ଧନ ଉପାର୍ଜନ ସହିତ ସାମାଜିକ ପ୍ରତିଷ୍ଠା ଲାଭ କରିପାରିଥାନ୍ତେ । କିନ୍ତୁ ସରକାରୀ ଚାକିରିର ମୋହ ତଥା ପାରିବାରିକ ମାୟାମମତାକୁ ଛିନ୍ନ କରି ସେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ସତ୍ୟାଗ୍ରହ ଆନ୍ଦୋଳନ ଭିତରକୁ ଲମ୍ଫ ପ୍ରଦାନ କରିଥିଲେ । ଏ କଥା କେହି ତାଙ୍କଠାରୁ ଆଶା କରୁନଥିବା ବେଳେ ସେ ଚାକିରି ଛାଡ଼ିବା ସହିତ କଟକରେ ରହୁଥିବା ସ୍ଥାନ ମଧ୍ୟ ଛାଡ଼ି ପଳାଇଥିଲେ । ଏହାପରେ ସେ ଯାଇ ଭେଟିଲେ ଓଡ଼ିଶାର ବିଶିଷ୍ଟ ଗାନ୍ଧିବାଦୀ ଓ ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀଙ୍କୁ ତାଙ୍କର କଟକର ଗଣେଶଘାଟସ୍ଥିତ ବାସଭବନରେ । ସେହି ବାସଭବନ ସଂଲଗ୍ନ ଆଶ୍ରମରେ ଯାଇ ସେ ରହିଲେ - ଦେଶକୁ ସ୍ୱାଧୀନ କରିବାର ପଣ ନେଇ । ଖବର ପାଇ ପିତୃବ୍ୟ ପଂକଜ ଚରଣ କାନୁନଗୋ ଆଶ୍ରମରେ ପହଞ୍ଚିଲେ । କ୍ଷେତ୍ରମୋହନ ପୁନର୍ବାର ଚାକିରି କ୍ଷେତ୍ରକୁ ଫେରିଯିବା ପାଇଁ ସେ ତାଙ୍କୁ ଯେତେ ପ୍ରବର୍ତ୍ତାଇ ଥିଲେ ସୁଦ୍ଧା ତାହା ସଫଳ ହୋଇ ନଥିଲା । ଅଗତ୍ୟା ଦେଶକାମ ପାଇଁ ଆଶୀର୍ବାଦ କରି ପଙ୍କଜ ବାବୁ ସେଠାରୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଗୋପବନ୍ଧୁ ଚୌଧୁରୀଙ୍କ ଆଶ୍ରମରେ ପହଞ୍ଚିବା ପରଦିନ ହିଁ କ୍ଷେତ୍ରମୋହନଙ୍କ ଜୀବନରେ ଥିଲା ସ୍ୱାଧୀନତା ସଂଗ୍ରାମର ପ୍ରଥମ ଦିବସ । କାରଣ ଗୋପବନ୍ଧୁଙ୍କ ଅନୁଜ ନବକୃଷ୍ଣ ଚୌଧୁରୀ (ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ) ଓ ତାଙ୍କର ସହଧର୍ମିଣୀ ମାଳତୀ ଚୌଧୁରୀଙ୍କ ନିର୍ଦ୍ଦେଶକ୍ରମେ ଅନ୍ୟ ସଂଗ୍ରାମୀମାନଙ୍କ ସହିତ ସେ କୁଜଙ୍ଗଠାରେ ହେବାକୁ ଥିବା ଲବଣ ସତ୍ୟାଗ୍ରହରେ ପ୍ରଥମେ ଯୋଗ ଦେଇଥିଲେ । ଏଥିପାଇଁ ତାଙ୍କୁ ଚଟୁଆ କ୍ୟାମ୍ପରେ ରହିବାକୁ ପଡ଼ିଥିଲା । ୧୯୩୦ରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଦେଶବ୍ୟାପୀ ଅହିଂସା ଉପାୟରେ ଯେଉଁ ଲୁଣମରା ଆନ୍ଦୋଳନ ଚାଲିଥାଏ, ତାହାର ପ୍ରଭାବ ଓଡ଼ିଶାରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ଦାରଦିଆଠାରେ ମଧ୍ୟ ଚାଲିଲା ଅହିଂସା ଉପାୟରେ ଲୁଣମରା ଆନ୍ଦୋଳନ । ପୁଲିସ୍‌ର ଅତ୍ୟାଚାର ଓ ନିର୍ଯ୍ୟାତନାରେ କ୍ଷେତ୍ରମୋହନ ଅତିଷ୍ଠ ହୋଇ ପଡ଼ିଥିଲେ ହେଁ ମୁଣ୍ଡପାତି ସେସବୁକୁ ସହି ଯାଇଥିଲେ । ଦାରଦିଆ ସମେତ କାଳିଆଘାଟ, ପାରାଦୀପଠାରେ ଚାଲିଥିବା ଲୁଣମରା ଆନ୍ଦୋଳନର କାର୍ଯ୍ୟ ମଧ୍ୟ କ୍ଷେତ୍ରମୋହନଙ୍କୁ ସମ୍ଭାଳିବାକୁ ପଡ଼ିଥିଲା । ପ୍ରାୟ ପକ୍ଷେ କାଳ ଏହି ଲୁଣମରା ଅଭିଯାନ ଚାଲିଥିଲେ ହେଁ ବର୍ଷାଋତୁର ଆଗମନ ହେତୁ ଅଗତ୍ୟା ସେ କାର୍ଯ୍ୟକୁ ସ୍ଥଗିତ ରଖାଯାଇଥିଲା । ମାତ୍ର ସେହି ଲୁଣମରା କାର୍ଯ୍ୟ ସମ୍ଭାଳିବା ସମୟରେ ତତ୍‌କାଳୀନ ବ୍ରିଟିଶ୍ ପୁଲିସ୍ କ୍ଷେତ୍ରମୋହନଙ୍କୁ ଅମାନୁଷିକ ଭାବେ ମାଡ଼ ମାରିଥିଲେ । ଫଳରେ ତାଙ୍କର ହାତ ଓ ମୁଣ୍ଡରେ ପ୍ରଚଣ୍ଡ ଆଘାତ ଲାଗିଥିଲା । ଏହାସତ୍ତ୍ୱେ ସେ ଦବି ନଯାଇ ଲୁଣମରା ଆନ୍ଦୋଳନକୁ ଅଧିକ ବ୍ୟାପକ କରିବାକୁ ଉଦ୍ୟମ ଅବ୍ୟାହତ ରଖିଥିଲେ ।

ସେତେବେଳେ ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ କ୍ଷେତ୍ରମୋହନ ଚଟୁଆ କ୍ୟାମ୍ପରେ ରହି ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ସାଂଗଠନିକ କାର୍ଯ୍ୟରେ ଲାଗିପଡ଼ିଥାଆନ୍ତି । ଏଥିପାଇଁ ତାଙ୍କୁ ଆଉ

କେତେକ ସଂଗ୍ରାମୀଙ୍କ ସହ ମିଶି ବିଭିନ୍ନ ଗାଁକୁ ଯିବାକୁ ପଡୁଥାଏ । ବ୍ରିଟିଶ ବିରୋଧୀ ଆନ୍ଦୋଳନକୁ ଅଧିକ ତୀବ୍ର କରାଯିବାକୁ ଉଦ୍ୟମ ହେଉଥାଏ ।

କ୍ଷେତ୍ରମୋହନ ଚଟୁଆ କ୍ୟାମ୍ପରେ ପ୍ରାୟ ମାସେ କାଳ ରହି ଆନ୍ଦୋଳନ କରିବା ପରେ ବାଲିକୁଦା ଅଞ୍ଚଳକୁ ଫେରି ଆସିଲେ । ରେଣ୍ଟରେ ସେତେବେଳେ ଲୁଣମରା ଆନ୍ଦୋଳନ ଚାଲିଥାଏ । ରମାଦେବୀ ପ୍ରଭୃତି ବାଲିକୁଦା ଅଞ୍ଚଳର ସତ୍ୟାଗ୍ରହୀମାନଙ୍କ ଲାଗି ସେମାନେ ମୁଷ୍ଟି ଭିକ୍ଷା ଓ ଚାନ୍ଦା ସଂଗ୍ରହ କରୁଥାନ୍ତି । ବାଲିକୁଦା ଅଞ୍ଚଳରେ କ୍ଷେତ୍ରମୋହନଙ୍କ ନେତୃତ୍ୱରେ ସେତେବେଳେ ଗଂଜେଇ ଦୋକାନ ଆଗରେ ସତ୍ୟାଗ୍ରହୀମାନେ ପିକେଟିଂ କରୁଥାନ୍ତି । ମାତ୍ର ପୁଲିସ୍ କ୍ଷେତ୍ରମୋହନଙ୍କୁ ବାରମ୍ବାର ଧରିବାକୁ ଉଦ୍ୟମ କରି ବିଫଳ ହେଉଥାନ୍ତି । ପୁଲିସ୍ ଆଖିରେ ଧୂଳି ଦେଇ କ୍ଷେତ୍ରମୋହନ ଆଉ ବେଶୀଦିନ ସେଠାରେ ରହିବାକୁ ନିରାପଦ ମଣିଲେ ନାହିଁ । ତେଣୁ ସେ ଲୁଚି ଲୁଚି କଟକ ଚାଲି ଆସିଲେ । କଟକରେ ନବବାବୁ ଓ ମାଳତୀଦେବୀଙ୍କ ନିର୍ଦ୍ଦେଶରେ ସେ ବାଲେଶ୍ୱର ଯାଇ ସେଠାରେ ଚୌକିଦାରି ଟିକସ ଆନ୍ଦୋଳନରେ ଯୋଗ ଦେଲେ ଆଉ ଚାରିନମ୍ବର ବଇତୁଆ କ୍ୟାମ୍ପରେ ରହିଲେ । ବାଲେଶ୍ୱରରେ ଗୌରଗୋପାଳ ଦାସ (ଏକଦା ଗାନ୍ଧିଜୀଙ୍କ ପି.ଏ. ଥିଲେ ଏବଂ ଓଡ଼ିଶା ବିଧାନସଭାର ପ୍ରଥମ ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସଙ୍କ ପୁତ୍ର) ଓ ଅନ୍ୟମାନଙ୍କ ସହିତ ମିଶି କ୍ଷେତ୍ରମୋହନ ଗାଁ ଗାଁରେ ବୁଲି ଚୌକିଦାରି ଟିକସ ବନ୍ଦ କରିବା ଲାଗି ଜୋରସୋରରେ ଆନ୍ଦୋଳନ ଚଳାଇଲେ । ତତ୍କାଳୀନ ପୁଲିସ୍ ଏହା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିବା ଯୋଗୁଁ କ୍ଷେତ୍ରମୋହନ ଓ ଅନ୍ୟମାନଙ୍କ ଉପରେ ଅତ୍ୟାଚାର ହୋଇ ଚାଲିଥାଏ । ବାଲେଶ୍ୱର ଅଞ୍ଚଳରେ ପନ୍ଦର ଦିନ କାଳ ଏହି ଆନ୍ଦୋଳନ ଚାଲିବା ପରେ ପୁଲିସ୍ କ୍ଷେତ୍ରମୋହନଙ୍କ ସମେତ ଅନ୍ୟମାନଙ୍କୁ ଗିରଫ କରି ବାଲେଶ୍ୱର ଜେଲ୍‌ରେ ପ୍ରାୟ ତିନି ମାସ ପର୍ଯ୍ୟନ୍ତ ଅଟକ ରଖିଲେ । ଅବଶ୍ୟ ତିନି ମାସ ପରେ ସେମାନେ ଖଲାସ ହେଲେ । କିନ୍ତୁ ଆକ୍ରୋଶ ବଶତଃ ମିଥ୍ୟା ଅଭିଯୋଗରେ ପୁଲିସ୍ ଜେଲ୍ ଫାଟକ ନିକଟରୁ ପୁଣି ସେମାନଙ୍କୁ ଧରି ନେଇ କଟକରେ ଛାଡ଼ି ଦେଇଥିଲେ ।

କଟକରେ କ୍ଷେତ୍ରମୋହନ ରହୁଥିବା ବେଳେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ସାଥୀ ସଂଗ୍ରାମୀ ବିଶ୍ୱମ୍ବର ପରିଡ଼ା ପ୍ରଭୃତିଙ୍କ ସହିତ ମିଶି ବିଦେଶୀ ଲୁଗା ବର୍ଜନ ପାଇଁ ଲୁଗା ଦୋକାନ ସମ୍ମୁଖରେ ଏବଂ ଗଂଜେଇ ବିକ୍ରୀ ନିଷେଧ ପାଇଁ ଗଂଜେଇ ଦୋକାନ ସମ୍ମୁଖରେ ସତ୍ୟାଗ୍ରହ କଲେ । ଏହା ଫଳରେ ପୁଲିସ୍ କ୍ଷେତ୍ରମୋହନଙ୍କୁ ପ୍ରବଳ ମାଡ଼ ଦେଇ ଅଧିକାଂଶ ସନ୍ଧ୍ୟାରେ ଦୂରବର୍ତ୍ତୀ କୌଣସି ଏକ ଜଙ୍ଗଲ ନିକଟରେ ଛାଡ଼ି ଦେଇ ଆସୁଥିଲେ । ଜଙ୍ଗଲରୁ ବହୁ କଷ୍ଟରେ ଚାଲି ଚାଲି କ୍ଷେତ୍ରମୋହନ ଓ ଅନ୍ୟ ସଂଗ୍ରାମୀମାନେ ଗାଁମାନଙ୍କରେ ଭୋକ ଉପାସରେ ପହଞ୍ଚୁଥିଲେ । କୌଣସି କୌଣସି ଗ୍ରାମବାସୀ ଦୟାପରବଶ ହୋଇ ସେମାନଙ୍କୁ ଖାଇବାକୁ ପିଇବାକୁ ଦେଇ ନିଜ ଘରେ ଶୋଇବାକୁ ଜାଗା ଦେଉଥିଲେ । ମାତ୍ର କିଛିଦିନ ପରେ ଏ ସମସ୍ତ ସଂଗ୍ରାମୀଗଣ କଟକ ସହରକୁ ଆସି ପୁଣି ସତ୍ୟାଗ୍ରହରେ ଯୋଗ ଦେଉଥିଲେ । ପୁଲିସ୍ ତେଣୁ କ୍ଷେତ୍ରମୋହନଙ୍କୁ ବିଭିନ୍ନ ମିଥ୍ୟା ମୋକଦ୍ଦମାରେ ଜଡ଼ିତ କରି ତାଙ୍କୁ ଗିରଫ କରିବା ସଂଗେସଂଗେ କୋର୍ଟକୁ ଚାଲାଣ କରିଥିଲେ । ତାଙ୍କୁ ଛଅ ମାସ ଜେଲ୍ ଦଣ୍ଡ ହୋଇଥିଲା । ପୁଣି କଟକ ଜେଲ୍‌ରେ ତାଙ୍କୁ ମାସେ କାଳ ରଖିବା ପରେ ସେଠାରୁ ତାଙ୍କୁ ପାଟଣାର କ୍ୟାମ୍ପ ଜେଲକୁ ସ୍ଥାନାନ୍ତର କରାଗଲା । ଛଅ ମାସ କାଳ ପାଟଣା କ୍ୟାମ୍ପ ଜେଲ୍‌ରେ ରହି ଖଲାସ ହେବା ପରେ ସେ ପୁଣି କଟକ ଫେରିଆସି ସତ୍ୟାଗ୍ରହରେ ଯୋଗ ଦେଲେ । କିନ୍ତୁ ଆକ୍ରୋଶମୂଳକ ପଦକ୍ଷେପ ସ୍ୱରୂପ ତାଙ୍କୁ ଗିରଫ କରାଗଲା । ତତ୍କାଳୀନ ମାଜିଷ୍ଟ୍ରେଟ୍ ତାଙ୍କୁ ଛଅ ମାସ ପାଇଁ ଜେଲ୍ ଦଣ୍ଡ ଦେଲେ । ଫଳରେ କଟକ ଜେଲ୍‌ରେ ପୁଣି ତାଙ୍କୁ ସଡ଼ିବାକୁ ପଡ଼ିଲା । ଜେଲ୍ ଭିତରେ ବ୍ରିଟିଶ ଜେଲ୍ କର୍ତ୍ତୃପକ୍ଷଙ୍କ ଅନ୍ୟାୟ କାର୍ଯ୍ୟର ପ୍ରତିବାଦ ସେ ଅତି ନିର୍ଭୀକ ଭାବେ କରିଥିଲେ । ଏହାର ପରିଣାମ ସ୍ୱରୂପ ଜେଲ୍ କର୍ତ୍ତୃପକ୍ଷ ତାଙ୍କୁ ଜଣେ ଅପରାଧୀ ପରି ହାତରେ କଡ଼ା ଓ ଗୋଡ଼ରେ ବେଡ଼ି ଦେଇ ଅଧିକ ନିର୍ଯ୍ୟାତନା ଦେଇଥିଲେ । କଟକ ଜେଲ୍‌ରୁ ପୁନର୍ବାର ତାଙ୍କୁ ପାଟଣାସ୍ଥିତ କ୍ୟାମ୍ପ ଜେଲ୍‌କୁ ସ୍ଥାନାନ୍ତର କରାଯାଇଥିଲା । ସେଠାରେ ସେ ଛଅମାସ କାଳ ବନ୍ଦୀ ଭାବେ ଜୀବନଯାପନ କରିବା ପରେ ୧୯୩୧ ମାର୍ଚ୍ଚ ୫ ତାରିଖରେ ଗାନ୍ଧୀ-ଇଉରିନ୍ ଚୁକ୍ତି ଅନୁଯାୟୀ ସ୍ୱାଧୀନତା ଆନ୍ଦୋଳନକୁ ସ୍ଥଗିତ ରଖାଗଲା ଆଉ କ୍ଷେତ୍ରମୋହନଙ୍କୁ ଅନ୍ୟମାନଙ୍କ ସହ ଖଲାସ ମଧ୍ୟ କରି ଦିଆଗଲା ।

ଖଲାସ ହେବା ପରେ ସେ ନିଜ ଅଞ୍ଚଳ ବାଲିକୁଦାକୁ ଫେରି ଆସି ଗାଁ ଗାଁ ବୁଲି ଖଦୀବସ୍ତ୍ରର ପ୍ରଚାର କରିବା ସହିତ ସାଥୀ ସଂଗ୍ରାମୀ ସତ୍ୟାଗ୍ରହୀମାନଙ୍କୁ ପ୍ରଥମେ ଏକତ୍ର କଲେ । ଏହାଫଳରେ ନିଶା ନିବାରଣ ଓ ବିଦେଶୀ ବସ୍ତ୍ର ବର୍ଜନ ଉପରେ କ୍ଷେତ୍ରମୋହନଙ୍କ ନେତୃତ୍ୱରେ ଆନ୍ଦୋଳନ ଜୋର୍‌ସୋର୍‌ରେ ଚାଲିଲା ।

୧୯୩୧ ଡିସେମ୍ବର ୨୮ ତାରିଖରେ ଦ୍ୱିତୀୟ ପର୍ଯ୍ୟାୟର ଗୋଲଟେବୁଲ ବୈଠକ ଲଣ୍ଡନଠାରେ ହେବା ପରେ ଗାନ୍ଧିଜୀ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ବ୍ରିଟିଶ ସରକାର ଏହାପରେ ଆନ୍ଦୋଳନକାରୀ ନେତାମାନଙ୍କ ଉପରେ ଦମନମୂଳକ ପଦକ୍ଷେପ ନେବାକୁ ଆରମ୍ଭ କଲେ । ଭାରତରେ ଯେଉଁ କଂଗ୍ରେସ ଜରିଆରେ ସ୍ୱାଧୀନତା ଆନ୍ଦୋଳନ ମୁଣ୍ଡ ଟେକି ଉଠିଥିଲା, ସରକାର ତାହାକୁ ବେଆଇନ ବୋଲି ଘୋଷଣା ମଧ୍ୟ କଲେ । ୧୯୩୨ ଜାନୁଆରୀ ୪ ତାରିଖରେ ଗାନ୍ଧିଜୀ ଓ ଭାରତର ଅନ୍ୟାନ୍ୟ ତୁଙ୍ଗ ନେତାମାନଙ୍କୁ ବିନା ବିଚାରରେ ଗିରଫ କରି ଅଟକ ରଖାଗଲା । ଫଳରେ ଦେଶବ୍ୟାପୀ ଆନ୍ଦୋଳନର ଅଗ୍ନି ପ୍ରଜ୍ୱଳିତ ହୋଇଥିଲା । ଠିକ୍ ଏହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ କ୍ଷେତ୍ରମୋହନ କଟକ ଜିଲ୍ଲା କଂଗ୍ରେସର ସଭାପତି ମନୋନୀତ ହୋଇଥିଲେ । ଏହାପରେ କଟକର ନୟାସଡ଼କଠାରେ ସେ ଜନସାଧାରଣଙ୍କୁ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଉଥିବା ବେଳେ ପୁଲିସ୍ ତାଙ୍କୁ

ଗିରଫ କରି ନେଇ କଟକ ଜେଲ୍‌ରେ ଅଟକ ରଖିଲେ । ବିଚାର ହେବା ପରେ ତାଙ୍କୁ ନଅମାସ ପାଇଁ ଜେଲ୍‌ଦଣ୍ଡର ଆଦେଶ ହେଲା । ପନ୍ଦର ଦିନ ପରେ ପୁଣି ତାଙ୍କୁ ପୂର୍ବର ପାଟଣା କ୍ୟାମ୍ପ ଜେଲ୍‌କୁ ପଠାଗଲା । ସେଠାରେ ଜେଲ୍‌ରଙ୍କ ଦୁର୍ବ୍ୟବହାର ବିରୋଧରେ ଆନ୍ଦୋଳନ ହେଲା । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ନିଜେ କ୍ଷେତ୍ରମୋହନ । ଏହାର ପରିଣାମ ସ୍ୱରୂପ ତାଙ୍କୁ ସାତଦିନ କାଳ ଅନ୍ଧାରି ସେଲ୍‌ରେ ରଖାଯାଇ ବିଭିନ୍ନ ପ୍ରକାରର ନିର୍ଯ୍ୟାତନା ଦିଆଯାଇଥିଲା । ୧୯୩୪ରେ ସେ ସେଠାରୁ ଖଲାସ ହୋଇ କଟକ ଆସିଲେ । କଟକର ସ୍ୱରାଜ୍ୟ ଆଶ୍ରମରେ ରହି ସେ ବିଭିନ୍ନ ଆନ୍ଦୋଳନରେ ନିଜକୁ ସାମିଲ୍ କରିଥିଲେ । ୧୯୩୫ରେ ଶାନ୍ତିଲତାଙ୍କ ସହ ତାଙ୍କ ବିବାହ ସଂପନ୍ନ ହୋଇଥିଲା ।

୧୯୩୭ ମସିହାରେ ନିର୍ବାଚନ ହେଲା । ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ସରକାର ଗଠିତ ହେଲା । କଂଗ୍ରେସ ଦଳ ପାଇଁ ଜଗତସିଂହପୁର ଓ ବାଲିକୁଦା ଅଞ୍ଚଳରୁ ପ୍ରତିନିଧିତ୍ୱ କଲେ କ୍ଷେତ୍ରମୋହନ । ତାଙ୍କୁ ତତ୍କାଳୀନ ପ୍ରଦେଶ କଂଗ୍ରେସ କମିଟିର ସଦସ୍ୟ ତଥା କଟକ ଜିଲ୍ଲା କଂଗ୍ରେସ କମିଟିର ସଦସ୍ୟ କରାଗଲା । ସେତେବେଳେ ସ୍ୱାଧୀନତା ପାଇଁ ଆନ୍ଦୋଳନ କରୁଥିବା କଂଗ୍ରେସର ସଦସ୍ୟ ହେବା ଖୁବ୍ ସମ୍ମାନଜନକ ଥିଲା ।

୧୯୪୨ରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ଭାରତଛାଡ଼ ଆନ୍ଦୋଳନ ସାରା ଭାରତରେ ଆରମ୍ଭ ହେଲା । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ କ୍ଷେତ୍ରମୋହନ । ବାଲିକୁଦାଠାରେ ଥିବା ସରକାରୀ କାର୍ଯ୍ୟାଳୟଗୁଡ଼ିକୁ ପୋଡ଼ିଦେବା ପାଇଁ ଯୋଜନା କରାଯାଇ ବାଲିକୁଦାର କଂଗ୍ରେସ ଆଶ୍ରମରୁ ଏହି ଅଭିଯାନରେ ବାହାରିବା ସମୟରେ ତତ୍କାଳୀନ ବାଲିକୁଦା ଥାନାର ପୁଲିସ୍ ଅଫିସର କୌଶଳକ୍ରମେ ତାଙ୍କୁ ଗିରଫ କରି କଟକ ସ୍ଥାନାନ୍ତର କରିଥିଲେ । ସେ କଟକ ଜେଲ୍‌ରେ ଦୁଇମାସ ରହିବା ପରେ ତାଙ୍କୁ ଅଟକ ବନ୍ଦୀ ଭାବେ ବ୍ରହ୍ମପୁରର କ୍ୟାମ୍ପ ଜେଲ୍‌କୁ ପଠାଯାଇଥିଲା । ସେଠାରେ ୭/୮ ମାସ ରହିବାପରେ ପୁନର୍ବାର ତାଙ୍କୁ କଟକ ଜେଲ୍‌କୁ ସ୍ଥାନାନ୍ତର କରାଗଲା । କଟକ ଜେଲ୍‌ରେ କ୍ୟାମ୍ପ କୋର୍ଟରେ ତାଙ୍କର ବିଚାର ହେଲା ସତ କିନ୍ତୁ ତାଙ୍କୁ ବର୍ଷେ ପାଇଁ ଜେଲ୍ ଦଣ୍ଡ ସମେତ ୫୦୦ ଟଙ୍କା ଜୋରିମାନା ମଧ୍ୟ କରାଗଲା । ଜୋରିମାନା ଟଙ୍କା ଦିଆଯାଇନପାରିବାରୁ ତାଙ୍କର ଘରକୁ କୋରକ୍ କରାଗଲା । ତତ୍କାଳୀନ ବିଶିଷ୍ଟ ଆଇନଜୀବୀ ଦୀନବନ୍ଧୁ ସାହୁ (ଓଡ଼ିଶାର ପୂର୍ବତନ ମନ୍ତ୍ରୀ ତଥା ଆଡଭୋକେଟ ଜେନେରାଲ) ଉପରୋକ୍ତ ଦଣ୍ଡାଦେଶ ପାଇଁ ଅଦାଲତରେ ଅପିଲ୍ କରିଥିଲେ । ଅପିଲ୍‌ର ବିଚାର କରାଯାଇ ସେହି ଦଣ୍ଡାଦେଶକୁ ପରେ ଅବଶ୍ୟ ଖାରଜ କରାଯାଇଥିଲା । ମାତ୍ର ଆକ୍ରୋଶମୂଳକ ପଦକ୍ଷେପ ଯୋଗୁଁ ତାଙ୍କୁ ପୁନର୍ବାର ଅଟକ ବନ୍ଦୀ କରାଯାଇ କଟକ ଜେଲ୍‌ରେ ପାଞ୍ଚମାସ ପାଇଁ ରଖାଯାଇଥିଲା । ଏହା ପରେ କ୍ଷେତ୍ରମୋହନଙ୍କୁ ଆଉ ଥରେ ବ୍ରହ୍ମପୁର କ୍ୟାମ୍ପ ଜେଲ୍‌କୁ ସ୍ଥାନାନ୍ତର କରାଯାଇ ପାଞ୍ଚମାସ ରଖାଗଲା । ତା'ପରେ ପୁଣି ରସଲକୋଣ୍ଡା ଜେଲ୍‌କୁ ପଠାଗଲା । ଦୁଃଖର କଥା, ସେହି ସମୟରେ ତାଙ୍କର ପାଞ୍ଚବର୍ଷ ବୟସର କନ୍ୟା ଓ ଶାଶୁଙ୍କର ଦେହାନ୍ତ ହୋଇଥିଲା ।

ସ୍ୱାଧୀନତାର ପ୍ରକୃତ ଅର୍ଥ ଥିଲା ସ୍ୱାବଲମ୍ବନଶୀଳତା ବୋଲି ଗାନ୍ଧିଜୀ ଚିନ୍ତା କରୁଥିଲେ । ଏଥିପାଇଁ ଶିକ୍ଷାର ବିସ୍ତାର ଅପରିହାର୍ଯ୍ୟ ବୋଲି ମନେ କରାଯାଉଥିଲା । ତେଣୁ ନିଜ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ସଂଗ୍ରାମୀ କ୍ଷେତ୍ରମୋହନ ଉଦ୍ୟମ ଆରମ୍ଭ କରିଥିଲେ । ସେତେବେଳେ କେବଳ ବାଲିକୁଦାରେ ମଧ୍ୟ ଇଂରାଜୀ (ଏମ୍.ଇ.) ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟ (ହାଇସ୍କୁଲ) ଥିଲା । ଅଳାବୋଳ ପଞ୍ଚାୟତରେ କେବଳ ନିମ୍ନ ପ୍ରାଥମିକ (ଲୋୟର ପ୍ରାଇମେରୀ) ଓ ଉଚ୍ଚ ପ୍ରାଥମିକ (ଅପର ପ୍ରାଇମେରୀ) ସ୍କୁଲ ଥିଲା । କିନ୍ତୁ ସେଠାରେ ପିଲାମାନେ ଏମ୍.ଇ. ସ୍କୁଲରେ ଅଧ୍ୟୟନ ପାଇଁ ସୁଯୋଗ ପାଇ ପାରୁନଥିଲେ । ତେଣୁ କ୍ଷେତ୍ରମୋହନଙ୍କ ଉଦ୍ୟମ ଯୋଗୁଁ ଅଳାବୋଳ ଗ୍ରାମରେ ଏକ ଏମ୍.ଇ. ସ୍କୁଲ ସ୍ଥାପିତ ହୋଇଥିଲା - ସେହି ଗ୍ରାମର ଯୁବକମାନଙ୍କର ସହାୟତାକ୍ରମେ । ସେ କେବଳ ଏତିକିରେ ସନ୍ତୁଷ୍ଟ ନଥିଲେ । ଅନ୍ୟ କେତେକ ସ୍ଥାନରେ ସ୍କୁଲ ପ୍ରତିଷ୍ଠା ଲାଗି ସେ ନିଜ ବ୍ୟକ୍ତିତ୍ୱ ବଳରେ ଗ୍ରାମବାସୀମାନଙ୍କୁ ଉତ୍ସାହିତ କରିଥିଲେ । ଧନିଶୋ ଗ୍ରାମରେ ତାଙ୍କରି ଉଦ୍ୟମ ଓ ଆନ୍ତରିକତା ଯୋଗୁଁ ପଞ୍ଚୁପାଣ୍ଡବ ଶୈଳବାଳା ନାମରେ ଦୁଇଟି ଉଚ୍ଚ ଓ ଏମ୍.ଇ. ବିଦ୍ୟାଳୟ ପ୍ରତିଷ୍ଠା ମଧ୍ୟ ସମ୍ଭବ ହୋଇଥିଲା ।

ସେଦିନଟି ଥିଲା ୧୯୯୫ ମସିହା ଡିସେମ୍ବର ୨୪ ତାରିଖ । ସେହି ଦିବସରେ ହିଁ ସେହି ପୁଣ୍ୟଶ୍ଳୋକ, ସ୍ୱାଧୀନତା ସଂଗ୍ରାମୀ, ତ୍ୟାଗୀ ପୁରୁଷ କ୍ଷେତ୍ରମୋହନ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ବାଲିକୁଦା ଅଞ୍ଚଳରେ କେବଳ ନୁହେଁ, ଅବିଭକ୍ତ କଟକ ଜିଲ୍ଲାରେ ଏପରିକି ସମଗ୍ର ଓଡ଼ିଶାରେ ତାଙ୍କ ବିୟୋଗରେ ସେଦିନ ଶୋକର ଛାୟା ଖେଳି ଯାଇଥିଲା ।

ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨

■ ■ ■ ■

# ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆ

ନାରାୟଣ ପ୍ରସାଦ ଜେନା

ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବାସୁଦେବପୁର ଥାନା ଅନ୍ତର୍ଗତ ମନ୍ତେଇ ନଦୀକୂଳରେ ଚିର ଅବହେଳିତ ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆ ଗ୍ରାମଟି ଅବସ୍ଥିତ । ଭୌଗୋଳିକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ପଶ୍ଚିମ ଦିଗରୁ ମନ୍ତେଇ ନଦୀ ପ୍ରବାହିତ ହୋଇ ଚାରବାଟିଆ ଗ୍ରାମ ପାର୍ଶ୍ୱ ଦେଇ ପୂର୍ବ ଦିଗର ବଙ୍ଗୋପସାଗର ସହିତ ସଂଯୋଗ ହୋଇଛି । ନଦୀର ଦକ୍ଷିଣ ଦିଗରେ ବିସ୍ତୀର୍ଣ୍ଣ ଜଙ୍ଗଲ, କୋଷ୍ଟ କେନାଲ ଓ ଜନବସତି ବିଦ୍ୟମାନ । ନଦୀର ଅପରପାର୍ଶ୍ୱରେ ୧୦ ମାଇଲ ଦୂରରେ ଭଦ୍ରକ-ଚାନ୍ଦବାଲି ରାସ୍ତା । ଏହି ଅଞ୍ଚଳ ହରିଜନ ବହୁଳ ଓ ଭେଡ଼ା ଅଞ୍ଚଳ ରୂପେ ପରିଚିତ । ଜିଲ୍ଲାଟି ଶସ୍ୟ ଭଣ୍ଡାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଅଞ୍ଚଳରେ ଲୋକମାନେ ମୁଖ୍ୟତଃ ଚାଷ ଉପରେ ନିର୍ଭରଶୀଳ । ଏହାବ୍ୟତୀତ ଏ ଅଞ୍ଚଳରେ ଅନ୍ୟ ଉପାୟ କିଛି ନାହିଁ । ପ୍ରତିବର୍ଷ ଲୁଣା, ବନ୍ୟା ଓ ମରୁଡ଼ିରେ ଧାନ ଫସଲ ନଷ୍ଟ ହେବା ଫଳରେ ଲୋକମାନେ ବହୁ ଦୁଃଖ, କଷ୍ଟରେ ଜୀବନଯାବନ କରନ୍ତି । ଏ ଅଞ୍ଚଳରେ ଗମନାଗମନ, ଶିକ୍ଷା, ସ୍ୱାସ୍ଥ୍ୟର କୌଣସି ସୁବିଧା ନଥାଏ । ଉକ୍ତ ଅଞ୍ଚଳରେ ଭୂୟାଁ ଭାସ୍କରଚନ୍ଦ୍ର ରାୟ ବାହାଦୂର ମହାପାତ୍ରଙ୍କ ଜମିଦାରୀ ଥାଏ ।

ଏହି ସମୟରେ ଦେଶର ସାମ୍ରାଜ୍ୟବାଦୀ ଔପନିବେଶିକ ଶାସନ, ଶୋଷଣ ଚାଲିଥାଏ । ବ୍ରିଟିଶ ସରକାର ସମଗ୍ର 'ଭେଡ଼ା' ଅଞ୍ଚଳରେ ଚାରବାଟିଆକୁ କେନ୍ଦ୍ର କରି ଶାସନ କାର୍ଯ୍ୟ ଚଳାଉଥାନ୍ତି । କର୍ମଚାରୀମାନଙ୍କ ରହିବା ପାଇଁ ଚାରବାଟିଆଠାରେ ଏକ ଡାକ ବଙ୍ଗଳା, ଘୋଡାଶାଳ, ଟିକଟ ଘର ନିର୍ମାଣ ହୋଇଥାଏ ।

୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ସମୟରେ ରେଭେନ୍ସା ସାହେବ ଚାରିବାଟିଆଠାରେ କୋଷ୍ଟ କେନାଲ ଖୋଳାଇ ଥିଲେ । ଚାରବାଟିଆ ମନ୍ତେଇ ନଦୀ ମୁହାଣରୁ କେନାଲ ଖୋଳାଯାଇ ପଶ୍ଚିମବଙ୍ଗ ଦାମୋଦର ଗଙ୍ଗା ସହିତ ସଂଯୋଗ କରାଯାଇଛି । ଲଞ୍ଚ ଓ ଡଙ୍ଗା ଯୋଗେ ସରକାରୀ କର୍ମଚାରୀ ଓ ଲୋକମାନେ ବିଭିନ୍ନ ସ୍ଥାନକୁ ଯାତାୟାତ କରନ୍ତି । ଏ ଅଞ୍ଚଳରୁ ଧାନ, ଚାଉଳ କେନାଲ ଦେଇ ବାହାରକୁ ଯାଏ ଓ ବାହାରୁ ଜିନିଷପତ୍ର ମଧ ଏ ଅଞ୍ଚଳକୁ ଆସେ ।

ବ୍ରିଟିଶ ସାମ୍ରାଜ୍ୟବାଦ ଶାସନ ଶୋଷଣ ସାଙ୍ଗକୁ ଜମିଦାରମାନଙ୍କ ଅଧୀନରେ ନିଯୁକ୍ତି ପାଇଥିବା ପେଟି ଜମିଦାରମାନଙ୍କର ଅକଥନୀୟ ଅତ୍ୟାଚାର ଚାଲିବା ସହିତ ବେଠୀ, ଭେଟୀ, ବେଆଇନ ପାଉଣା ଆଦାୟର ଜୁଲମ ଚାଲିଥାଏ । ଏ ଅଞ୍ଚଳର ଅତ୍ୟାଚାରିତ ଓ ଶୋଷିତ ପ୍ରଜାମାନେ ଜମିଦାର ଓ ବ୍ରିଟିଶ ଶାସନ ପ୍ରତି ବିମୁଖ ଓ ବହୁ ଦିନର ଅସନ୍ତୋଷ ସେମାନଙ୍କ ମନରେ ଦାନା ବାନ୍ଧି ଥାଏ ।

ସମଗ୍ର ଦେଶରେ ବ୍ରିଟିଶ ସରକାରଙ୍କର କୁ-ଶାସନରେ ଲୋକମାନେ ଅତିଷ୍ଠ ହୋଇ ଶେଷରେ ଆରମ୍ଭ ହୁଏ ସ୍ୱାଧୀନତା ସଂଗ୍ରାମ । ସ୍ୱାଧୀନତା ସଂଗ୍ରାମର ସ୍ରୋତ ସମଗ୍ର ଦେଶରେ ପ୍ରବଳ ଭାବରେ ପ୍ରବାହିତ ହେଉଥାଏ । ପରାଧୀନ ଭାରତବର୍ଷକୁ ସ୍ୱାଧୀନ କରିବା ପାଇଁ ସମଗ୍ର ଦେଶରେ ଚାଷୀ, ମୂଲିଆଠାରୁ ଆରମ୍ଭ କରି ଛାତ୍ର, ଯୁବକ, ଶ୍ରମିକ, ଶିକ୍ଷକ, ମହିଳା ଓ ବୁଦ୍ଧିଜୀବୀମାନେ ଦେଶପ୍ରେମରେ ଉଦ୍‌ବୋଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । କେତେ ଯେ ବିଦ୍ରୋହ, ଆନ୍ଦୋଳନ ଯଥା- ସିପାହୀ ବିଦ୍ରୋହ, ପାଇକ ବିଦ୍ରୋହ, ସାନ୍ତାଳ ବିଦ୍ରୋହ, ସ୍ୱାଧୀନତା ଆନ୍ଦୋଳନ, ସନ୍ନ୍ୟାସୀ ଆନ୍ଦୋଳନ, ପ୍ରଜା ଆନ୍ଦୋଳନ, କୃଷକ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ଛାତ୍ର ଓ ଯୁବ ଆନ୍ଦୋଳନ, ଶିକ୍ଷକ ଆନ୍ଦୋଳନ ଏହିସବୁ ଆନ୍ଦୋଳନ ମହା ଆନ୍ଦୋଳନରେ ପରିଣତ ହୋଇଛି । କେତେ ଯେ ଶହୀଦ ହେଲେ, ଆଉ କେତେ ଯେ ଦ୍ୱିପାନ୍ତ ହେଲେ, କେତେ ଯେ କାରାବରଣ କଲେ ଓ ଅଜ୍ଞାତବାସ କଲେ ତା'ର ହିସାବ ନାହିଁ ।

ଦେଶର ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ ଓଡ଼ିଶାର ବରପୁତ୍ର ଜାତୀୟ କବି ବାଞ୍ଛାନିଧି ମହାନ୍ତି ଓ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ହରେକୃଷ୍ଣ ମହତାବ, ଭାଗବତ ସାହୁ, ଗୌରାଙ୍ଗ ଚନ୍ଦ୍ର ମହାନ୍ତି ଓ ଅନିରୁଦ୍ଧ ମହାନ୍ତି ପ୍ରମୁଖ ସମଗ୍ର 'ଭେଡ଼ା' ଅଞ୍ଚଳରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥାନ୍ତି । ଚାରବାଟିଆର ଆଖପାଖ ଅଞ୍ଚଳ ତଥା କନିକା ପ୍ରଜା ଆନ୍ଦୋଳନ ଓ ଇରମର ସ୍ୱାଧୀନତା ଆନ୍ଦୋଳନ ସମଗ୍ର 'ଭେଡ଼ା' ଅଞ୍ଚଳକୁ ପ୍ରସାରିତ ହେଉଥାଏ ।

୧୯୨୭ ମସିହା ଡିସେମ୍ବର ମାସ ୧୬, ୧୭, ୧୮ ତାରିଖଟି ଚାରବାଟିଆ ଗ୍ରାମ ପାଇଁ ଏକ ସ୍ମରଣୀୟ ଦିବସ ହୋଇ ରହିବା ସହିତ ଉକ୍ତ ଗ୍ରାମଟି ପରବର୍ତ୍ତୀ ଅବସ୍ଥାରେ ଏକ ଐତିହାସିକ ସଂଗ୍ରାମୀ ପୀଠରେ ପରିଣତ ହୋଇଛି । ଉକ୍ତ ଦିବସରେ ଗାନ୍ଧୀ, ଗୋପବନ୍ଧୁ, ମେରାବେନ, ମହାଦେବ ଦେଶାଇ, ମହତାବ, କନିକାର ପ୍ରଜାନେତା ଚକ୍ରଧର ବେହେରା, ଭାଗବତ ସାହୁ ପ୍ରମୁଖ ଚାରବାଟିଆଠାରେ ପହଞ୍ଚିଥିଲେ । ସେଦିନ ସମଗ୍ର ଭେଡ଼ା ଅଞ୍ଚଳରେ ଆନନ୍ଦ କହିଲେ ନସରେ । ଆବାଳ-ବୃଦ୍ଧ-ବନିତା ଫୁଙ୍ଗା ଦେହରେ ଏକ କୀର୍ତ୍ତନ ଦଳ ସହ ଛୁଟୁ ଥାନ୍ତି ଚାରବାଟିଆ ଗ୍ରାମକୁ । ଚାରିବାଟିଆ ଗ୍ରାମ କ୍ରମେ ଲୋକାରଣ୍ୟରେ ପରିଣତ ହେବାକୁ ଲାଗିଲା । ସୋରିଷ ପକାଇବାକୁ ରାହା ନାହିଁ । ଶଙ୍ଖ ହୁଳହୁଳି ସାଙ୍ଗକୁ ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନିରେ ଚାରବାଟିଆ ଗ୍ରାମଟି ମୁଖରିତ ହୋଇ ଉଠିଲା । ପ୍ରବଳ ଜନଗହଳି ମଧ୍ୟରେ ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖଙ୍କୁ ପୁଷ୍ପମାଲ୍ୟ ଦେଇ ସମ୍ବର୍ଦ୍ଧନା ଜଣାଇଥିଲେ । ମାଟିପଙ୍କା ମଠର ମହନ୍ତ ଗଣେଶାନନ୍ଦ ଗିରି ସଭାରେ ସଭାପତିତ୍ୱ କରିଥିଲେ । ବାଞ୍ଛାନିଧି ମହାନ୍ତିଙ୍କ ସ୍ୱରଚିତ ଦେଶାତ୍ମବୋଧ ସଙ୍ଗୀତ ଗାଇଥିଲେ ବଳରାମ ମହାନ୍ତି । ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖ ଚାରବାଟିଆ ଇଷ୍ଟଇଣ୍ଡିଆ କମ୍ପାନୀ ଡାକବଙ୍ଗଳାରେ ତିନି ଦିନ ରହଣି ମଧ୍ୟରେ ପ୍ରତିଦିନ ସଭା କରି ଲୋକମାନଙ୍କୁ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରି କହିଲେ ଯେ, ଜାତି, ଧର୍ମ, ନାରୀ, ପୁରୁଷ ନିର୍ବିଶେଷରେ ସମସ୍ତେ ଐକ୍ୟବୋଧ ହୋଇ ସ୍ୱାଧୀନତା ଆନ୍ଦୋଳନକୁ ସଫଳ କରିବାକୁ ହେବ । ଦେଶ ସ୍ୱାଧୀନ ହେଲେ ଆମ ଦେଶର ଅବସ୍ଥା ବଦଳିବା ସହିତ, ଆମ ସମସ୍ତଙ୍କର ଦୁଃଖ, କଷ୍ଟ ଦୂର ହେବ ଓ ଆମେ ସମସ୍ତେ ସ୍ୱାଧୀନ ଜୀବନଯାପନ କରିପାରିବା । ଗାନ୍ଧିଜୀଙ୍କର ଏ ବାଣୀ ଲୋକମାନଙ୍କୁ ସଂଗ୍ରାମୀମୁଖୀ କରାଇବାରେ ପ୍ରେରଣା ଯୋଗାଇଲା । ସମଗ୍ର ଭେଡ଼ା ଅଞ୍ଚଳର ଲୋକମାନେ ନିଜର ସାମର୍ଥ୍ୟାନୁଯାୟୀ ଗାନ୍ଧିଜୀଙ୍କୁ କିଛି ଅର୍ଥ ଦାନ କରିଥିଲେ । ସେହି ଦିନଠାରୁ ଏ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମ ଏକ ଅଭିନବ ରୂପ ଧାରଣ କରିଥିଲା । ଭେଡ଼ା ସହଯୋଗ ସମିତି ଗଠନ କରାଯାଇ ତା' ଜରିଆରେ ଆରମ୍ଭ ହୁଏ ସ୍ୱାଧୀନତା ସଂଗ୍ରାମ । ବହୁ ଉଦୀୟମାନ ଯୁବକ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ତନ୍ମଧ୍ୟରୁ ଗୋପାଳଚନ୍ଦ୍ର ମହାନ୍ତି, ବୈକୁଣ୍ଠ ପଟ୍ଟନାୟକ, ମହନ୍ତ ଗଣେଷାନନ୍ଦ ଗିରି, ବିଶ୍ୱନାଥ ମହାନ୍ତି, ହରିହର ପାଢ଼ୀ, ବଳରାମ ପଳିତା ପ୍ରମୁଖ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ବିଶ୍ୱନାଥ ମହାନ୍ତିଙ୍କ ବାସ ଭବନ ଚାରବାଟିଆ ଥିଲା ସ୍ୱାଧୀନତା ସଂଗ୍ରାମର କେନ୍ଦ୍ରସ୍ଥଳୀ । ପ୍ରତିଦିନ ସଂଗ୍ରାମୀମାନେ ସେଠାରେ ବସି ଆଲୋଚନା କରି ସଂଗ୍ରାମର ତରିକା ସ୍ଥିର କରି କାର୍ଯ୍ୟକ୍ରମ ଗ୍ରହଣ କରନ୍ତି । ପୋଲିସର ଆଗମନରେ ସଂଗ୍ରାମୀମାନଙ୍କୁ ସତର୍କ କରାଇ ଦେବାପାଇଁ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରାଯାଇଥାଏ । ସ୍ୱେଚ୍ଛାସେବକ ବାହିନୀର ନେତୃତ୍ୱ ନେଇଥିଲେ ପୂର୍ଣ୍ଣଚନ୍ଦ୍ର ନାୟକ ଓ ପୁରୁଷୋତ୍ତମ ସେନାପତି । ପୋଲିସ ଆଗମନରେ ଶଙ୍ଖ ବଜାଇବା ପାଇଁ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ।

ଚାରବାଟିଆ ଓ ତା'ର ଆଖପାଖ ଅଞ୍ଚଳରେ ଲବଣ ସତ୍ୟାଗ୍ରହଠାରୁ ଆରମ୍ଭ କରି ଭାରତ ଛାଡ଼ ଆନ୍ଦୋଳନର ଜନଜାଗରଣ ପ୍ରବଳରୁ ପ୍ରବଳତର ହେବାକୁ ଲାଗିଲା । ଜନଜାଗରଣକୁ ଭଣ୍ଡୁର କରିବା ପାଇଁ ବ୍ରିଟିଶ ସରକାରଙ୍କ ତରଫରୁ ଦମନ ମୂଳକ ଶାସନ ବ୍ୟବସ୍ଥା ଗ୍ରହଣ କରାଗଲା, ଏପରିକି ଚାରବାଟିଆ, ରାଜଘରପୋଖରୀ, ବାଲିମେଦ, ପାନପୁର, ଲକ୍ଷ୍ମୀ ପ୍ରସାଦ, ଦାମୋଦରପୁର, ପୁରୁଷୋତ୍ତମପୁର, କାଳିଦାସପୁର, ପାଇକସାହି, ଖସରଭେଡ଼ି, ଛତରପଦା ଗ୍ରାମମାନଙ୍କରେ ସରକାରଙ୍କ ତରଫରୁ ଡେଙ୍ଗୁରା ପିଟି ସଭା ଓ ଆନ୍ଦୋଳନକୁ ନିଷେଧାଜ୍ଞା ଜାରି କରାଗଲା । ବ୍ରିଟିଶ ସରକାରଙ୍କର ସମସ୍ତ ପ୍ରକାର ଦମନମୂଳକ ଆଇନ ବ୍ୟବସ୍ଥାକୁ ଭ୍ରୁକ୍ଷେପ ନକରି ଜନସାଧାରଣ ସ୍ୱାଧୀନତା ଆନ୍ଦୋଳନକୁ ଜୋର୍‌ଦାର ଭାବେ ଗଢ଼ି ତୋଳିଲେ ।

ସ୍ୱାଧୀନତା ସଂଗ୍ରାମରେ ସମଗ୍ର ଦେଶ ଦୋହଲୁ ଥାଏ । ସ୍ୱାଧୀନତା ସଂଗ୍ରାମୀମାନେ ଚାରବାଟିଆ ଓ ଆଖପାଖ ଅଞ୍ଚଳରେ ବୁଲି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବା ସହିତ ବ୍ରିଟିଶ ସରକାର ବିରୁଦ୍ଧରେ ଲୋକମାନଙ୍କୁ ସଚେତନ କରାଉଥାନ୍ତି । ରାଜଘର ପୋଖରୀଠାରେ ସଂଗ୍ରାମୀମାନଙ୍କର ଏକ ବୈଠକ ବସିଥାଏ । ବୈଠକରେ ସଭାପତିତ୍ୱ କରୁଥାନ୍ତି ମହନ୍ତ ଗଣେଶାନନ୍ଦ ଗିରି । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାଗବତ ସାହୁ ବୈଠକରେ ଯୋଗ ଦେଇଥାନ୍ତି । ବ୍ରିଟିଶ ସରକାରଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ବୈଠକରେ ଆଲୋଚନା କରାଯାଉଥାଏ । ସରକାର ବିରୁଦ୍ଧରେ ଆନ୍ଦୋଳନ କରାଯିବା ପାଇଁ ନିଷ୍ପତ୍ତି କରାଗଲା । ଠିକ୍ ଏହି ସମୟରେ ଶଙ୍ଖଧ୍ୱନୀ ବାଜି ଉଠିଲା । ପୋଲିସ୍ ଫୌଜ ଆସିବାର ସଂଗ୍ରାମୀ ଓ ଲୋକମାନେ ଜାଣିପାରି ସଭାସ୍ଥଳ ଛାଡ଼ି ପଳାଇ ଯିବାକୁ ଆରମ୍ଭ କଲେ । ପୋଲିସ୍ ସଭାସ୍ଥଳରେ ପହଞ୍ଚି ସଂଗ୍ରାମୀମାନଙ୍କର କୌଣସି ଖବର ପାଇଲେ ନାହିଁ । ଗାଁଗଣ୍ଡାରେ ପଶି ଲୋକମାନଙ୍କୁ ପଚାରିବା ଆରମ୍ଭ କଲେ । କୌଣସି ଖବର ନପାଇ ଚାରବାଟିଆ ଫେରିଗଲେ ।

ଗତ ବୈଠକର ନିଷ୍ପତ୍ତି ଅନୁଯାୟୀ ଆନ୍ଦୋଳନ ପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଥାଏ । ଗାଁଗଣ୍ଡାରେ ଲୋକମାନେ ସଂଗଠିତ ହେବାକୁ ଲାଗିଲେ । ଏହି ପରିପ୍ରେକ୍ଷୀରେ ଭାରତଛାଡ଼ ଆନ୍ଦୋଳନର ଡାକରା ଦିଆଯାଇଥାଏ । ବ୍ରିଟିଶ ସରକାର ସମଗ୍ର ଦେଶରେ ବ୍ୟାପକ ଗିରଫଦାରୀ ସାଙ୍ଗକୁ ଅକଥନୀୟ ଅତ୍ୟାଚାର ଚଳାଇଥାନ୍ତି । ଏପରିକି ବ୍ରିଟିଶ ସରକାର ଘାଏଲା ବାଘ ପରି ହେଉଥାଏ । ରାସ୍ତାଘାଟରେ ଯାହାକୁ ପାଇଲେ ଜେଲଖାନାକୁ ପଠାଇ ଦେଉଥାନ୍ତି । ଚାରବାଟିଆ ଓ ଆଖପାଖ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଖୋଜା ଚାଲିଥାଏ । ସଂଗ୍ରାମୀମାନେ ଡାଙ୍ଗମାଳ ଓ ଗାଳପୁର, ଦଧିବାମନପୁର ଜଙ୍ଗଲରେ ଆତ୍ମଗୋପନ କରି ରହିଥାନ୍ତି । ସ୍ୱେଚ୍ଛାସେବୀମାନେ ସଂଗ୍ରାମୀମାନଙ୍କ ସହ ଯୋଗାଯୋଗ ରଖି କାର୍ଯ୍ୟ କରୁଥାନ୍ତି । ଏହି

ସମୟରେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ହରେକୃଷ୍ଣ ମହତାବ ବାଲିମେଦ ଗ୍ରାମରେ ଆତ୍ମଗୋପନ କରି ରହିଥିଲେ । ସଂଗ୍ରାମୀମାନେ ରାତ୍ରରେ ଗୋପନରେ ଆସି ତାଙ୍କ ସହ ସାକ୍ଷାତ କରି ପରାମର୍ଶ ନେଉଥିଲେ ।

ଦେଶରେ ତ କମ ଶିଖି ମନାଇ ନଥିଲେ । ସଂଗ୍ରାମୀମାନଙ୍କର ଗୋପନ ଆଡ଼ସ୍ଥଳୀର ଖବର ପୋଲିସ୍‌କୁ ଜଣାଇ ଦେବାରୁ ପୋଲିସ୍ ସଦଳବଳେ ଡାଙ୍ଗମାଳ ଓ ଗାଳପୁର ଜଙ୍ଗଲକୁ ଭୋରୁ ଅତର୍କିତ ଭାବେ ଘେରାଉ କଲେ । ସଂଗ୍ରାମୀମାନେ ପୋଲିସ୍‌ର ଅତର୍କିତ ଆକ୍ରମଣ ଜାଣିପାରିଲେ । ଏଥର ପୋଲିସ୍ ହାତରେ ଧରା ପଡ଼ିବା, ଏଥିରେ କୌଣସି ସନ୍ଦେହ ନାହିଁ । ସଂଗ୍ରାମୀମାନଙ୍କ ମଧ୍ୟରେ ବିରାଟ ଭାଳେଣି । କିପରି ପୋଲିସ୍ ହତାରୁ ରକ୍ଷା ପାଇବେ । ଠିକ୍ ଏହି ସମୟରେ ବିଶ୍ୱନାଥ ମହାନ୍ତି କହିଲେ 'ଭାବିବାର ବେଳ ନୁହେଁ ନିଜକୁ ରକ୍ଷା କରିବାକୁ ହେଲେ ନିଜ ଜୀବନକୁ ପାଣି ଛଡ଼ାଇ ଦେବାକୁ ହେବ । ଏକ ଉପାୟ ସ୍ଥିର ହେଲା ସମସ୍ତ ସଂଗ୍ରାମୀମାନେ ନଦୀ ଗର୍ଭକୁ ଡେଇଁ ପଡ଼ି ପହଁରି ପହଁରି ଅପରପାଖ କୂଳ ଜଙ୍ଗଲକୁ ଚାଲିଗଲେ । ଏଣେ ପୋଲିସ୍‌ବାହିନୀ ଜଙ୍ଗଲ ମଧ୍ୟରେ ପଶି ସଂଗ୍ରାମୀମାନଙ୍କୁ ଖୋଜିବା ଆରମ୍ଭ କଲେ । ହେଲେ କାହାରିକୁ ପାଇଲେ ନାହିଁ । ସେଠାରୁ କ୍ରୋଧାନିତ୍ୱ ହୋଇ ଫେରି ଆସିଲେ ପୋଲିସ୍ ବାହିନୀ । ଚାରବାଟିଆ ଗ୍ରାମ ଉପରେ ବର୍ବୋଚିତ ଆକ୍ରମଣ ଆରମ୍ଭ କଲେ । ନାରୀ ପୁରୁଷ ନିର୍ବିଶେଷରେ ଯାହାକୁ ପାଇଲେ ନିସ୍ତୁକ ମାଡ଼ ଦେଲେ ଘରୁ ଖାଦ୍ୟ ପଦାର୍ଥ ବୋହି ନେଲେ । ଗାଁର ମୁଖିଆ ଲୋକମାନଙ୍କୁ ଧରି ନେଇ ଡାକବଙ୍ଗଳା ସାମ୍ନାରେ ବସାଇ ସଂଗ୍ରାମୀମାନଙ୍କର ନାମ ଓ କେଉଁଠାରେ ଅଛନ୍ତି କହିବା ପାଇଁ ତାଙ୍କୁ ଧମକଚମକ ଦେବା ସଂଗେସଂଗେ ମାଡ଼ ମଧ୍ୟ ଦେଉଥାନ୍ତି । ସେମାନେ କାନ୍ଦ ବୋବାଳି ପକାଇ ଗଡ଼ି ଯାଉଥାନ୍ତି ଗାନ୍ଧୀ ପଡ଼ିଆରେ । ଏ ଖବର ମୁହୂର୍ତ୍ତକ ମଧ୍ୟରେ ସମଗ୍ର ବାସୁଦେବପୁର ଅଞ୍ଚଳରେ ପ୍ରଚାରିତ ହେବାକୁ ଲାଗିଲା । ସମଗ୍ର ଭେଡ଼ା ଅଞ୍ଚଳର ଏ ଖବର ପାଇବା ମାତ୍ରେ ବ୍ରିଟିଶ ବିରୁଦ୍ଧ ଆନ୍ଦୋଳନ ବ୍ୟାପକ ହେବାକୁ ଲାଗିଲା ।

ବ୍ରିଟିଶ ସରକାରଙ୍କର ବର୍ବରୋଚିତ ଆକ୍ରମଣ ପରିପ୍ରେକ୍ଷୀରେ ବାଲିମେଦଠାରେ ଏକ ଗୋପନ ସଭା ଡକାଗଲା । ଉକ୍ତ ସଭାରେ ୩୫ ଖଣ୍ଡ ଗାଁର ମୁଖିଆମାନେ ଉପସ୍ଥିତ ଥିଲେ ଓ ସଂଗ୍ରାମୀମାନେ ଯୋଗ ଦେଇଥିଲେ । ସଭାରେ ସଭାପତିତ୍ୱ କରିଥାନ୍ତି ମହନ୍ତ ଗଣେଷ ନନ୍ଦଗିରି । ସଭା ଆରମ୍ଭରେ ସଂଗ୍ରାମୀ ବିଶ୍ୱନାଥ ମହାନ୍ତି ବ୍ରିଟିଶ ସରକାରଙ୍କର ଅମାନୁଷିକ ଅତ୍ୟାଚାର ବିଷୟରେ ଆଲୋଚନା ଆରମ୍ଭ କଲେ । ସଭାରେ ନିଷ୍ପତ୍ତି ହେଲା ଏପ୍ରିଲ୍ ମାସ ୨୦ ତାରିଖରେ ଚାରବାଟିଆ ଗାନ୍ଧୀ ପଡ଼ିଆଠାରେ ଏକ ସଭା କରାଯିବ । ସଭାରେ ବ୍ରିଟିଶ ସରକାରଙ୍କୁ ଚେତାଇ ଦେବାକୁ ହେବ । ଏହି ପ୍ରସ୍ତାବରେ ସମସ୍ତେ ଏକମତ ହେଲେ ଆଜିଠାରୁ ଗାଁଗଣ୍ଡାରେ ଲୋକମାନଙ୍କୁ ସଂଗଠିତ କରିବା ପାଇଁ ଗାଁ ମୁଖିଆମାନଙ୍କ ଉପରେ ଦାୟିତ୍ୱ ଦିଆଗଲା । ଏଣେ ପୋଲିସ୍ ବାହିନୀ ବାଲିମେଦ ଗାଁ ମୁଣ୍ଡରେ ପହଞ୍ଚିବା ଖବର ସ୍ୱେଚ୍ଛାସେବକ ବାହିନୀ ସଭାରେ ଜଣାଇ ଦେବାରୁ ସଭା ଭଙ୍ଗ କରି ସ୍ଥାନ ଛାଡ଼ି ଚାଲି ଯାଇଥିଲେ । ପୋଲିସ୍ ଆକ୍ରମଣରୁ ରକ୍ଷା ପାଇବା ପାଇଁ ମାଟିପଙ୍କା ମଠରେ ସଂଗ୍ରାମୀମାନେ ଆତ୍ମଗୋପନ କରି ରହିଥିଲେ । ରାତ୍ରରେ ଗାଁମାନଙ୍କରେ ବୁଲି ସଂଗ୍ରାମ ପାଇଁ ଲୋକମାନଙ୍କୁ ସଂଗଠିତ କରୁଥିଲେ । ପୋଲିସ୍ ବାହିନୀ ସଭାସ୍ଥଳରେ ସଂଗ୍ରାମୀମାନଙ୍କୁ ନପାଇ ବାଲିମେଦ, ପାନପୁର, ପୁରୁଷୋତ୍ତମପୁର ଓ ଦାମୋଦରପୁର ଗ୍ରାମମାନଙ୍କରେ ଖୋଜିବା ଆରମ୍ଭ କରି ଦେଇଥିଲେ ।

ସଂଗ୍ରାମୀମାନେ ଅଜ୍ଞାତବାସରେ ରହି ଏପ୍ରିଲ୍ ୨୦ ତାରିଖକୁ ସଫଳ କରିବା ପାଇଁ ବ୍ୟାପକ ପ୍ରସ୍ତୁତି ଚଳାଇଥାନ୍ତି । ଗାଁ ମୁଖିଆମାନେ ମଧ୍ୟ ଲୋକମାନଙ୍କୁ ଆନ୍ଦୋଳନ ପାଇଁ ସଂଗଠିତ କରୁଥାନ୍ତି ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ଡାକରାରେ ସମଗ୍ର ଦେଶ ପ୍ରକମ୍ପିତ ହେଉଥାଏ । ଏହି ପରିପ୍ରେକ୍ଷୀରେ ଚାରବାଟିଆ ଅଞ୍ଚଳ ପାଇଁ ଏପ୍ରିଲ୍ ୨୦ ତାରିଖ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଦିବସ ।

ଏପ୍ରିଲ୍ ୨୦ ତାରିଖ ଦିନଟି ଚାରବାଟିଆ ଆକାଶରେ ଏକ ଦୁର୍ଦ୍ଦିନର କଳା ବାଦଲ ଘୋଟି ଆସିବ କିଏ ଜାଣିଥିଲା । ଏପ୍ରିଲ୍ ୨୦ ତାରିଖ ଦିନ ସମଗ୍ର ଭେଡ଼ା ଅଞ୍ଚଳର ଆବାଳ-ବୃଦ୍ଧ-ବନିତା ଧାଡ଼ିବାନ୍ଧି ଛୁଟୁଥାନ୍ତି ବାଲିମେଦ କୋଷ୍ଠ କେନାଲ ଆଡ଼କୁ । କ୍ରମେ ଜନଗହଳି ହେବାକୁ ଲାଗିଲା । ସମୟ ଦିନ ୧୦ଟା, ବୈଶାଖୀର ଉତ୍ତପ୍ତ ସୂର୍ଯ୍ୟ କିରଣ ପ୍ରଖର ହେବାକୁ ଲାଗିଲା । ଲୋକମାନେ ସୂର୍ଯ୍ୟର ପ୍ରଚଣ୍ଡ ରୁଦ୍ର ତାପକୁ ଭ୍ରୂକ୍ଷେପ ନକରି ଧାଡ଼ିବାନ୍ଧି ଚାଲିବା ଆରମ୍ଭ କଲେ ଚାରବାଟିଆ ଗାନ୍ଧୀ ପଡ଼ିଆକୁ । ମହାତ୍ମା ଗାନ୍ଧିଜୀକି ଜୟ, ବ୍ରିଟିଶ ତମେ ଭାରତ ଛାଡ଼ ସ୍ଲୋଗାନରେ ଆକାଶ ପ୍ରକମ୍ପିତ ହେଉଥାଏ । ଶୋଭାଯାତ୍ରା ଗାନ୍ଧୀ ପଡ଼ିଆଠାରେ ପହଞ୍ଚିବା ମାତ୍ରେ ପୋଲିସ୍ ବାହିନୀ ଗାନ୍ଧୀ ପଡ଼ିଆକୁ ଘେରି ରହିଲେ । ଅଳ୍ପ ସଂଖ୍ୟକ ପୋଲିସ୍ ଥିବାରୁ ସଭାକୁ ଭଣ୍ଡୁର କରିବା କିମ୍ବା ଅତ୍ୟାଚାର କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ବାହାରୁ ବହୁ ସଂଖ୍ୟକ ପୋଲିସ୍ ମଗାଗଲା । ସଭା ଆରମ୍ଭ ହେଲା । ସଭାରେ ସଭାପତିତ୍ୱ କରିଥିଲେ ମହନ୍ତ ଗଣେଶାନନ୍ଦ ଗିରି, ବାଞ୍ଛାନିଧି ମହାନ୍ତିଙ୍କ ସ୍ୱରଚିତ ଦେଶାତ୍ମବୋଧ ସଂଗୀତ ଗାଇଥିଲେ ବଳରାମ ମହାନ୍ତି ଓ ଗୀତ ଶେଷରେ ମହାତ୍ମା ଗାନ୍ଧିଜୀକି ଜୟ, ବ୍ରିଟିଶ ତମେ ଭାରତ ଛାଡ଼ ସ୍ଲୋଗାନରେ ସଭାମଞ୍ଚ ମୁଖରିତ ହୋଇଉଠିଲା । ବକ୍ତାମାନେ ଜଣକ ପରେ ଜଣେ ବକ୍ତବ୍ୟ ରଖୁଥାନ୍ତି । ବକ୍ତାମାନଙ୍କର ଓଜସ୍ୱିନୀ ଭାଷଣରେ ଗାନ୍ଧୀ ପଡ଼ିଆର ବାୟୁମଣ୍ଡଳ କ୍ରମେ ସରଗରମ ହେବାକୁ ଲାଗିଲା । ଠିକ୍ ଏହି ସମୟରେ ବହୁ ସଂଖ୍ୟାରେ ପୋଲିସ୍ ବାହିନୀ ଗାନ୍ଧୀ ପଡ଼ିଆଠାରେ ପହଞ୍ଚି କ୍ରୋଧାନ୍ୱିତ ହୋଇ କହିଲେ ଏହି ମୁହୂର୍ତ୍ତରେ ଗାନ୍ଧୀ ପଡ଼ିଆ ଛାଡ଼ି ଚାଲିଯାଅ, ନଚେତ୍ ମରିବା ପାଇଁ ପ୍ରସ୍ତୁତ ହୁଅ । ସଭାରେ ଲୋକମାନେ ଭୟଭିତ ହୋଇ ଛିଡ଼ା

ହୋଇ ପଡ଼ିଲେ । ସଂଗ୍ରାମୀମାନେ ଲୋକମାନଙ୍କୁ ଅଭୟ ଦେଇ କହୁଥାନ୍ତି, ଭାଇମାନେ ଭୟ କର ନାହିଁ । ମରିବା ପଛେ ଡରିବା ନାହିଁ । ବ୍ରିଟିଶ ସରକାରଙ୍କର ଅନ୍ୟାୟ ଅତ୍ୟାଚାର ତାଙ୍କୁ ଚେତାଇ ଦେବାକୁ ହେବ । ସ୍ଲୋଗାନରେ କମ୍ପି ଉଠିଲା ସଭାମଞ୍ଚ । ଏଣେ ହ୍ୱିସିଲ୍ ବାଜି ଉଠିଲା । ପୋଲିସ୍ ବାହିନୀ ସଭାମଞ୍ଚରେ ପଶି ଆଖିବୁଜା ପିଟିବା ଆରମ୍ଭ କଲେ । ଲୋକମାନେ ପ୍ରାଣ ବିକଳରେ ଏଣେତେଣେ ଦୌଡ଼ିବାକୁ ଲାଗିଲେ ମଧ୍ୟ ପଳାଇ ଯିବାକୁ ରାସ୍ତା ନଥାଏ । ଗାନ୍ଧୀ ପଡ଼ିଆର ଏକମାତ୍ର ରାସ୍ତାକୁ ପୋଲିସ୍ ବାହିନୀ ଘେରି ରହିଥାନ୍ତି । ଲୋକମାନେ ନିରୁପାୟ ହୋଇ ପ୍ରତି ଆକ୍ରମଣ କରିବାକୁ ବାଧ୍ୟ ହେଲେ । ପୋଲିସ୍ ଓ ଲୋକମାନଙ୍କ ମଧ୍ୟରେ ଧସ୍ତାଧସ୍ତି ଆରମ୍ଭ ହୋଇଗଲା । ପୋଲିସ୍ ଲାଠିରେ ସ୍ୱାଧୀନତା ସଂଗ୍ରାମୀ ଓ ଲୋକମାନଙ୍କର ଗୋଡ଼ହାତ ଭାଙ୍ଗିବା ସହିତ ମୁଣ୍ଡ ଫାଟି ରକ୍ତ ନିଗିଡ଼ି ଗଲା ଗାନ୍ଧୀ ପଡ଼ିଆରେ । ବହୁ ଲୋକ ଆହତ ହେଲେ । ପୋଲିସ୍ ବାହିନୀର ବର୍ବରୋଚିତ ଆକ୍ରମଣରେ ଗାନ୍ଧୀ ପଡ଼ିଆ ମ୍ରିୟମାଣ ହୋଇ ପଡ଼ିଥିଲା । ଆହତ ଲୋକମାନେ ପାଣି ପାଣି ଚିତ୍କାର କରୁଥିବାବେଳେ, ପୋଲିସ୍ ବାହିନୀ ପାଣି ବଦଳରେ ବୁଟ୍, ଜୋତାରେ ମାଡ଼ି ଚକଟି ଦେଉଥାନ୍ତି । ପୋଲିସ୍‌ର ଆନନ୍ଦ କହିଲେ ନସରେ । ସଭାମଞ୍ଚରୁ ବିଶ୍ୱନାଥ ମହାନ୍ତି, ହରିହର ପାଢ଼ୀ, ମହନ୍ତ ଗଣେଶାନନ୍ଦ ଗିରି, ବଳରାମ ପଳିତା ପ୍ରମୁଖଙ୍କୁ ଗିରଫ କରାଯାଇ ନିସ୍ତୁକ ମାଡ଼ ତାଙ୍କ ଉପରେ ହେଉଥାଏ । ରାସ୍ତାଘାଟରେ ଯାହାକୁ ପାଇଲେ ମଧ୍ୟ ତାଙ୍କ ଉପରେ ମାଡ଼ ଦିଆଯାଉଥାଏ । ସମୟ ସେତେବେଳେ ଅପରାହ୍ନ ୪ଟା । ପୋଲିସ୍ ବାହିନୀ ବର୍ବରୋଚିତ ଆକ୍ରମଣ କରି ଡାକବଙ୍ଗଳାକୁ ଚାଲି ଯାଇଥିଲେ । ସଂଗ୍ରାମୀମାନଙ୍କ ହାତରେ ହ୍ୟାଣ୍ଡକପ ପକାଇ ତାଙ୍କୁ ଡାକବଙ୍ଗଳା ସାମନାରେ ବସାଇଥାନ୍ତି । ଏ ଖବର ସମଗ୍ର ଜିଲ୍ଲାରେ ବ୍ୟାପିବାକୁ ଲାଗିଲା । ସ୍ୱାଧୀନତା ସଂଗ୍ରାମୀଙ୍କ ଆତ୍ମୀୟ ସ୍ୱଜନମାନଙ୍କର ସୁଅ ଛୁଟିଲା ଗାନ୍ଧୀ ପଡ଼ିଆକୁ । ବ୍ରିଟିଶ ସରକାରଙ୍କର ଏ ଅମାନୁଷିକ ଅତ୍ୟାଚାର ଯିଏ ଦେଖିଥିବ ସେ ଜୀବନରେ ଭୁଲି ପାରିବ ନାହିଁ । ଆତ୍ମୀୟ ସ୍ୱଜନମାନଙ୍କ କାନ୍ଦରେ ଗାନ୍ଧୀ ପଡ଼ିଆ କୋଳାହଳରେ ଫାଟି ପଡୁଥାଏ । ବ୍ରିଟିଶ ସରକାରଙ୍କର ଏ ପ୍ରକାର ଦମନଲୀଳାରେ ଆନ୍ଦୋଳନ ଦବି ନଯାଇ ବରଂ ବ୍ୟାପକ ହେବାକୁ ଲାଗିଲା ।

ଚାରବାଟିଆ ସ୍ୱାଧୀନତା ସଂଗ୍ରାମର ଏକ ଐତିହାସିକ ସଂଗ୍ରାମୀ ପୀଠ ମହତାବଙ୍କ ଓଡ଼ିଶା ସ୍ୱାଧୀନତା ସଂଗ୍ରାମ ଇତିହାସରେ ଉଲ୍ଲେଖ କରାଯାଇଛି ।

ଆଜି ଦେଶ ସ୍ୱାଧୀନ ହେବାର ୫୯ ବର୍ଷ ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରୁ ଅନେକ ଇହଧାମରୁ ବିଦାୟ ନେଇଗଲେଣି । ୫୯ ବର୍ଷ ପୂର୍ବେ ଯେଉଁ ଚାରବାଟିଆ ଐତିହାସିକ, ସ୍ୱାଧୀନତା ସଂଗ୍ରାମର ପୀଠସ୍ଥଳୀ ଥିଲା, ଆଜି ତାହାର କୌଣସି ପରିବର୍ତ୍ତନ ହୋଇନାହିଁ । ଚାରବାଟିଆଠାରେ ଡାକ ବଙ୍ଗଳାଟି ଜରାଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ହୋଇ ରହିଥିବାବେଳେ, ମନ୍ତେଇ ନଦୀ ଓ କୋଷ୍ଟ କେନାଲ ମୁହାଣରେ ଅତୀତରେ ନିର୍ମାଣ ହୋଇଥିବା ପୋଲଟି ଭଗ୍ନ ଅବସ୍ଥାରେ ଛିଡ଼ା ହୋଇଛି ।

ଅପରପକ୍ଷରେ ଦେଶର ସ୍ୱାଧୀନତା ସଂଗ୍ରାମୀ ପୀଠସ୍ଥଳୀମାନଙ୍କରେ ଗାନ୍ଧୀ ପ୍ରତିମୂର୍ତ୍ତି, ଶହୀଦ ସ୍ତମ୍ଭ, ଶହୀଦ ମଞ୍ଚ, ସଭାମଞ୍ଚ, ସ୍ମାରକୀ ଓ ପୀଠ ନାମରେ,ବିଦ୍ୟାଳୟ, ସ୍ୱାସ୍ଥ୍ୟ କେନ୍ଦ୍ର ବହୁ ଉନ୍ନୟନମୂଳକ କାର୍ଯ୍ୟ ହେଉଥିବାବେଳେ, ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆ ସେସବୁରୁ ବଞ୍ଚିତ ହୋଇଛି । ଏହା ଆମ ଅଞ୍ଚଳ ପାଇଁ ଓ ଆମ୍ଭମାନଙ୍କ ପାଇଁ ଏକ ଦୁଃଖଦାୟକ ଘଟଣା ହୋଇରହିଛି । ଖାଲି ସେତିକି ନୁହେଁ, ଏବେ ବି କେତେକ ଅନାଲୋଚିତ ସଂଗ୍ରାମୀ ପୀଠ ଲୋକଲୋଚନକୁ ଆସି ପାରିନାହିଁ ।

ଦେଶ ସ୍ୱାଧୀନ ହେବା ପରଠାରୁ ଜାତୀୟ ଦିବସମାନଙ୍କରେ ଏ ଅଞ୍ଚଳର ସମାଜସେବୀ, ବୁଦ୍ଧିଜୀବୀ, ଛାତ୍ର, ଯୁବକ, କୃଷକ, ଶ୍ରମିକ ମହିଳା ଓ ଶିକ୍ଷକମାନେ ପତାକା ଉତ୍ତୋଳନ, ସାଧାରଣସଭା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଜରିଆରେ ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆର ସ୍ମୃତିଚାରଣ କରାଯାଉଛି ।

ଦୀର୍ଘ ୧୦ ବର୍ଷରୁ ଊର୍ଦ୍ଧ୍ୱ ହେବ ଗାନ୍ଧୀ ସ୍ମୃତିରକ୍ଷା କମିଟି ଗଠନ କରାଯାଇ ତା' ଜରିଆରେ ଐତିହାସିକ ସଂଗ୍ରାମୀ ପୀଠର କାର୍ଯ୍ୟକ୍ରମ ଗ୍ରହଣ କରିବା ସହିତ ଉକ୍ତ ସଂଗ୍ରାମୀ ପୀଠକୁ ଲୋକଲୋଚନକୁ ଅଣାଯାଇଛି । ଏପରିକି ଭଦ୍ରକ ଜିଲ୍ଲାର ସମସ୍ତ ସଂଗ୍ରାମୀ, ଲୋକ ପ୍ରତିନିଧି, ସମାଜସେବୀ ଓ ଜିଲ୍ଲାର ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀମାନଙ୍କୁ ଜାତୀୟ ଦିବସମାନଙ୍କରେ ସମବେତ କରାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି ଗାନ୍ଧୀ ସ୍ମୃତି ରକ୍ଷା କମିଟି ।

ଗାନ୍ଧିଜୀଙ୍କ ସ୍ୱପ୍ନକୁ ସଫଳ କରିବା ପାଇଁ ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆଠାରେ ଏକ ଗାନ୍ଧୀ ବାଳାଶ୍ରମ ଗୃହ ନିର୍ମାଣ ନାଁରେ ଦଶଲକ୍ଷ ଟଙ୍କା ମଞ୍ଜୁର ହେବା ଜାଣି ଏ ଅଞ୍ଚଳବାସୀଙ୍କ ମନରେ ବିଶେଷ ଆନନ୍ଦ ଉଲ୍ଲାସ ଖେଳି ଯାଇଥିଲା ଓ ଜିଲ୍ଲାପାଳ, ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ, ଜିଲ୍ଲାର ସମସ୍ତ ସ୍ୱାଧୀନତା ସଂଗ୍ରାମୀ, ବହୁ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ଗୃହ ନିର୍ମାଣ ପାଇଁ ଶୁଭ ଦେବା ଏ ଅଞ୍ଚଳରେ ଚହଳ ସୃଷ୍ଟି କରିଥିଲା । ଉକ୍ତ ଗୃହ ଶୁଭ ଦେବାର ଏକ ମାସ ପରେ ଚାରବାଟିଆଠାରେ ଗାନ୍ଧୀ ବାଳାଶ୍ରମ ଗୃହ ନିର୍ମାଣ କରାନଯାଇ ଟଙ୍କା ଫେରିଗଲା । ଗାନ୍ଧୀ ବାଳାଶ୍ରମ ଏଠାରେ ନିର୍ମାଣ ହୋଇଥିଲେ ଏ ଅଞ୍ଚଳର ଅସହାୟ ପିଲାମାନେ ବିଶେଷ ଉପକୃତ ହୋଇଥାନ୍ତେ ।

ଚାରବାଟିଆଠାରେ ଗାନ୍ଧୀ ପ୍ରତିମୂର୍ତ୍ତି ଉନ୍ମୋଚିତ ନହେଲେ, ଚାରବାଟିଆ ଓ ପିରାହାଟ ରାସ୍ତାକୁ ଗୋପବନ୍ଧୁ ନାମରେ ନାମିତ କରା ନଗଲେ ଓ ମହତାବଙ୍କ ନାମରେ ଏକ ଜାତୀୟ ଲାଇବ୍ରେରୀ ଖୋଲା ନଗଲେ ଗାନ୍ଧୀ, ଗୋପବନ୍ଧୁ ଓ ମହତାବଙ୍କ ପ୍ରତି ଏକ ଅମର୍ଯ୍ୟାଦା

ହେବା ସହିତ ଦେଶର ସ୍ୱାଧୀନତା ସଂଗ୍ରାମର ଇତିହାସ ଅପୂରଣୀୟ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ଯେଉଁମାନଙ୍କର ଅସୀମ ତ୍ୟାଗ ଓ ବଳିଦାନ ଫଳରେ ଦେଶ ସ୍ୱାଧୀନ ହେଲା, ସେମାନେ ଦେଶ ଓ ଜାତି ନିକଟରେ ଚିରସ୍ମରଣୀୟ ହୋଇ ରହିବେ । ସେମାନଙ୍କର ଦେଶପ୍ରେମ ଓ ଜାତୀୟତାବୋଧ କାର୍ଯ୍ୟକ୍ରମ ଲୋକଲୋଚନକୁ ଅଣାଗଲେ ଦେଶର ଯୁବ ସମାଜ ସେମାନଙ୍କ ଦେଶ ପ୍ରେମରେ ଅନୁପ୍ରାଣୀତ ହୋଇ, ଆଗାମୀ ଦିନରେ ଦେଶର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ସହିତ ଦେଶ ଗଠନ କରିବା ଦିଗରେ ସହାୟକ ହେବେ ।

ଚିର ଅବହେଳିତ ଐତିହାସିକ ସଂଗ୍ରାମୀ ପୀଠ ଚାରବାଟିଆ ଗ୍ରାମ ପ୍ରତି ସରକାର ଗୁରୁତ୍ୱ ଦେବା ସଂଗେସଂଗେ ଆବଶ୍ୟକୀୟ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ଗାନ୍ଧୀ ସ୍ମୃତିରକ୍ଷା କମିଟିର କର୍ମକର୍ତ୍ତା ଓ ସଭ୍ୟ ବୃନ୍ଦ ତଥା ଏ ଅଞ୍ଚଳବାସୀମାନେ ସରକାରଙ୍କଠାରେ ନିବେଦନ କରୁଛନ୍ତି ।

ବିରସ
ବାସୁଦେବପୁର, ଭଦ୍ରକ

# ନୂଆପଡ଼ା ଜିଲ୍ଲାରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ପିଆଜ ଚାଷରେ ସ୍ୱ-ଉପାର୍ଜନକ୍ଷମ କରାଯାଇପାରିଛି



ସ୍ୱତନ୍ତ୍ର ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ ସ୍ୱରୋଜଗାର ଯୋଜନାରେ ନୂଆପଡ଼ା ଜିଲ୍ଲାର ଗ୍ରାମାଞ୍ଚଳ ଗରିବ ଶ୍ରେଣୀର ଲୋକମାନଙ୍କ ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ବିଭିନ୍ନ ଆୟକାରୀ ଧନ୍ଦା ବା ବୃତ୍ତିରେ ସେମାନଙ୍କ ନିଜ ଗ୍ରାମରେ ସ୍ୱ-ଉପାର୍ଜନକ୍ଷମ ହେବାପାଇଁ ବ୍ୟବସ୍ଥା କରାଯାଇଅଛି । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ଏହି ଯୋଜନା ଅନ୍ତର୍ଗତ ଆର୍ଥିକ ସହାୟତା ହିତାଧିକାରୀମାନଙ୍କୁ ଯୋଗାଇ ଦିଆଯାଉଅଛି । ଏହି ଯୋଜନାରେ ୨୦୦୪-୦୫ ଆର୍ଥିକ ବର୍ଷରେ ମୋଟ ୪୧ ଲକ୍ଷ ଟଙ୍କା ଜିଲ୍ଲା ଯୋଗାଣ ଓ ବିପଣନ ସୋସାଇଟିକୁ କାର୍ଯ୍ୟାନ୍ୱୟନ ପାଇଁ ଯୋଗାଇ ଦିଆଯାଇଥିଲା । ଉକ୍ତ ଆର୍ଥିକ ସହାୟତାରେ ଜିଲ୍ଲାର ଗ୍ରାମାଞ୍ଚଳର ବିଶେଷ କରି ଆର୍ଥିକ ଦୁର୍ବଳ ଶ୍ରେଣୀ ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ପାଇଁ ସ୍ୱରୋଜଗାର ଧନ୍ଦାରେ ଆବର୍ତ୍ତନ ପାଣ୍ଠି ଆକାରରେ ଋଣ ସହାୟତା ଯୋଗାଇ ଦିଆଯାଇ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରାଯାଇଅଛି । ବିଶେଷ କରି ପିଆଜ ଚାଷ ଉପରେ ଧ୍ୟାନ ଦିଆଯାଇ ୨୦୦୪-୦୫ ବର୍ଷରେ ଜିଲ୍ଲାର ବିଭିନ୍ନ ବ୍ଲକ୍ ଅଞ୍ଚଳରେ ୧୯୦ ଗୋଟି ମହିଳା ସ୍ୱୟଂ ସହାୟକ ଦଳଙ୍କୁ ଏଥିରେ ସାମିଲ କରି ମୋଟ ୧୦୩୨୦ ମେଟ୍ରିକ୍ ଟନ୍ ପିଆଜ ଉତ୍ପାଦନ କରାଯାଇପାରିଅଛି । ଚାଷୀମାନଙ୍କର ଉତ୍ପାଦିତ ପିଆଜଗୁଡ଼ିକ ଜିଲ୍ଲା ଯୋଗାଣ ଓ ବିପ୍ଣନ ସୋସାଇଟି ଦ୍ୱାରା ଉଚିତ ଦରରେ ଚାଷୀମାନଙ୍କର ଲାଭ ପାଇଁ ୧୬୦ ଗୋଟି ପିଆଜ ସଂରକ୍ଷଣ ଗୃହ ଜିଲ୍ଲାରେ ନିର୍ମାଣ କରାଯାଇଅଛି । ଏଥିରେ ଉତ୍ପାଦିତ ପିଆଜକୁ ତିନିମାସ ପାଇଁ କେଜି ପ୍ରତି ୨ ଟଙ୍କା ମୂଲ୍ୟରେ ସଂରକ୍ଷଣ କରାଯିବା ପାଇଁ ବିହିତ ବ୍ୟବସ୍ଥା କରାଯାଇଛି । ଯାହାକି ତିନି ମାସ ପରେ କେ.ଜି. ପ୍ରତି ୮ ଟଙ୍କାରୁ ଉର୍ଦ୍ଧ୍ୱ ଦରରେ ବିକ୍ରୀକରି ହିତାଧିକାରୀ ଚାଷୀ ଅଧିକ ଲାଭ ପାଇପାରିବା ସହିତ ନିଜର ଆର୍ଥିକ ସ୍ଥିତି ସୁଦୃଢ଼ କରିବା ଦିଗରେ ଲକ୍ଷ୍ୟଧାର୍ଯ୍ୟ କରାଯାଇପାରିଛି । ଏହି ପିଆଜ ଚାଷରେ ମହିଳାମାନଙ୍କୁ ସାମିଲ କରାଯାଇ ପ୍ରତ୍ୟେକ ଦଳଙ୍କୁ ୨୫ ହଜାର ଟଙ୍କାର ଆର୍ଥିକ ସହାୟତା ରିଭଲବିଂ ପାଣ୍ଠି ଆକାରରେ ଜିଲ୍ଲା ଯୋଗାଣ ଓ ବିପ୍ଣନ ସୋସାଇଟିର ତତ୍ତ୍ୱାବଧାନରେ ଯୋଗାଇ ଦିଆଯାଇଅଛି । ପିଆଜ ଚାଷରେ ମହିଳାମାନଙ୍କ ଦକ୍ଷତା ବୃଦ୍ଧିପାଇଁ ଉଦ୍ୟାନ କୃଷି ବିଭାଗ ଦ୍ୱାରା ବିଭିନ୍ନ ସମୟରେ ପ୍ରଶିକ୍ଷଣ ପ୍ରଦାନ କରାଯାଇ ସେମାନଙ୍କୁ ଅଧିକରୁ ଅଧିକ କର୍ମଠ ହେବାରେ ପରାମର୍ଶ ଦିଆଯାଇଅଛି । ଏହିପରି ଅନ୍ୟାନ୍ୟ ପନିପରିବା ଚାଷ କରିବା ଦିଗରେ ମହିଳାମାନଙ୍କୁ ଉତ୍ସାହିତ କରାଯାଇଛି । ଯାହାକି ବାହାରକୁ ଦାଦନ ଖଟିବାକୁ ନଯାଇ ନିଜ ଗ୍ରାମରେ ରହି ଏବେ ସ୍ୱ-ଉପାର୍ଜନକ୍ଷମ ହୋଇପାରିଛନ୍ତି ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୂଆପଡ଼ା

# ପାଇକ ଆଖଡ଼ାର କିମ୍ବଦନ୍ତୀ ପୁରୁଷ - ସୁବଳ ପାଇକରାୟ

ବ୍ରଜ ପାଇକରାୟ

ଏକଦା ଉତ୍ତର ଦିଗରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ, କୃଷ୍ଣା ଓ କାବେରୀ ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ବିସ୍ତୃତ ଅଞ୍ଚଳ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଉତ୍କଳର ଇତିହାସ ପ୍ରସିଦ୍ଧ ସମ୍ରାଟ ଦିଗ୍‌ବିଜୟୀ ଖାରବେଳ ଏବଂ ସମ୍ରାଟ କପିଳେନ୍ଦ୍ର ଦେବ ବୀର ପାଇକ ବାହିନୀର ସହାୟତାକ୍ରମେ ଭାରତବର୍ଷର ଅଧିକାଂଶ ଅଞ୍ଚଳ ଦଖଲ କରିବା ସହ ଓଡ଼ିଶାର ବିଜୟ ବୈଜୟନ୍ତୀ ଉଡ଼ାଇବାକୁ ସମର୍ଥ ହୋଇଥିଲେ ।



୧୫୬୮ ମସିହାରେ ଉତ୍କଳର ଶେଷ ସ୍ୱାଧୀନ ହିନ୍ଦୁରାଜା ତେଲେଙ୍ଗା ମୁକୁନ୍ଦଦେବ ଗୋହିରା ଟିକିରି ରଣକ୍ଷେତ୍ରରେ ବଂଗଳାର ସେନାପତି କଳାପାହାଡ଼ ଦ୍ୱାରା ପରାସ୍ତ ଓ ନିହତ ହେବାପରେ ଓଡ଼ିଶାର ସ୍ୱାଧୀନତା ରବି ଅସ୍ତମିତ ହେଲେ । ୧୫୭୦ ମସିହାରେ ଭୋଇବଂଶୀୟ ରମେଇ ରାଉତରାୟ, ଗଜପତି ରାମଚନ୍ଦ୍ର ଦେବ ପ୍ରଥମ ନାମ ଧାରଣ କରି ଖୋର୍ଦ୍ଧାର ବରୁଣେଇ ପର୍ବତ ପାଦ ଦେଶରେ ଖୋର୍ଦ୍ଧାଦୁର୍ଗ ନିର୍ମାଣ କରିବା ସହ ଏକ ସୁସଂଗଠିତ, ଶୃଙ୍ଖଳିତ ଏବଂ ଶକ୍ତିଶାଳୀ ପାଇକ ବାହିନୀ ଗଠନ ନିମିତ୍ତ ଖୋର୍ଦ୍ଧା ଅଂଚଳରେ ପାଇକ ଆଖଡ଼ାଗୁଡ଼ିକର ପୁନର୍ବିନ୍ୟାସ ଦିଗରେ ବିଶେଷ ଧ୍ୟାନ ଦେଇଥିଲେ ।

୧୮୧୭ ମସିହାରେ ସଂଗଠିତ ଐତିହାସିକ ପାଇକ ବିଦ୍ରୋହରେ ଖୋର୍ଦ୍ଧାର ବୀର ପାଇକଗଣ ଦେଶ ମାତୃକାର ସ୍ୱାଭିମାନ ଓ ସ୍ୱାଧୀନତାର ସୁରକ୍ଷା ନିମିତ୍ତ ବ୍ରିଟିଶ ସେନା ସହ ଲୋମହର୍ଷଣକାରୀ ସଶସ୍ତ୍ର ସଂଗ୍ରାମ କରି ପ୍ରାଣବଳି ଦେଇଥିଲେ । ଏପରିକି ଇଂରେଜ ଐତିହାସିକମାନେ ମଧ୍ୟ ଖୋର୍ଦ୍ଧାର ବୀରପାଇକମାନଙ୍କ ଶୌର୍ଯ୍ୟ, ସ୍ୱାଭିମାନ, ଦେଶପ୍ରୀତି ଏବଂ ସମର କୌଶଳର ଭୂୟସୀ ପ୍ରଶଂସା କରିଯାଇଛନ୍ତି ।

ଓଡ଼ିଶାର ସାମରିକ ଇତିହାସରୁ ସୂଚନା ମିଳେ ଯେ ୧୮୧୭ ମସିହା ପାଇକ ବିଦ୍ରୋହ ସମୟରେ ଖୋର୍ଦ୍ଧା ଗଜପତି ରାଜାଙ୍କ ସୈନ୍ୟ ବାହିନୀରେ ୮୦ ହଜାର ପାଇକ ଏବଂ ଖୋର୍ଦ୍ଧା ଅଞ୍ଚଳରେ ୭୪ଟି ଗଡ଼ ବିଦ୍ୟମାନ ଥିଲା । ସ୍ୱର୍ଗତଃ କହ୍ନେଇ ଚଂପତିରାୟଙ୍କ ରଚିତ 'ପାଇକ ଖେଦା' ପୁସ୍ତକ ଅନୁଯାୟୀ ପାଇକ ଜାତିର ଯୁବକମାନେ ୨୦ ବର୍ଷ ବୟସରେ ସୈନ୍ୟବାହିନୀରେ ସାମିଲ ହୋଇ ୪୦ ବର୍ଷ ବୟସ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । ୪୦ ବର୍ଷ ବୟସ ପରେ ସୈନ୍ୟ ବାହିନୀରୁ ଅବସର ନେଇ ଦୁର୍ଗରକ୍ଷା କାର୍ଯ୍ୟରେ ନିୟୋଜିତ ହେଉଥିଲେ ଏବଂ 'ପାଇକ ଆଖଡ଼ା'ର ପ୍ରଶିକ୍ଷକ ଭାବେ ପାଇକ ଜାତିର ଯୁବକମାନଙ୍କୁ ଯୁଦ୍ଧ ବିଦ୍ୟା ତାଲିମ ଦେଉଥିଲେ । ପାଇକ ଆଖଡ଼ା ମାଧ୍ୟମରେ ଖୋର୍ଦ୍ଧା ଅଞ୍ଚଳର ବିଭିନ୍ନ ପାଇକ ଜନବସତି ତଥା ଗଡ଼ମାନଙ୍କରେ ନିୟମିତ ଯୁଦ୍ଧ ବିଦ୍ୟାର ଅଭ୍ୟାସ କରାଯାଉଥିଲା ।

ଦୁର୍ଦ୍ଧର୍ଷ ପାଇକ ବାହିନୀର ବୀରତ୍ୱର କାହାଣୀ ସଂପ୍ରତି ଇତିହାସ ପୃଷ୍ଠାର ବିଷୟବସ୍ତୁରେ ପରିଣତ ହୋଇଯାଇଥିଲେ ମଧ୍ୟ ଏବେ ବି ସେଇ ବୀର ଜାତିର ଜୀର୍ଣ୍ଣ କଙ୍କାଳ ତଳେ ବିପ୍ଳବର ବହ୍ନି ନିର୍ବାପିତ ହୋଇନାହିଁ । ଦୁର୍ଦ୍ଧାନ୍ତ ପାଇକମାନଙ୍କ ବଂଶଧରଗଣ ଚରମ ଆର୍ଥିକ ଦୁରବସ୍ଥାରେ ଜର୍ଜରିତ ହୋଇ ଆଧୁନିକ ଶିକ୍ଷା ଓ ପ୍ରଶାସନଠାରୁ ଦୂରେଇ ଯାଇଥିଲେ ମଧ୍ୟ ଓଡ଼ିଶାର ପ୍ରାଚୀନ ସମର କଳାକୁ 'ପାଇକ ଆଖଡ଼ା' ଜରିଆରେ ବଞ୍ଚାଇ ରଖିବା ପାଇଁ ଅବିରତ ପ୍ରୟାସ ଅବ୍ୟାହତ ରଖିଛନ୍ତି ।

ଖୋର୍ଦ୍ଧା ଅଞ୍ଚଳରେ ବିଦ୍ୟମାନ ଥିବା ବିଭିନ୍ନ ଗଡ଼ମାନଙ୍କ ମଧ୍ୟରେ ଖୋର୍ଦ୍ଧା ସହରଠାରୁ ୨୦ କି.ମି. ଦୂର ପଶ୍ଚିମ ଦିଗରେ ଅବସ୍ଥିତ ଗଡ଼ମାଣତୀର ଗ୍ରାମ ଅତୀତକାଳରୁ ମାଣିତ୍ରୀଗଡ଼ ଭାବେ ସୁବିଦିତ । ସଂଖ୍ୟା ଗରିଷ୍ଠ ପାଇକ ବା ଖଣ୍ଡାୟତ ଜାତିକୁ କେନ୍ଦ୍ର କରି ଉକ୍ତ ଗଡ଼ଟି ପ୍ରତିଷ୍ଠିତ । ଏକଦା ଖୋର୍ଦ୍ଧା ଭୋଇ ବଂଶୀୟ ଗଜପତି ରାଜା ପୁରୁଷୋତ୍ତମ ଦେବ ବାରମ୍ବାର ମୁସଲମାନ ଆକ୍ରମଣରେ ଅତିଷ୍ଠ ଓ

ବିବ୍ରତ ହୋଇ ରାଜପରିବାରର ସୁରକ୍ଷା ନିମିତ୍ତ ଖୋର୍ଦ୍ଧାଗଡ଼ ପରିତ୍ୟାଗ କରି ମାଣିତ୍ରୀଗଡ଼ରେ ଅବସ୍ଥାନ କରିଥିବା ସମ୍ବନ୍ଧରେ ଇତିହାସ ସାକ୍ଷ୍ୟ ଦିଏ । ଗଜପତି ରାଜା ଅବସ୍ଥାନ କରୁଥିବା ଗୃହର ଭଗ୍ନାଂଶ ଓ ଶୂନ୍ୟ ପ୍ରାନ୍ତର ଅଦ୍ୟାପି ଜନମୁଖରେ ରାଜକଚେରୀ ଭାବେ ସୁପରିଚିତ । ରାଜକଚେରୀ ସାମ୍ନାରେ ନିର୍ମିତ ଏକ ଚାଳଛପର ଗୃହ ମଧ୍ୟରେ ସଂପ୍ରତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପୂଜା ପାଉଛନ୍ତି । ଜନଶ୍ରୁତିରୁ ଜଣାଯାଏ ଯେ ଗଜପତି ପୁରୁଷୋତ୍ତମ ଦେବଙ୍କ ସେବାପୂଜା ପାଇଁ ଜଗନ୍ନାଥଙ୍କ ଉକ୍ତ ଆସ୍ଥାନ ନିର୍ମିତ ହୋଇଥିଲା ।

୧୮୧୭ ମସିହାରେ ସଂଗଠିତ ଇତିହାସ ପ୍ରସିଦ୍ଧ ପାଇକ ବିଦ୍ରୋହରେ ମାଣିତ୍ରୀଗଡ଼ର ପାଇକମାନେ ସକ୍ରିୟ ଭୂମିକା ଗ୍ରହଣ କରିଥିବାର ଜଣାଯାଏ । ଉକ୍ତ ଗଡ଼ର ପାଇକ ଯୁବକମାନଙ୍କୁ ଓଡ଼ିଶାର ପ୍ରାଚୀନ ସମରକଳାରେ ଉପଯୁକ୍ତ ତାଲିମ ପ୍ରଦାନ ନିମିତ୍ତ ଆଜକୁ ୧୦୦ ବର୍ଷ ତଳେ ଗଡ଼ମାଣିତ୍ରୀସ୍ଥିତ ମାର୍ଥାପଦା, ଆଖଡ଼ା ତୋଟା ଏବଂ ନୂଆପୋଖରୀ ସନ୍ନିକଟ ବିଶାଳ ବଟବୃକ୍ଷର ଛାୟାତଳେ ନିୟମିତ 'ପାଇକ ଆଖଡ଼ା' ଅଭ୍ୟାସ କରାଯାଉଥିଲା ।

ଆଜିଠାରୁ ୮୪ ବର୍ଷ ପୂର୍ବେ ମାଣିତ୍ରୀଗଡ଼ର ତତ୍କାଳୀନ ପାଇକ ଗୁରୁ ସ୍ୱର୍ଗତଃ ମୀନ ପଶ୍ଚିମ କବାଟ ଓ ଅଚ୍ୟୁତ ବଳିୟାରସିଂହଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶ୍ରୀଯୁକ୍ତ ସୁବଳ ପାଇକରାୟ, ଅରକ୍ଷିତ ଦଳସିଂହରାୟ, ଯୋଗୀ ରଣସିଂହ ନାରାୟଣ ମଂଗରାଜ, ହାତୀ ପାଇକରାୟ, ଆନନ୍ଦ ପାଇକରାୟ, ଦିବାକର ବଳିୟାରସିଂହ, କୁବେର ଛୋଟରାୟ, ଭାଗବତ ଜେନା ଏବଂ ଅନ୍ତର୍ଯ୍ୟାମୀ ଜେନା ପ୍ରମୁଖ ପାଇକ ସମର କୌଶଳ ସମ୍ବନ୍ଧରେ ପ୍ରଶିକ୍ଷଣ ଗ୍ରହଣ କରୁଥିଲେ ।

ପାଇକ ରଣକୌଶଳ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ହାସଲ କରିଥିବା ଏବଂ ୧୯୧୨ ମସିହା ଅପ୍ରେଲ ୨୪ ତାରିଖରେ ଗଡ଼ମାଣିତ୍ରୀ ଗ୍ରାମର ସ୍ୱର୍ଗତଃ ଅନନ୍ତ ପାଇକରାୟଙ୍କ କନିଷ୍ଠ ପୁତ୍ର ଭାବେ ଭୂମିଷ୍ଠ ହୋଇଥିବା ଶ୍ରୀଯୁକ୍ତ ସୁବଳ ପାଇକରାୟଙ୍କ ବ୍ୟତୀତ ଉପରୋକ୍ତ ସମସ୍ତ ଶିକ୍ଷାର୍ଥୀଗଣ ଇତିମଧ୍ୟରେ ଇହଧାମ ତ୍ୟାଗ କରି ପରଲୋକ ପ୍ରାପ୍ତ ହୋଇସାରିଛନ୍ତି ।

ବର୍ଷୀୟାନ ପାଇକ ଗୁରୁ ଶ୍ରୀଯୁକ୍ତ ସୁବଳ ପାଇକରାୟଙ୍କଠାରୁ ପ୍ରାପ୍ତ ସୂଚନା ଅନୁଯାୟୀ ପାଇକ ଆଖଡ଼ାଗୁଡ଼ିକରେ ବୋତ ଶୁନ, ସମ୍ପେଇ (ଭୂଇଁରେ ହାତ ନ ଲଗାଇ ମାରୁଥିବା ଶୁନ), କାବୁଲି (ଭୂଇଁରେ ହାତ ଲଗାଇ ଏକାଦିକ୍ରମେ ଚାରି ପାଞ୍ଚୋଟି ପଛକୁ ପଛକୁ ମାରୁଥିବା ଶୁନ), କରୁଆ ଶୁନ (ଭୂଇଁରେ ହାତ ଲଗାଇ ମାରୁଥିବା କରିକିଆ ଶୁନ), ଥାକ ଫୋପଡ଼ା, ଏକ ଚିପି ଶୁନ (ଗୋଟିଏ ନିର୍ଦ୍ଦିଷ୍ଟ ବୃତ୍ତ ମଧ୍ୟରେ ଥାଇ ଭୂଇଁରେ ହାତ ନ ଲଗାଇ ଶାରୀରିକ ଭାରସାମ୍ୟ ରକ୍ଷାପୂର୍ବକ ପଛୁଆ ଶୁନ ମାରି ପୁନଶ୍ଚ ଉକ୍ତ ବୃତ୍ତ ମଧ୍ୟରେ ଅବସ୍ଥାନ କରିବା), ଗଡ଼ି ଫୋପଡ଼ା (ଏକାଦ୍ରିକ୍ରମେ ପାଞ୍ଚରୁ ସାତଟି ଆଗକୁ ଆଗକୁ ମାରୁଥିବା ଶୁନ), ବେତ ମୁଣ୍ଡୁଳା ଭିତର ଦେଇ ମରାଯାଉଥିବା ଥାକ ଫୋପଡ଼ା ଶୁନ, ବାହୁଶୁନ (ଜଣେ ବଳଶାଳୀ ପାଇକଙ୍କ ଦୁଇ ବାହୁ ଉପରେ ଦଣ୍ଡାୟମାନ ହୋଇ ପଛପଟକୁ ଶୁନ ମାରି ଭୂଇଁ ଉପରେ ଛିଡ଼ା ହେବା), ହନୁମନ୍ତିଆ (ଦୁଇ ଗୋଡ଼ ଉପରକୁ ଟେକି ଦୁଇ ହସ୍ତ ସାହାଯ୍ୟରେ ଚାଲିବା) ଏବଂ ଦଣ୍ଡ ବୈଠକ ମାରିବା ଇତ୍ୟାଦି ପ୍ରତିଦିନ ପାଇକ ଆଖଡ଼ାଗୁଡ଼ିକରେ ଅଭ୍ୟାସ କରାଯାଉଥିଲା । ଏତଦ୍‌ବ୍ୟତୀତ ବନାଟି ଚାଳନା, ମୁଦ୍‌ଗର ଚାଳନା, ପଟିକିଆ ଓ ଦୁଇପଟିଆ ତଲୱାର ଚାଳନା, ଚାରି ପାହୁଲ (ଚତୁଃପାର୍ଶ୍ୱକୁ ପାଦ ପକାଇ ତଲୱାର ଚାଳନା) ପଟାବାଡ଼ି ଖେଳ (ଯଥା- ଚାରିବାଡ଼ି, ହାଣକାଟ, ସପ୍ତଘର କଇଞ୍ଚ, ମେଣ୍ଢା ଲଢ଼େଇ) ଇତ୍ୟାଦିର ପ୍ରଶିକ୍ଷଣ ବିଶେଷ ଉଲ୍ଲେଖଯୋଗ୍ୟ ।

ପ୍ରତି ପାଇକ ଆଖଡ଼ାସ୍ଥଳରେ ଭୈରବ ମୂର୍ତ୍ତି ସ୍ଥାପନ କରାଯାଇଥାଏ । ପାଇକ ରଣକୌଶଳ ଅଭ୍ୟାସ ପୂର୍ବରୁ ଶିକ୍ଷାର୍ଥୀ ପାଇକଗୁରୁ ଏବଂ ଭୈରବମୂର୍ତ୍ତି ଉଭୟଙ୍କୁ ପ୍ରଣାମ ଜଣାଇ ପ୍ରଶିକ୍ଷଣ ଗ୍ରହଣ କରିଥାଆନ୍ତି । ସାଧାରଣତଃ ଗ୍ରୀଷ୍ମଋତୁର ଦ୍ୱିପ୍ରହର ବା ମଧ୍ୟାହ୍ନ ସମୟରେ ପାଇକ ସମରକଳା ଅଭ୍ୟାସ କରାଯାଇଥାଏ ଏବଂ ପାଇକ ଆଖଡ଼ା ସମ୍ବନ୍ଧରେ ସାଧାରଣ ଜ୍ଞାନ ରହିଥିବା ହରିଜନ (ହାଡ଼ି) ଜାତିର ବାଦ୍ୟକାରମାନେ ଢୋଲ ସାହାଯ୍ୟରେ ରଣବାଦ୍ୟ ବାଦନ କରିଥାଆନ୍ତି । ରଣବାଦ୍ୟର ତାଳେ ତାଳେ ପାଇକ ଆଖଡ଼ାରେ ବିଭିନ୍ନ ସମର କୌଶଳ ଅଭ୍ୟାସ କରାଯାଇଥାଏ ଏବଂ ଶେଷରେ ଶିକ୍ଷାର୍ଥୀମାନେ ଖଣ୍ଡା, ତଲୱାର, ବାଙ୍କଛୁରୀ, ମୁଦ୍‌ଗର ଏବଂ ପଟାବାଡ଼ି ଧାରଣପୂର୍ବକ ବୀରତ୍ୱ ବ୍ୟଞ୍ଜକ ରଣନୃତ୍ୟ କରିଥାଆନ୍ତି ।

ପାଇକ ସମରକଳାରେ ବିଶେଷ ପାରଦର୍ଶିତା ହାସଲ କରିଥିବା ଶ୍ରୀଯୁକ୍ତ ସୁବଳ ପାଇକରାୟ ୧୯୨୨ ମସିହାଠାରୁ ୧୯୩୦ ମସିହା ପର୍ଯ୍ୟନ୍ତ ଦୀର୍ଘ ଆଠବର୍ଷକାଳ ପାଇକ ଆଖଡ଼ାରେ ପ୍ରଶିକ୍ଷଣ ଗ୍ରହଣ କରି ପ୍ରଗାଢ଼ ନିଷ୍ଠା ଓ ସାଧନା ବଳରେ ବିଭିନ୍ନ ଦୁଃସାହସିକ ଶାରୀରିକ ସମର କୌଶଳ, ପଟାବାଡ଼ି ଖେଳ ଏବଂ ତଲୱାର ଚାଳନାରେ ସ୍ୱତନ୍ତ୍ର ଦକ୍ଷତାର ଅଧିକାରୀ ହୋଇପାରିଥିଲେ ।

ଅତୀତରେ ଖଣ୍ଡାୟତ ବା କ୍ଷତ୍ରୀୟ ଜାତିର ବରବିବାହ ଶୋଭାଯାତ୍ରାରେ ଯୋଡ଼ା ମଶାଲ, ମଗର ମୁହାଁ ପାଲିଙ୍କି ଇତ୍ୟାଦିର ବ୍ୟବହାର ସହ ଅଶ୍ୱାରୋହୀ ପାଇକ, ବାଦ୍ୟକାର ଏବଂ ପାଇକ ଆଖଡ଼ା ଦଳ ମଧ୍ୟ ସାମିଲ ହେଉଥିଲେ । ବର ଶୋଭାଯାତ୍ରାର ସମ୍ମୁଖ ଭାଗରେ ପାଇକ ଆଖଡ଼ା ଦଳ ଦ୍ୱାରା ପାରମ୍ପରିକ ସମର କୌଶଳ ପ୍ରଦର୍ଶନ ତତ୍କାଳୀନ ସାମନ୍ତବାଦୀ ସମାଜରେ ଆଭିଜାତ୍ୟର ପ୍ରତୀକ ଭାବେ ବିବେଚନା କରାଯାଉଥିଲା ।

ଶ୍ରୀଯୁକ୍ତ ସୁବଳ ପାଇକରାୟ ତାଙ୍କର ଦୀର୍ଘ ଜୀବନକାଳ ମଧ୍ୟରେ ରାଜ୍ୟର ବିଭିନ୍ନ ସ୍ଥାନରେ ପାଇକ ଆଖଡ଼ା ସମରକୌଶଳ ପ୍ରଦର୍ଶନ କରିଥିଲେ ମଧ୍ୟ ରଣପୁର ରାଜବାଟି ଏବଂ ପୁରୀର

ଶ୍ରୀନଅରଠାରେ ପାଇକ ରଣକୌଶଳ ପ୍ରଦର୍ଶନ କରି ତତ୍କାଳୀନ ରଣପୁର ରାଜା ଏବଂ ପୁରୀ ଗଜପତି ରାଜାଙ୍କ ପ୍ରଶଂସା ଭାଜନ ହେବା ତାଙ୍କର ଜୀବନର ବିଶେଷ ସ୍ମରଣୀୟ ଘଟଣା ବୋଲି ଶ୍ରୀଯୁକ୍ତ ପାଇକରାୟ ଉଲ୍ଲେଖ କରନ୍ତି ।

ଶ୍ରୀଯୁକ୍ତ ପାଇକରାୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରଶିକ୍ଷଣପ୍ରାପ୍ତ ସର୍ବଶ୍ରୀ ରମେଶ ଚନ୍ଦ୍ର ପାଇକରାୟ, ହୃଷିକେଶ ଦଳସିଂହରାୟ ଏବଂ ନବକିଶୋର ସୁନ୍ଦରାୟ ପ୍ରମୁଖ ଯଥାକ୍ରମେ ଖଣ୍ଡା, ବାଙ୍କଛୁରୀ ଏବଂ ତଲଓ୍ୱାର ଚାଳନାରେ ଉଲ୍ଲେଖନୀୟ ଦକ୍ଷତା ହାସଲ କରିବା ବେଶ୍ ପ୍ରଣିଧାନଯୋଗ୍ୟ ।

ସାଂପ୍ରତିକ କାଳରେ ଯୁବକମାନଙ୍କ ମଧ୍ୟରେ କ୍ରମଶଃ ପାଇକ ଆଖଡ଼ା ଶିକ୍ଷା ପ୍ରତି ଆଗ୍ରହ କମି ଆସିବା ପରିଲକ୍ଷିତ ହେଉଛି । ଦୁର୍ଗାପୂଜା ବା ଦଶହରା ସମୟରେ ଖୋର୍ଦ୍ଧାର ବିଭିନ୍ନ ଗଡ଼ ଓ ପାଇକ ଜନବସତିମାନଙ୍କରେ କେବଳ ପୂର୍ବପୁରୁଷଙ୍କ ପରମ୍ପରା ରକ୍ଷା ପାଇଁ 'ପାଇକ ଆଖଡ଼ା ଖେଳ' ପ୍ରଦର୍ଶିତ ହେଉଛି ।

ପାଇକ ଆଖଡ଼ାକୁ ଜନମାନସରେ ଉଜ୍ଜୀବିତ କରି ରଖିବା ପାଇଁ ସରକାରୀ ସ୍ତରରେ ଉଦ୍ୟମ ନ ହେଲେ ଓଡ଼ିଶାର ଉକ୍ତ ପ୍ରାଚୀନ ସମରକଳା ବିଲୁପ୍ତ ହୋଇଯିବାର ସମ୍ଭାବନାକୁ ଏଡି ଦେଇ ହେବ ନାହିଁ ବୋଲି ସଂପ୍ରତି ୯୪ ବର୍ଷରେ ଉପନୀତ ବର୍ଷୀୟାନ ପାଇକଗୁରୁ ସୁବଳ ପାଇକରାୟ ମତବ୍ୟକ୍ତ କରନ୍ତି । ପାଇକ ଆଖଡ଼ା ପ୍ରତି ଉତ୍ସର୍ଗୀକୃତ ଉକ୍ତ କିମ୍ବଦନ୍ତୀ ପୁରୁଷ ବିଗତ ଦିନର ଗୌରବାବହ ସ୍ମୃତିକୁ ପାଥେୟ କରି ଯୁବସୁଲଭ ଉଦ୍ଦାମତା ନେଇ ଜୀବନଯାପନ କରିବା ସହ ପାଇକ ତରୁଣମାନଙ୍କର ପ୍ରେରଣାର ଉତ୍ସ ପାଲଟି ଯାଇଛନ୍ତି ।

ସରକାରୀ ଓକିଲ, ୩୪୨/ବି
ବରବାରି (ଜାଗମରା), ଭୁବନେଶ୍ୱର-୩୦

---



# ମୁଁ ଗାନ୍ଧୀ କହୁଛି ... ୨୬ ଜାନୁଆରୀ

ଓମ୍ ପ୍ରକାଶ ମହାପାତ୍ର

ମୁଁ ଗାନ୍ଧୀ କହୁଛି ସାଧାରଣତନ୍ତ୍ର ଦିବସ ଅବସରେ
ଆଉଥରେ ଦେଶ ସୁଧାର ଉଦ୍ଧାର କରିବା ଉଦ୍ଦେଶ୍ୟରେ ।
ରେ ଭାରତୀୟ ପଞ୍ଚାବନ ଯାଇ ଛପନ ପଶୁଛି ବୟସରେ
ତୁମ ଗଣତନ୍ତ୍ର, ପ୍ରଜାତନ୍ତ୍ର, ସାଧାରଣତନ୍ତ୍ର ଦିବସରେ ।
ମନେପଡ଼େ କେତେ ନିର୍ଯ୍ୟାତନା ବେଡ଼ି କୋରଡ଼ା ଫାଶୀ
ସତ୍ୟ ଅହିଂସା ସ୍ୱଦେଶୀ ଖୋଜେ ମୁଁ ବାସି ତିଆସି ।
ଏବେ ବି ଦେଖୁଛି ମଣିଷ ମଣିଷେ ଭେଦଭାବ ବେଶି
ହିନ୍ଦୁ ମୁସଲମାନ ଖ୍ରୀଷ୍ଟିଆନ ମଧ୍ୟେ ଝଲକେ ରକତ ମସୀ ।
ଗାଁ ଛାଡ଼ି ସବୁ ସହରେ ଛୁଟନ୍ତି ଚାକଚକ୍ୟ ଦେଖି
ଗାଁର ଦେଶରେ ଗାଁ ମର୍ଯ୍ୟାଦା କି ଦେଖିବ ଏ ଆଖି !
କୁଟି କାଟି ଖାଇ ପିନ୍ଧା ସହଜ ସରଳ ଜୀବନ କାହିଁ
ବିଦେଶୀ ସଭ୍ୟତା ଦେଲାଣି ଚିପିଚାପି ରକତ ଦୁହିଁ ।
ନାଲିପାଣି ଖିଆ ମଦୁଆ ମହୁଲି ଚାଉଳି ଠାଣି
ଜୀବନ ଯାଉଛି ଶୋଇବସି ମୁଁ ତ ପାରୁନି ଗଣି ।
ଲାଞ୍ଚ ମିଛ ଠକ ଭଣ୍ଡ ଏ ମୁଣ୍ଡ ସେମୁଣ୍ଡ ତୁମରି ଦାଣ୍ଡ
ଛାତି ଫାଡ଼ି କାନ୍ଦେ ଦେଖି ଶୁଣି ପଢ଼ି ଖବର କାଗଜଖଣ୍ଡ ।
ହିଂସା ଆତଙ୍କବାଦର ଗୁଡୁମ୍ ଗୁଡୁମ୍ ଶବଦ ଭାଙ୍ଗୁଛି ନିଦ
ସଂଜମ ହାରି ଲୋଭ ନସମ୍ଭାରୀ ଏଡସ୍ ଖାଉଛି ରକତ ମେଦ ।
ରାମ ରାଜ୍ୟ ମୋର ଆକାଶ କଇଁଆ ଚିଲିକା ମାଛ
ଜାତି ନନ୍ଦିଘୋଷ ବିଭତ୍ସ ବେଶ ସ୍ୱାର୍ଥ ଦୁର୍ନୀତି କରୁଛି ଗ୍ରାସ ।
ଧର୍ମେ ଧର୍ମଯୁଦ୍ଧ ଜାତିଭାଷା ସୀମା ବିବାଦେ କ୍ଷୁବ୍‌ଧ
ଏଇତ ନଥିଲା ତୁମ ସମ୍ବିଧାନେ ଆବଦ୍ଧ ବା ଲିପିବଦ୍ଧ ।
ଯୁବକ ତୁମର ନିରାଶ ନିଶାଗ୍ରସ୍ତର ଆଦରେ ସନ୍ତ୍ରାସବାଦର
ଭାରତୀୟ ଐକ୍ୟ ସଂସ୍କୃତି, ଭବିଷ୍ୟ ଅନ୍ଧକାର ସୀମାର ।
କେଉଁ ଭରଷାରେ ସ୍ୱାଧୀନତା ଦେଲି ଖୋଳି ସେ ଗୋରା କବର
ମରିନି ହଜିନି ତ୍ରିରଙ୍ଗା ଇତିହାସ ଶ୍ରେଷ୍ଠ ଶହୀଦ୍ ଅମର ।
ଧରି ଧୈର୍ଯ୍ୟ ସାହସ ତ୍ୟାଗ ଧନଞ୍ଜୟର ଗୀତା ଉପଦେଶ ତୁମର
ଉଦ୍ଧାର ଉଦ୍ଧାର ଏଇ ଦେଶ ତୁମ ସୁଜଳା ସୁଫଳା ଶସ୍ୟ ଶାମଳାର ।
ମୁଁ ଗାନ୍ଧୀ କହୁଛି ମିଛ କହୁଛି ଆଉ ଏକବାର
ଶୁଣି କାର୍ଯ୍ୟକର ଆଉଥରେ ପଛେ ଗୁଳି ମାରୁଛ ମାର ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



# ଏକାମ୍ର କ୍ଷେତ୍ର ଭୁବନେଶ୍ୱର

ପଣ୍ଡିତ ଚାରଣ ନରହରି ଦାଶ

ଆର୍ଯ୍ୟାବର୍ତ୍ତ ଭାରତ ଖଣ୍ଡ, ଜମ୍ବୁ ଦ୍ୱୀପରେ ଅବସ୍ଥିତ ସମସ୍ତ ଶୈବ କ୍ଷେତ୍ର ମଧ୍ୟରୁ ପରମ ରହସ୍ୟମୟ, ଗୋପନୀୟ, ପ୍ରାଚୀନତମ ଶୈବ କ୍ଷେତ୍ର ରୂପେ ଏକାମ୍ର କ୍ଷେତ୍ର ଭୁବନେଶ୍ୱର ସାରା ଭାରତ ତଥା ବିଶ୍ୱରେ ସୁପରିଚିତ ଓ ସର୍ବଜନବିଦିତ । ଏହି କ୍ଷେତ୍ରର ଅନ୍ୟନାମ କୃତ୍ତିବାସ କ୍ଷେତ୍ର । ଏହି କ୍ଷେତ୍ରର ନାମ ଶିଳାଖଣ୍ଡରେ 'କୃତ୍ତିବାସ କଟକ' ବୋଲି ପରିଲକ୍ଷିତ ହୁଏ ।

ସ୍କନ୍ଦ ପୁରାଣ ମହେଶ୍ୱର ଖଣ୍ଡରେ ଉଲ୍ଲିଖିତ ଅଛି -

କୃତ୍ତିବାସାଭିଧଂ କ୍ଷେତ୍ର ମୁକ୍ତଂତେ ବେଦ ବିତ୍ତମାଃ
ଯତ୍କୈଳାସାବିପି ଶ୍ଳାଘ୍ୟୋ ନିବାସ କୃତ୍ତିବାସ ସଃ ।

ଅର୍ଥାତ୍, ଏହି କୃତ୍ତିବାସ କ୍ଷେତ୍ର ଶିବଙ୍କର ନିତ୍ୟ, ଲୀଳା ସ୍ଥଳୀ, କୈଳାସ କନ୍ଦରଠାରୁ ଅତି ଗୁପ୍ତ ଅତି ପ୍ରିୟତମ ମନୋରମ ସ୍ଥାନ । ଏହି କ୍ଷେତ୍ରର କ୍ଷେତ୍ରାପତି ହେଉଛନ୍ତି ସର୍ବଶ୍ରେଷ୍ଠ ଦେବ ଦେବ ମହାଦେବ ମହାମହିମ, ଭୁବନେଶ୍ୱର ବା କୃତ୍ତିବାସ । ଭୁବନେଶ୍ୱର ଏହିପରି ବ୍ୟାଖ୍ୟା କରାଯାଇପାରେ । ଭୁବନସ୍ୟ ଈଶ୍ୱର ଯସ୍ୟ ସଃ - ବିଶ୍ୱର ଶ୍ରେଷ୍ଠ ଈଶ୍ୱର ଯିଏ ସେ ଭୁବନେଶ୍ୱର । ଏହି କ୍ଷେତ୍ରରେ ପ୍ରତିଷ୍ଠିତ ଲିଙ୍ଗ 'ବାଈଶ୍ୱର'ଙ୍କ ପ୍ରତୀକାତ୍ମକ ବିଗ୍ରହ, ବିଶ୍ୱର ସର୍ବଶ୍ରେଷ୍ଠ ଲିଙ୍ଗ ହୋଇଥିବାରୁ ତାଙ୍କର ନାମ ଲିଙ୍ଗରାଜ । ଏହି ଲିଙ୍ଗ ଭାରତବର୍ଷରେ ବିଦ୍ୟମାନ, ଦ୍ୱାଦଶ ଲିଙ୍ଗମାନଙ୍କ ମଧ୍ୟରେ ବହୁପ୍ରାଚୀନ, ଉଚ୍ଚତମ ଅଟନ୍ତି । ପୁନଶ୍ଚ ଏହି ଲିଙ୍ଗ ଭାରତବର୍ଷରେ ବିଦ୍ୟମାନ ଥିବା ସମସ୍ତ ଲିଙ୍ଗମାନଙ୍କ ରାଜା ଅଟନ୍ତି । ଏକାମ୍ର କ୍ଷେତ୍ରରେ ବିଦ୍ୟମାନ ଥିବା ଏହି ଲିଙ୍ଗ ସିତାସିତ ଅରୁଣବର୍ଣ୍ଣ ଧାରଣକରି ବିଦ୍ୟମାନ ଅଟନ୍ତି ।

ଯାନିବ୍ରହ୍ମନ୍ ପଦ୍ମଯୋନେ ତ୍ୱୟୈଷ୍ଟି ତତ୍
ଜ୍ୟୋର୍ତି ଲିଙ୍ଗାନିର୍ଚ୍ଚିତାନି ପୃଥିବ୍ୟାମ୍ ।

ତାନ୍ୟେତସ୍ୟ ତ୍ୱଂଶଭୂତା ନିବିଦ୍ଧି
ତତ୍ କଯଂ ଶ୍ରୀଭୁବନେଶଃ ଲିଙ୍ଗମ୍ ।।
ସ୍କନ୍ଦ ପୁରାଣ ମାହେଶ୍ୱରୀ ଖଣ୍ଡ - ୧-୪୭

ଲିଙ୍ଗାନାଂ ବୈ ଜ୍ୟୋତିଷାଂ ଦ୍ୱାଦଶାନାଂ
ରାଜତ୍ୟେତତ୍ ସଂସ୍ଥିତ ଲିଙ୍ଗରାଜମ୍
ବିଦ୍ଧ୍ୟେକାମ୍ରେ ବ୍ରହ୍ମଲିଙ୍ଗ ପୁରାଣମ୍
ସିତାସିତାରୁଣ ନାଦସ୍ୱରୂପମ୍ ।।
ସ୍କନ୍ଦ ପୁରାଣ ମାହେଶ୍ୱରୀ ଖଣ୍ଡ - ୧-୪୮

ବର୍ତ୍ତମାନ ଏହି ଭୁବନେଶ୍ୱର ଶୈବ କ୍ଷେତ୍ର, ଉତ୍କଳ, ଉଡ୍ଡୀୟନ ତନ୍ତ୍ରପୀଠ, ଓଡ଼ିଶାର ରାଜଧାନୀ । ଏହା ପୂର୍ବ ଉପକୂଳ କଟକଗଡ଼ଠାରୁ ପ୍ରାୟ ପଶ୍ଚିମକୁ ୨୦ କିଲୋମିଟର ଦୂର ଓ ବିଶ୍ୱ ବିଖ୍ୟାତ ପୁରୁଷୋତ୍ତମ କ୍ଷେତ୍ର ପୁରୀଠାରୁ ଉତ୍ତରରେ ୫୦ କି.ମି. । ଏହି କ୍ଷେତ୍ର ଅଧୁନା ଖୋର୍ଦ୍ଧା ଜିଲ୍ଲାରେ ଅନ୍ତର୍ଗତ । ଏହି କ୍ଷେତ୍ର ବ୍ୟାପ୍ତି ୫ କୋଶ ଅଟେ । ପଶ୍ଚିମରେ ଖଣ୍ଡଗିରିଠାରୁ ଆରମ୍ଭ କରି ପୂର୍ବରେ କୁଣ୍ଡଳେଶ୍ୱର ପର୍ଯ୍ୟନ୍ତ । ଉତ୍ତରରେ ବହଳାଦେବୀ (ବୁଦ୍ଧେଶ୍ୱରୀ)ଙ୍କଠାରୁ ଆରମ୍ଭ କରି ଦକ୍ଷିଣରେ ଧଉଳି ପାହାଡ଼ରେ ଅବସ୍ଥିତ ଥିବା ବହି ରଙ୍ଗେଶ୍ୱର ପର୍ଯ୍ୟନ୍ତ ।

ପଞ୍ଚକ୍ରୋଶଂ ପ୍ରବକ୍ଷ୍ୟାମି ଶୃଣୁଧ୍ୱଂ ଭୋ ଦ୍ୱିଜାଧମାଃ
ଖଣ୍ଡାଚଳଂ ସମାଜସ୍ୟ ଯତ୍ରାସ୍ତେ କୁଣ୍ଡଳେଶ୍ୱରଃ ।
ଆସାଦ୍ୟ ବଳହାଦେବୀ ବହି ରଙ୍ଗେସ୍ମରାବଧି
କ୍ଷେତ୍ର ମେତତ୍ ସମାଦିଷ୍ଟଂ ଚକ୍ରାକାର ଶୁଭ ମୁନେ ।।
ସ୍କନ୍ଦ ପୁରାଣ ମାହେଶ୍ୱରୀ ଖଣ୍ଡ- ୧-୨୯-୩୦

ଏହି ସୀମା ମଧ୍ୟରେ ସମସ୍ତ ପାପ ନାଶ କରୁଥିବା ଦେବତା ଓ ଦେବୀମାନେ ନିବାସ କରନ୍ତି ।

### ତ୍ରିଭୁବନେଶ୍ୱର

ଏହି କ୍ଷେତ୍ରର ଲିଙ୍ଗର ନାମ ତ୍ରିଭୁବନେଶ୍ୱର ବୋଲି କଥିତ ଅଛି । ଏହି ଲିଙ୍ଗ ୩ ପ୍ରକାର ଜ୍ୟୋତି ପ୍ରକାଶ କରୁଥିବାରୁ ଏହାଙ୍କର ନାମ ତ୍ରିଭୁବନେଶ୍ୱର । ଅଧୁନା, ମୋଗଲ ଶାସନ ସମୟରେ, କୌଣସି

ବିଧର୍ମୀ ଯବନ, ଲିଙ୍ଗର କିଛି ଅଂଶ ଉତ୍ପାଟନ କରି ନେଇଥିବାରୁ ଏହି ତିନି ରଙ୍ଗ ପୂର୍ଣ୍ଣଭାବେ ଦୃଷ୍ଟିଗୋଚର ହୁଏ ନାହିଁ ।

ମୂଳସ୍ଫଟିକ ସଂକାଂଶଂ ମଧ୍ୟେ ବୈଦୁର୍ଯ୍ୟ ସନ୍ନିଭମ୍
ପଦ୍ମରାଗ ସମୋର୍ଦ୍ଧମ୍ ଜ୍ୱଳନ୍ତଂ ତେଜ ସାତୁଳମ୍ ।

(ସ୍ୱ:ମ: ୧-୧୮)

ଏହି ଲିଙ୍ଗର ମୂଳଭାଗରେ 'ସ୍ଫଟିକମଣି, ମଧ୍ୟଭାଗରେ ବ୍ୟୈଦୁର୍ଯ୍ୟମଣି ଓ ଊର୍ଦ୍ଧ୍ୱଭାଗରେ ପଦ୍ମରାଗ ମଣି' ସଦୃଶ୍ୟ ଜ୍ୟୋତି ନିର୍ଗତ ହୁଏ । ଏହି ଲିଙ୍ଗ ହେଉଛନ୍ତି ସନାତନ ସ୍ୱରୂପ ପରବ୍ରହ୍ମ । ଏହା ସ୍ୱୟଂ ପ୍ରକଟିତ ହୋଇଥିବାରୁ ମହାପ୍ରଭୁଙ୍କ ଅନ୍ୟ ନାମ ସ୍ୱୟଂଭୁ । ଏଣୁ ପୁରାଣରେ ଉଲ୍ଲିଖିତ ରହିଛି -

ଭାରତ ଚୋତ୍କଳଦେଶେ ଶ୍ରୀମଦ୍ୟେକାମ୍ରବନେ ।
ଲିଙ୍ଗ ସନାତନଂ ବିଦ୍ଧି ନାମ୍ନା ତ୍ରିଭୁବନେଶ୍ୱରମ୍ ।

- ଲିଙ୍ଗ ପୁରାଣ

**ଗୁପ୍ତକାଶୀ**

ଏହିଠାରେ ଶିବ ତାଙ୍କର ପ୍ରିୟ କାଶୀ, କୈଳାସ ତ୍ୟାଗ କରି ଗୁପ୍ତରେ ନିବାସ କରୁଥିବାରୁ ଏହି କ୍ଷେତ୍ରର ନାମ ଗୁପ୍ତକାଶୀ ।

**ଚକ୍ର କ୍ଷେତ୍ର**

ଏହି କ୍ଷେତ୍ରର ଅନ୍ୟ ନାମ ଚକ୍ର କ୍ଷେତ୍ର ଅଟେ । ଭଗବାନ ଶ୍ରୀଜଗନ୍ନାଥଙ୍କ ଆୟୁଧ ଅନୁସାରେ ପ୍ରାଚୀନ ଉତ୍କଳ କ୍ଷେତ୍ର ନାମ ମଧ୍ୟ ନାମ କରାଯାଇଛି । ଶଙ୍ଖ କ୍ଷେତ୍ର- ପୁରୀ, ଚକ୍ର କ୍ଷେତ୍ର- ଭୁବନେଶ୍ୱର, ଗଦା କ୍ଷେତ୍ର- ବୈତରଣୀ, ଯାଜପୁର- ଯାଜନଗ୍ର, ଯଯାତିନଗ୍ର, ପଦ୍ମ କ୍ଷେତ୍ର ବା ଅର୍କ କ୍ଷେତ୍ର କୋଣାର୍କ । ମାତ୍ର ଭୁବନେଶ୍ୱର ପରିସୀମା କେତେକାଂଶରେ ଚକ୍ରପରି ଗୋଲାକାର ହୋଇଥିବାରୁ ଏହା ଚକ୍ର କ୍ଷେତ୍ର ।

**ଏକାମ୍ର କ୍ଷେତ୍ର -** ପ୍ରାଚୀନ କାଳରେ ଏହିଠାରେ ଏକ (ଆମ୍ବ) ଆମ୍ରବୃକ୍ଷ ଥିଲା । ଏହି ବୃକ୍ଷର ଶାଖାପ୍ରଶାଖା ଚତୁର୍ଦ୍ଦିଗରୁ ବିସ୍ତାରିତ ହୋଇ ଚକ୍ର ପରି ଶୋଭା ଧାରଣ କରିଥିଲା । ତେଣୁ ଏହି ଚକ୍ର ସଦୃଶ୍ୟ ଆମ୍ର ବୃକ୍ଷ ମୂଳରେ ଶିବ ସ୍ୱୟଂ ପ୍ରକଟିତ ହୋଇଥିବାରୁ ଏହି କ୍ଷେତ୍ରର ନାମ ଚକ୍ର କ୍ଷେତ୍ର । ପୁନଶ୍ଚ ଏହି ଏକ ବା ଗୋଟିଏ ଆମ୍ର ବୃକ୍ଷର ନିମ୍ନଭାଗରେ ଶିବ ସ୍ୱୟଂ ଲିଙ୍ଗ ରୂପରେ ପ୍ରକଟିତ ହୋଇଥିବାରୁ ଏହି କ୍ଷେତ୍ରର ନାମ ଏକାମ୍ର କ୍ଷେତ୍ର ଅଟେ । ଏହି ସ୍ଥାନକୁ ଦିବ୍ୟ ପୀଠ ବୋଲି ମଧ୍ୟ କୁହାଯାଏ ।

ଆମ୍ରସ୍ୟମୂଳଂ ପ୍ରଥିତମେ କାମ୍ରେଶ୍ୱର ଲିଙ୍ଗକମ୍
ଆମ୍ରଛାୟା ସୁପର୍ଯ୍ୟନ୍ତମ୍ ଦିବ୍ୟପୀଠ ମୁଦାହୃତମ୍ ।

ଏକାମ୍ର ପୁରାଣ

ଏହି ଏକାମ୍ରେଶ୍ୱରଙ୍କୁ ଦିବ୍ୟ ଜ୍ୟୋର୍ତିଲିଙ୍ଗ ରୂପେ ଗଣନା କରାଯାଏ । ଏହିଲିଙ୍ଗ ଧର୍ମ ଅର୍ଥ କାମମୋକ୍ଷ ଚତୁବର୍ଗ ଫଳ ପ୍ରଦାନ କରନ୍ତି । ଏହିଲିଙ୍ଗ ତ୍ରିତାପନାଶକାରୀ ତ୍ରିଗୁଣାତ୍ମକ (ଯଥା- ସତ୍ତ୍ୱ, ରଜ, ତମ) ଅଟନ୍ତି । ଲିଙ୍ଗରାଜଙ୍କୁ ଦର୍ଶନ ନକରି ଏକାମ୍ରେଶ୍ୱରଙ୍କୁ ଦର୍ଶନ କଲେ ମଧ୍ୟ ଲିଙ୍ଗରାଜ ଦର୍ଶନର ଫଳ ମିଳିଥାଏ ।

ଏକାମ୍ରେଶ୍ୱର ବିଖ୍ୟାତଂ ଚତୁବର୍ଗ ପ୍ରଦାୟକମ୍
ତସ୍ୟତୁ ଦର୍ଶନାଚୈବ ଭୁକ୍ତିଭାବଜାୟତେ ନର ।
ଅନେକ ମନ୍ତ୍ର ଯୋଗେନ ପ୍ରାର୍ଥୟେଦ୍ ଗିରିଜା ପତିମ୍
ଓଁ ନମସ୍ତେ ତ୍ରିଗୁଣାତ୍ମାୟଗୁଣଭୃଦ୍ ଗୁଣବର୍ଜିତଃ ।

- ଏକାମ୍ର ପୁରାଣ

ଏହି କ୍ଷେତ୍ର ସମ୍ମୁଖରେ ଏକ ମଣ୍ଡପ ରହିଛି । ଏହିଠାରେ ଚୂଡ଼ା କର୍ମ ବ୍ରତୋପନୟନ କରାଯାଏ । ଏହି ଏକାମ୍ରଶ୍ୱରରେ ଛାଇ ଏକକୋଶ ବାଟ ପର୍ଯ୍ୟନ୍ତ ବିସ୍ତାରିତ ଥିଲା । ଏହାର ସୀମା ଥିଲା ବାୟୁକୋଣରେ ଥିବା ସୁନ୍ଦରେଶ୍ୱରଙ୍କଠାରୁ ଅଗ୍ନିକୋଣରେ ମେଘେଶ୍ୱର ମନ୍ଦିର ପର୍ଯ୍ୟନ୍ତ ।

**କୃତ୍ତିବାସ କ୍ଷେତ୍ର :** ଏହି କ୍ଷେତ୍ରର ପ୍ରାକୃତିକ ଶୋଭା ଅତ୍ୟନ୍ତ ରମଣୀୟ । ଥରେ ଭଗବାନ ଶିବ ଏଠାକୁ ଆସି ଏହି କ୍ଷେତ୍ରର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଶିବଲିଙ୍ଗ ହୋଇ ରହିଗଲେ । ପାର୍ବତୀ ଏଠାକୁ ଶିବଙ୍କୁ ଅନୁସନ୍ଧାନ କରିବାକୁ ଆସିଲେ । ଦେଖିଲେ ଏକ ଶିବଲିଙ୍ଗ ନିକଟରେ ଗାଈମାନେ ପହ୍ନାରୁ କ୍ଷୀର ଦାନ କରୁଛନ୍ତି । କ୍ଷୀର ଲିଙ୍ଗ ଉପରେ ଝରିପଡ଼ୁଛି । ଏହା ଦେଖି ଦେବୀ ପାର୍ବତୀ ଗୋପାଳୁଣୀ ବେଶରେ ଏଠାରେ ରହିଲେ । ଲିଙ୍ଗ ପୂଜା କଲେ । ଗାଈମାନଙ୍କୁ ଚରାଇବାକୁ ନେଲେ । ଗାଈମାନଙ୍କୁ ଅଡ଼ାଇ ଶିବଙ୍କ ଉପରେ କ୍ଷୀର ପହ୍ନାରୁ କ୍ଷୀର ସ୍ରବଣ କରାଇଲେ । ପାର୍ବତୀଙ୍କ ରୂପ ଯୌବନରେ କୀର୍ତ୍ତି ଓ ବାସା ନାମରେ ଦୁଇ ଗୋଟି ଅସୁର ମୁଗ୍ଧ ହେଲେ । ମହାମାୟାଙ୍କୁ ପତ୍ନୀ ରୂପେ ପାଇବା ପାଇଁ ଯାଚଞ୍ଚା କଲେ । ପାର୍ବତୀ କହିଲେ ଏହି କ୍ଷେତ୍ରରେ ତୁମ୍ଭେ ଦୁଇ ଅସୁର (ଦୁଇ ଭାଇ) କାନ୍ଧରେ ବସାଇ ତିନିଥର ଭ୍ରମଣ କରାଇବ । କାନ୍ଧରେ ନେଲାବେଳେ ଦେବୀ ମାୟାରେ ବହୁତ ଓଜନ ହେଲେ । ଅସୁର ଦୁଇଜଣ ସେଠାରେ ଚାପି ହୋଇ ପ୍ରାଣତ୍ୟାଗ କଲେ । ମଲାବେଳେ ଦେବୀଙ୍କ ପାଦସ୍ପର୍ଶ ଲାଭ କରିଥିବାରୁ ତାଙ୍କର ଜୀବନ ଧନ୍ୟ ହେଲା । ମୃତ୍ୟୁ ସମୟରେ ଅସୁର ଦୁଇଜଣ ପ୍ରାର୍ଥନା କଲେ ହେ ଦେବୀ ! ଆମ୍ଭ ନାମରେ ଏହି କ୍ଷେତ୍ର ପ୍ରସିଦ୍ଧି ଲାଭ କରୁ । ତେଣୁ ଦୁଇ ଅସୁରଙ୍କ ନାମରେ 'କୀର୍ତ୍ତୀବାସା' କ୍ଷେତ୍ର ହେଲା । କାଳକ୍ରମେ ଏହା ଅପଭ୍ରଂଶ ହୋଇ କୃତ୍ତିବାସ କ୍ଷେତ୍ର ରୂପେ ପରିଗଣିତ ହେଲା । ଏହା ହିଁ ଶିବ ପୁରାଣରେ ଉଲ୍ଲିଖିତ ରହିଛି । ଏହି କ୍ଷେତ୍ର ଗୁପ୍ତରେ ଶିବପାର୍ବତୀ ନିବାସ କରନ୍ତି ସ୍ୱୟଂ ନିଜ ଇଚ୍ଛାରେ । ଶିବଙ୍କର ଅନ୍ୟ ନାମ ହେଉଅଛି କୃତ୍ତିବାସ । ଏହି ଦ୍ୱାଦଶ ଜ୍ୟୋତିଲିଙ୍ଗଠାରୁ ଲିଙ୍ଗରାଜ ଶ୍ରେଷ୍ଠ, ବରିଷ୍ଠ-ଗରିଷ୍ଠ, ରାଜାଧିରାଜ ଅଟନ୍ତି ।

କୀର୍ତ୍ତିବାସା ନାମେ ଦୁଇଟି ଅସୁର
ଦେବୀଙ୍କ ନିକଟେ ଆସି ହୋଇଲେ ହାଜର
ତିନିବାର ପ୍ରଦକ୍ଷିଣ କରାଇବ ମୋତେ
ବରମାଲ୍ୟ ତୁମ୍ଭ ଗଳେ ଦେବି ମୁଁ ନିଶ୍ଚିତେ
ବେଲୁ ବେଲୁ ଓଜନ ହେଲେ ହୈମବତୀ
ପ୍ରାଣ ତେଜିଲେ ଅସୁର ଦୁଃଖିତରେ ଅତି ।
- ଶିବ ପୁରାଣ

ଦ୍ୱାଦଶ ଜ୍ୟୋତି ଲିଙ୍ଗ କ୍ଷେତ୍ରରେ ଶିବ ଲିଙ୍ଗ ରୂପେ ବିଦ୍ୟମାନ ମାତ୍ର, ଏଠାରେ ମାତା ପାର୍ବତୀ ଶକ୍ତି ରୂପେ ବିଦ୍ୟମାନ । ଶିବ ଏବଂ ଶକ୍ତି ଉଭୟଙ୍କୁ ନେଇ ଏହି କ୍ଷେତ୍ର ଗଠିତ ହୋଇଥିବାରୁ ଏହା ମହାଶୈବ କ୍ଷେତ୍ର ବା ରାଜାଶୈବ କ୍ଷେତ୍ର ଅଟେ । ଏହି ଲିଙ୍ଗ ନାମ ଉଚ୍ଚାରଣରେ ମହାପାତକ ନାଶ ହୁଏ ।

ଏହି ଏକାମ୍ର କ୍ଷେତ୍ର ପୂର୍ବଦିଗରେ କୁଣ୍ଡଳେଶ୍ୱର ମହାଦେବ (ଟଙ୍କପାଣି ଗ୍ରାମରେ) । ଅଧୁନା ଏହି ସ୍ଥାନର ନାମ ଭାବକୁଣ୍ଡଳେଶ୍ୱର । ଏଠାରେ ସାଧନା କରି ସାଧକ ଶିବମନ୍ତ୍ର ଜପ ସହଜରେ କୁଣ୍ଡଳିନୀ ଶକ୍ତି ଜାଗ୍ରତ କରିପାରିବ । ଏଠାରେ ବିଜେ ଦୁର୍ଗା ପ୍ରତିମା କେଳୁ ବୃକ୍ଷ ମୂଳରେ ଅବସ୍ଥିତ । ଏହି ବୃକ୍ଷଲାଭ କଳାଶାଢ଼ୀ ଦ୍ୱାରା ଆବୃତ୍ତ । ଏଠାରେ ଶାରଦୀୟ ଏବଂ ମଧୁପାର୍ବଣ ପୂଜାରେ ନପତ୍ରିକା, ଦୁର୍ଗାପୂଜା, ଦଶହରା ଉତ୍ସବ ପାଳନ କରାଯାଏ । ଏହି ସ୍ଥାନ ଅନତି ଦୂରରେ ଅନ୍ୟ ଶିବ ମୂର୍ତ୍ତି ଓ ଗଣେଶ ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । କୁଣ୍ଡଳେଶ୍ୱର ମହାଦେବଙ୍କ ମନ୍ଦିର ଅନତି ଦୂରରେ ଚଉଷଠି ଯୋଗ୍ନୀଙ୍କର ପୀଠ ଦେଖିବାକୁ ମିଳେ ।

ପଶ୍ଚିମ ଭାଗରେ ଖଣ୍ଡଗିରି ଗୁମ୍ଫାଠାରେ ଦ୍ୱାଦଶ ଭୁଜା ଓ ଦଶଭୁଜା ଦୁର୍ଗାମୂର୍ତ୍ତି ଦୃଷ୍ଟିଗୋଚର ହୁଅନ୍ତି । ଉତ୍ତର ଭାଗ ଲକ୍ଷ୍ମୀ ସାଗର ରାସ୍ତା ନିକଟରେ ବୁଦ୍ଧେଶ୍ୱରୀ (ବଳହାଦେବୀ)ଙ୍କ ମନ୍ଦିର ଦୃଷ୍ଟିଗୋଚର ହୁଏ ।

ଦକ୍ଷିଣ ଭାଗରେ ଥିବା ଧଉଳୀ ପାହାଡ଼ ମୂଳଦେଶରେ ପଶ୍ଚିମାଭିମୁଖୀ ଶମ୍ଭୁ, ବହିରଙ୍ଗେଶ୍ୱର ଭାବରେ ପୂଜିତ ହୁଅନ୍ତି । ଏଠାରେ ଗଣେଶଙ୍କ ନାମ ତାନ୍ତ୍ରିକ ଗଣେଶ । ସେ ତନ୍ତ୍ରରେ ପୂଜିତ ହୋଇ ବିଘ୍ନ ନାଶନ କରନ୍ତି । ଏତଦ୍‌ବ୍ୟତୀତ ଧଉଳି ପାହାଡ଼ର ଉପରିଭାଗରେ ଥିବା ଧବଳେଶ୍ୱର ମନ୍ଦିରରେ ଦୁର୍ଗା, କାର୍ତ୍ତିକ, ଗଣେଶ ପୂଜା ହୁଅନ୍ତି । ଏଣୁ ଏଠାରେ ବହୁଳ ଭାବେ ଦୁର୍ଗା ପୂଜିତ ହେଉଥିବାରୁ ଏହି କ୍ଷେତ୍ର ପାଚୀନ କାଳରେ ଶକ୍ତି ତନ୍ତ୍ରପୀଠ ଖ୍ୟାତି ମଧ ଲାଭ କରିଥିଲା । ଏହି କ୍ଷେତ୍ରର ମୁଖ୍ୟ ହେଉଛନ୍ତି ଲିଙ୍ଗରାଜ । ଖଣ୍ଡଗିରି ଧଉଳିଗିରିରେ ଅଧୂନା ବହୁ ବୌଦ୍ଧ କୀର୍ତ୍ତି, ଜୈନ କୀର୍ତ୍ତି ଦେଖିବାକୁ ମିଳେ । ବୌଦ୍ଧଗୁରୁ ଦଲାଇଲାମାଙ୍କ ନିର୍ଦ୍ଦେଶରେ ଏଠାରେ ବିଶାଳ ବୌଦ୍ଧସ୍ତୂପ, ମଠ, ଆଶ୍ରମ ନିର୍ମିତ ହୋଇଛି ।

ଦ୍ୱାଦଶ ଲିଙ୍ଗମାନଙ୍କ ମଧ୍ୟରେ ଏହି ଲିଙ୍ଗ ରାଜା, ଶ୍ରେଷ୍ଠ, ମହାନ୍ ହୋଇଥିବାରୁ ସେ ଲିଙ୍ଗରାଜ । ସେ ସ୍ୱୟଂ ନିଜେ ପ୍ରକଟିତ ହୋଇଛନ୍ତି । ଅନ୍ୟ କ୍ଷେତ୍ରମାନେ, ଦେବଦେବୀ ଓ ଭକ୍ତମାନଙ୍କର ସ୍ତୁତିରେ ପ୍ରକଟିତ ହୋଇଥିବାବେଳେ ଏଠାରେ ନିଜଇଚ୍ଛାରେ ପ୍ରକାଶିତ ଓ ପ୍ରକଟିତ ହୋଇଛନ୍ତି । ଏଣୁ ଏଠାକାର ଲିଙ୍ଗ ସ୍ୱୟଂମ୍ଭୁ । ଏହି ଲିଙ୍ଗ ପରବ୍ରହ୍ମ । ତାଙ୍କର ମହିମହିମା ଚାରିବେଦରେ ବର୍ଣ୍ଣନା କରାଯାଇଛି । ତାଙ୍କୁ ଭକ୍ତିରେ ଦର୍ଶନ ପ୍ରଣାମ କଲେ ସବୁପ୍ରକାର ସିଦ୍ଧିମିଳେ ।

ଏହି ଲିଙ୍ଗରାଜ ହର ଅଟନ୍ତି । ହରିହରଙ୍କ ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ । ହରିଙ୍କ ଦର୍ଶନରେ ଯେଉଁ ଫଳ ମିଳେ ଏଠାରେ ହରଦର୍ଶନରେ ସେହି ଫଳ ମିଳେ । ହରିଙ୍କୁ ଦର୍ଶନ କଲେ ସର୍ବପାପ ମୁକ୍ତ ହୋଇଥାଏ । ଯେ ପାପ ହରଣ କରନ୍ତି ସେ ହରି ଓ ହର । କପିଳ ସଂହିତାରେ ଏହିକଥା ଉଲ୍ଲେଖ ଅଛି । ନନ୍ଦି କପିଳ ସଂହିତାରେ ଦେବ ଦେବ ମହାଦେବଙ୍କୁ ପ୍ରଶ୍ନ କଲେ ଆପଣ କିପରି ଓ କେଉଁଠାରେ ଏକାମ୍ର କ୍ଷେତ୍ରରେ ନିବାସ କରନ୍ତି । ଏହି କ୍ଷେତ୍ରରେ ହରହର ମହାଦେବ ପରବ୍ରହ୍ମ ପରମ୍ରା, ପରମାନନ୍ଦ, ଆଦିକନ୍ଦ, ସଚ୍ଚିଦାନନ୍ଦ ଶ୍ରୀକୃଷ୍ଣ ସହିତ ନିବାସ କରନ୍ତି ।

ଏକାମ୍ର ତୀର୍ଥର ବିନ୍ଦୁ ସରୋବର କୂପରେ ଭଗବାନ କୃଷ୍ଣଙ୍କ ସହିତ ମୁଁ (ଲିଙ୍ଗରାଜ) ବାସ କରୁଛି । କପିଳ ସଂହିତା ଶାସ୍ତ୍ର ଅନୁସାରେ ଏହି ଲିଙ୍ଗରାଜ ମନ୍ଦିରରେ ଏକ ପଟରେ ଗରୁଡ଼ ଦକ୍ଷିଣପଟରେ ବୃଷଭ ଦେଖିବାକୁ ମିଳନ୍ତି । ମୂଳ ମନ୍ଦିରଗାତ୍ରରେ ବାମପାର୍ଶ୍ୱରେ ଭଗବାନ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ଚିତ୍ର ମହାଭାରତର ଯୁଦ୍ଧ, ପାଣ୍ଡବଙ୍କ ସ୍ୱର୍ଗାରୋହଣ । ଏହି ମନ୍ଦିରର ଅନ୍ୟ ପାର୍ଶ୍ୱରେ ଲକ୍ଷ୍ମୀ ନୃସିଂହ, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ଅନନ୍ତ ବାସୁଦେବ, ମୂର୍ତ୍ତିମାନ ଦେଖିବାକୁ ମିଳେ । ଏଣୁ ଏହି ମନ୍ଦିର ଗାତ୍ର ଦକ୍ଷିଣ ପାର୍ଶ୍ୱରେ ଶିବଙ୍କର ପରମ ଭକ୍ତ ଶ୍ରୀରାମ, ରାବଣର ଯୁଦ୍ଧ, ଦଣ୍ଡକାରଣ୍ୟ, ଋଷିମାନଙ୍କ ତପସ୍ୟା, ଶବରୀ ଫଳ ଅର୍ପଣ ଇତ୍ୟାଦି ଦେଖିବାକୁ ମିଳେ । ଶିବଗଣ, ଦେବଗଣ, ଦୁର୍ଗା ଭୁବନେଶ୍ୱରୀ ପାର୍ବତୀ, ଗିରିଜା, ମଙ୍ଗଳା, ଗଣେଶ, କାର୍ତ୍ତିକଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଏହି ମନ୍ଦିର ଦକ୍ଷିଣ ଦିଗରେ ଅବସ୍ଥିତ । ଲିଙ୍ଗ ପୁରାଣରେ ଶ୍ରୀ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ହରିହର ମୂର୍ତ୍ତି ରୂପ ବର୍ଣ୍ଣିତ ହୋଇଛି ।

ଭଗବାନ ଶ୍ରୀରାମ ଲଙ୍କା ବିଜୟ ସମୟରେ ରାମେଶ୍ୱରଠାରେ ଶିବଲିଙ୍ଗ ସ୍ଥାପନ କରି ଶିବଙ୍କୁ ଆରାଧନା କରିଥିଲେ ।

**ଲିଙ୍ଗରାଜଙ୍କ ପ୍ରସାଦ**

ଲିଙ୍ଗରାଜଙ୍କ ଭୋଗନୈବେଦ୍ୟ ସାକ୍ଷାତ୍ ମହାପ୍ରସାଦ ତୁଲ୍ୟ । ଏଠାରେ ହରିହରଙ୍କ ଉଭୟ ପ୍ରିୟ ପ୍ରସାଦ ନୈବେଦ୍ୟ ରୂପେ ଗୃହୀତ ହୁଏ । ଖେଚରାନ୍ନ (ଖେଚୁଡ଼ି), ବିହ୍ରୀ (ବିରି) ପିଷ୍ଟକ, ଶାକ, ଆଦ୍ରକ, ନାରିକେଳ ଆଦି ଏଠାରେ ପ୍ରଧାନ ନୈବେଦ୍ୟ । ଏଠାରେ ମାତା

ଅନ୍ନପୂର୍ଣ୍ଣା, ଅପର୍ଣ୍ଣା, ପାର୍ବତୀ ଶୈବାଗ୍ନିରେ ନୈବେଦ୍ୟ, ଅନ୍ନ ପାକ କରନ୍ତି । ଏହା ସ୍ୱୟଂ ସ୍ୱୟମ୍ଭୁଶିବ ଲିଙ୍ଗରାଜଙ୍କୁ ଅର୍ପଣ କରାଯାଏ । ଏହି ପ୍ରସାଦକୁ ଆଚାଣ୍ଡାଳ ବ୍ରାହ୍ମଣ ଏକତ୍ର ଏକ ସ୍ଥାନରେ ସେବନ କରନ୍ତି । ଏହି ପ୍ରସାଦ ହରିହର ଉଭୟଙ୍କୁ ଅର୍ପଣ କରାଯାଉଥିବାରୁ ଏହା ସାକ୍ଷାତ ବ୍ରହ୍ମ ସହିତ ସମାନ ।

ଏଣୁ ଶାସ୍ତ୍ରରେ ଉଲ୍ଲେଖ ଅଛି -

ଯଦନ୍ନ ପାଚୟେତ ଗୌରୀ ଭୋକ୍ତା ବ୍ରହ୍ମ ସନାତନଃ ।
ସୃଷ୍ଟା ସ୍ପୃଷ୍ଟଂ ନ ମନ୍ତବ୍ୟମ୍ ଯଥାବ୍ରହ୍ମ ତଥୈବଚ ॥

ପ୍ରକାଶ ଥାଉ କି ଲିଙ୍ଗରାଜ ମହାପ୍ରଭୁଙ୍କ ପ୍ରସାଦ ନେଇ 'ଇନ୍ଦ୍ରଭୂତି' ନାମକ ସାଧକ ଶିବ ଲୋକ, ଯାତ୍ରା କରୁଥିଲେ । ବ୍ରହ୍ମ ଲୋକରେ ବ୍ରହ୍ମା ତାହାଙ୍କୁ ପ୍ରଣାମ କଲେ କାରଣ ସେ ପ୍ରସାଦକୁ ବ୍ରହ୍ମ ସଦୃଶ ମସ୍ତକରେ ଧାରଣ କରିଥିଲେ ।

**ଲିଙ୍ଗରାଜ ମହାପ୍ରଭୁଙ୍କ ବେଢ଼ାରେ ଥିବା ବିଗ୍ରହ ଓ ମନ୍ଦିର ସମୂହ**

**ଗଣେଶ -** ଏହି ମନ୍ଦିର ବାମପାର୍ଶ୍ୱରେ ସିଦ୍ଧି ବିନାୟକ ଗଣେଶ ବିଦ୍ୟମାନ । ଏହି ଗଣେଶ ଦ୍ୱିଭୁଜା, ବାମଜାନୁ ପରେ ଡାହାଣ ଜାନୁ ରଖି ଉପବେସନ କରିଛନ୍ତି । ଦ୍ୱାର ଦେଶରେ ମହାଲକ୍ଷ୍ମୀ, ସରସ୍ୱତୀ, ମୂଷିକ ବିଦ୍ୟମାନ । ଏହି ବେଢ଼ାରେ ବଡ଼ ଛୋଟ ବହୁ ଶିବ ମନ୍ଦିର ଓ ବହୁ ବିଗ୍ରହ ବିଦ୍ୟମାନ । ଏଠାରେ ପର୍ଶୁରାମ ମନ୍ଦିର କପାଳେଶ୍ୱର ମନ୍ଦିର ମଧ୍ୟ ରହିଛି ।

**ଭୈରବ -** ବହୁ ଭୈରବ ମୂର୍ତ୍ତି ଭଗ୍ନାବସ୍ଥାରେ ବିଦ୍ୟମାନ । କାଳୀ ମନ୍ଦିର ଓ କାଳୀମୂର୍ତ୍ତି ରହିଛି । ମନ୍ଦିର ଦକ୍ଷିଣପଟରେ 'ଦକ୍ଷିଣ କାଳୀ' (କାଳ) ନାମରେ ଏକ ଭୈରବ ଅଛନ୍ତି ।

**ଭୁବନେଶ୍ୱରୀ -** ଭୁବନେଶ୍ୱର ପୀଠର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଭୁବନେଶ୍ୱରୀ । ଦେବୀ ଅର୍ଦ୍ଧ ପ୍ରୋଥିତ । ବାସନ୍ତୀ ପୂଜା, ଶାରଦୀୟ ପୂଜା ଏଠାରେ ମହାସମାରୋହରେ ପାଳିତ ହୁଏ । ଏହି ଦେବୀଙ୍କର ଅନ୍ୟ ନାମ ଗୋପାଳିନୀ ମଧ୍ୟ ଅଟେ । ଏକଦା ଶିବ ଏକାମ୍ର କ୍ଷେତ୍ରର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଏଠାରେ ରହିଗଲେ । ପାର୍ବତୀ ଗୋପାଳୁନୀ ବେଶରେ ଏଠାରେ ଗୋଚାରଣ କରୁଥିଲେ ।

**ପାର୍ବତୀ ଗିରିଜା -** ଏହି ମନ୍ଦିର ବେଢ଼ାରେ ଗିରିଜାଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିରରେ ଗିରିଜା, ପାର୍ବତୀଙ୍କ ମୂର୍ତ୍ତି ଅତୀବ ସୁନ୍ଦର ଭାବେ ପ୍ରତିଷ୍ଠିତ । ଏତଦ୍‌ବ୍ୟତୀତ ମନ୍ଦିର ବେଢ଼ାରେ ଅଷ୍ଟଶମ୍ଭୁଙ୍କର ଅଷ୍ଟମୂର୍ତ୍ତି, ଅଷ୍ଟତୀର୍ଥ ଓ ବହୁପୀଠ ରହିଛି । ଅଷ୍ଟମୂର୍ତ୍ତି - କଥିତ ଏହି ଏକାମ୍ର କ୍ଷେତ୍ରରେ କେତୋଟି ଶିବମୂର୍ତ୍ତି ବିଜେ କରନ୍ତି, ତନ୍ମଧ୍ୟରୁ ଅଷ୍ଟଶମ୍ଭୁ ପ୍ରଧାନ । ଅଷ୍ଟଶମ୍ଭୁ ପରି ଏଠାରେ ଅଷ୍ଟଶକ୍ତି (ପାର୍ବତୀ) ରହିଛନ୍ତି । ଏହି ମୂର୍ତ୍ତିମାନେ ହେଲେ ଗଣେଶ, ଦେବୀ, ସ୍କନ୍ଧ (କାର୍ତ୍ତିକେୟ) ବୃଷଭ, ଗଣଚକ୍ର, ସାବିତ୍ରୀ, କଳ୍ପବୃକ୍ଷ ଦେବ (ମୁଖ୍ୟ ଲିଙ୍ଗରାଜ ମହାପ୍ରଭୁ) । ଏହି କ୍ଷେତ୍ରରେ ରାମଚଣ୍ଡୀ (ରାମାୟଣୀ), ମୋହିନୀ, ବିନ୍ଧ୍ୟବାସିନୀ, ଦ୍ୱାରବାସିନୀ, ଅମ୍ବିକା, ଉତ୍ତରାୟଣୀ, ଗୌରୀ ଆଦିଦେବୀମାନଙ୍କ ମନ୍ଦିର ରହିଛି । ଏହିମାନେ ହେଉଛନ୍ତି ଅଷ୍ଟ ଶକ୍ତି ।

**ଅଷ୍ଟତୀର୍ଥ -** ବିନ୍ଦୁସାଗର, ପାପନାଶିନୀ, ଗଙ୍ଗାଯମୁନା, କୋଟି ତୀର୍ଥ, ବ୍ରହ୍ମେଶ୍ୱର, ମେଘେଶ୍ୱର, ଅଲାବୁକେଶ୍ୱର ଓ ରାମେଶ୍ୱର । ଏହି ତୀର୍ଥମାନଙ୍କର ଜଳଯବି, ପ୍ରଥମାଷ୍ଟମୀ ଦିନ ଅଷ୍ଟମୂର୍ତ୍ତି କ୍ରମରେ ଲିଙ୍ଗରାଜ ପୂଜା, ରୁଦ୍ରାଭିଷେକ, ଜଳାଭିଷେକ କରାଯାଏ, ତାହାହେଲେ ବହୁ ପୁଣ୍ୟ ହୁଏ ।

**ଅଷ୍ଟଶମ୍ଭୁ -** ରୁଦ୍ରେଶ୍ୱର, ଈଶାନେଶ୍ୱର, ବୈଦ୍ୟନାଥ, ମୂର୍ତ୍ତେଶ୍ୱର, ସୂକ୍ଷ୍ମେଶ୍ୱର, ଉତ୍ତମେଶ୍ୱର, ଉତ୍ତରେଶ୍ୱର, କେଦାରଶ୍ୱର ଆଦି ଅଷ୍ଟଶମ୍ଭୁ ଏହି କ୍ଷେତ୍ରରେ ବିଦ୍ୟମାନ ।

**ଅଷ୍ଟଚଣ୍ଡୀ -** ସୁକପାଳୀ (କପାଳୀ ଦେବୀ), ରାମାୟଣୀ (ପଶ୍ଚିମ) ମୋହିନୀ, ବିନ୍ଧ୍ୟବାସିନୀ (ଦକ୍ଷିଣ), ଉତ୍ତରାୟଣୀ (ଉତ୍ତର) ଦ୍ୱାରବାସିନୀ, ଅମ୍ବିକା (ପୂର୍ବପଟ) ଶିଦ୍ଧାଶ୍ରମ ଶିବାଗୌରୀ । ଏମାନେ ବିନ୍ଦୁସରୋବର ଚତୁଃପାର୍ଶ୍ୱରେ ବିଦ୍ୟମାନ । ଏହି ଦେବୀମାନଙ୍କ ପାର୍ଶ୍ୱରେ ବାହନଯୁକ୍ତା ଦେବୀମାନେ ଅଛନ୍ତି, ସେମାନେ ହେଲେ ଭୈରବ, ବ୍ରହ୍ମାଣୀ, ମାହେଶ୍ୱରୀ, କୌମାରୀ, ବାରାହୀ, ଭୈରବୀ, ଐନ୍ଦ୍ରୀ ନାରସିଂହୀ, ମହାମାୟା, ଗଣେଶ, ଝିଣ୍ଟିବେଶ, ଅନନ୍ତ, ମହାକାଳ ଓ ଚଉଷଠି ଯୋଗିନୀ । ଏତଦ୍‌ବ୍ୟତୀତ ଏଠାରେ ଆଉ ଅନେକ ଦେବୀମୂର୍ତ୍ତି ଏଠାରେ ପୂଜିତ ହୁଅନ୍ତି । ଦକ୍ଷିଣଚଣ୍ଡୀ, ଚାରନାରାୟଣୀ, କାମାକ୍ଷୀ, କାଳିକା, ହରଚଣ୍ଡୀ, ଜାଗେଶ୍ୱରୀ, ଭୂଜାବାସିନୀ ଆଦି ଦେବୀମାନେ ଏଠାରେ ବିଦ୍ୟମାନ । ଏହି ଦକ୍ଷିଣ ମୂର୍ତ୍ତି ଶିବ ହିମାଳୟଙ୍କ ପୂଜିତ ତ୍ରିଭୁବନେଶ୍ୱର ଶିବ ଅଟନ୍ତି । ଏହାଙ୍କ ନାମ କେଦାରେଶ୍ୱର । ଏହି ସ୍ଥାନକୁ ଭବପୀଠ କହନ୍ତି । ଏଠାରେ ପାବନ ଜଳରାଶି ପ୍ରବାହିତ ହେଉଛି । ଏହିଠାରେ ଶିବ ଦର୍ଶନ କଲେ ସର୍ବପାପରୁ ଜୀବମୁକ୍ତ ହୁଏ ।

ଏହି କ୍ଷେତ୍ର ଶିବ ମନ୍ଦିର ମଧରେ ନିମ୍ନୋକ୍ତ ଶିବ ମନ୍ଦିର ମାନ ପ୍ରଧାନ ।

**ମାର୍କଣ୍ଡେଶ୍ୱର-** ଏହି ମନ୍ଦିର ନୈରତ କୋଣ, ବିନ୍ଦୁ ସାଗର ନିକଟରେ ଅବସ୍ଥିତ । ଏହି ମନ୍ଦିରରେ ଆଠଗୋଟି ଗ୍ରହ ରହିଛନ୍ତି । ଏହି ମନ୍ଦିରରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଅଗ୍ନି, ବରୁଣ ରହିଛନ୍ତି । ମନ୍ଦିର ବାୟୁ କୋଣରେ ଏକ ପାଦ ଭୈରବ, ଦକ୍ଷିଣ ନାଗସାପ, ଗଣେଶ, ଶିବତାଣ୍ଡବ ଓ ଦୁର୍ଗା ତାଣ୍ଡବ ମୂର୍ତ୍ତିମାନ ରହିଛି ।

**ପରଶୁରାମେଶ୍ୱର ମନ୍ଦିର -** ପର୍ଶୁରାମ ଏକୋଇଶବାର କ୍ଷତ୍ରିୟ ନିଧନ କରି ଏଠାରେ ଶିବଙ୍କୁ ତପସ୍ୟା କରି ପାପମୋଚନ କରିଥିଲେ । ତାଙ୍କର ପାପମୋଚନ ଦିବସ ଥିଲା ଆଷାଢ଼ ମାସ ଶୁକ୍ଳ ଅଷ୍ଟମୀ ତିଥି । ତାଙ୍କରି ସ୍ମୃତିରେ ଏଠାକାର ଥିବା ମନ୍ଦିରର ନାମ ପର୍ଶୁରାମେଶ୍ୱର (ପରଶୁରାମେଶ୍ୱର) ।

**ତୀର୍ଥେଶ୍ୱର** - ଏହି ଶମ୍ଭୁ ପଶ୍ଚିମାଭିମୁଖୀ । ଲିଙ୍ଗରାଜ ମହାପ୍ରଭୁଙ୍କ ରଥଯାତ୍ରା ସମୟରେ ମହାପ୍ରଭୁ ଏହି ପ୍ରତୀକ ଭାବରେ ବିଦ୍ୟମାନ ରହନ୍ତି ।

**ସୋମେଶ୍ୱର ଓ ବୈଦ୍ୟନାଥ** - ଏହି ଶମ୍ଭୁ ଶଶ୍ମାନ ପୀଠର ଅଧିଷ୍ଠିତ ଦେବତା । ଏହା ଏକ ତନ୍ତ୍ରୋକ୍ତ ମନ୍ଦିର । ଏହି ଶିବ, ଖରାଖିଆ ମହାଦେବ ନାମରେ ପରିଚିତ । ଏହି ଶିବଙ୍କୁ ସ୍ୱର୍ଗର ବୈଦ୍ୟରାଜ, ଅଶ୍ୱନୀ କୁମାର, ଧନ୍ୱନ୍ତରୀ ପୂଜା କରିଥିଲେ । ଲଙ୍କାଧିପତି ରାବଣ ଏହି ଶିବଙ୍କୁ ମଧ ପୂଜା କରିଥିଲେ ।

### ସିଦ୍ଧେଶ୍ୱର ଓ ମୁକ୍ତେଶ୍ୱର

ଏହି ଦୁଇ ମନ୍ଦିରରେ ଶିବ ଦର୍ଶନ କଲେ, ପାପୀ ପାପାତ୍ମା ଜୀବାତ୍ମାମାନେ ଯଥାକ୍ରମେ ସିଦ୍ଧି ଓ ମୁକ୍ତି ଲାଭ କରନ୍ତି । ସିଦ୍ଧେଶ୍ୱର ମନ୍ଦିର ସମ୍ମୁଖରେ ଯେଉଁ କୁଣ୍ଡ ରହିଛି, ତାହା ସିଦ୍ଧ କୁଣ୍ଡ । ଏହି ଜଳରେ ସିଦ୍ଧେଶ୍ୱର ମହାଦେବଙ୍କୁ ଅର୍ଚ୍ଚନା କଲେ ସିଦ୍ଧି ମିଳିଥାଏ । ଅଶୋକାଷ୍ଟମୀ ଦିନ ରୁକୁଣା, ଅଣବାହୁଡ଼ା ଲିଙ୍ଗରାଜ ରଥକୁ ଏହି ଜଳ ଦ୍ୱାରା ସୋଧ, ବା ଧଉତ କରାଯାଏ । ଏହି ଦିନ ଅପୁତ୍ରିକ, ନିଃସନ୍ତାନ ନାରୀମାନେ ଭକ୍ତି ଶ୍ରଦ୍ଧାରେ ଜଳରେ ସ୍ନାନ ଓ ପାନ କଲେ, ପୁତ୍ର ଓ ସନ୍ତାନବତୀ ହୋଇଥା'ନ୍ତି । ବୃକ୍ଷଲତାଙ୍କ ମୂଳରେ ଏହି କୁଣ୍ଡର ଜଳ ସିଞ୍ଚନ କଲେ ବୃକ୍ଷଲତା ନୂତନ ପଲ୍ଲବରେ ପଲ୍ଲବିତ ହୋଇଥାନ୍ତି ଓ ପୁଷ୍ପ ଫଳ ଧାରଣ କରନ୍ତି । ଏହି ଦୁଇ ମନ୍ଦିର ଗାତ୍ରରେ ସୁନ୍ଦର ସୁନ୍ଦର ଚିତ୍ରକଳା ଚିତ୍ରିତ ହୋଇଛି ।

**ବିଭୀଷଣେଶ୍ୱର** - ଲିଙ୍ଗରାଜ ମନ୍ଦିର ସମ୍ମୁଖରେ ଯେଉଁ ମନ୍ଦିର ଅଛି ତାହାର ନାମ ବିଭୀଷଣେଶ୍ୱର । ଏହାକୁ ପୂର୍ବେ ଦଶାନନ ଅନୁଜ, ଚିରଞ୍ଜିବି ଭକ୍ତ, ଲଙ୍କେଶ୍ୱର ବିଭୀଷଣ ପୂଜା କରୁଥିଲେ । ଅଶୋକାଷ୍ଟମୀ (ଚୈତ୍ର ମାସ ଶୁକ୍ଳ ଅଷ୍ଟମୀ) ଦିନ ମହାପ୍ରଭୁଙ୍କ ଲିଙ୍ଗ ସମ୍ମୁଖରେ ଏକ ଆଳତୀ କରାଯାଏ । ଏହାକୁ ବିଭୀଷଣ ଆରତୀ କୁହାଯାଏ । ଏହି ଭଗବାନ ଲିଙ୍ଗରାଜ ଶ୍ରୀରାମେଶ୍ୱରଙ୍କୁ ଦର୍ଶନ ପାଇଁ ଯାଆନ୍ତି ଶ୍ରୀରାମଙ୍କ ପ୍ରୀତି ଓ ଭକ୍ତି ଜାଗ୍ରତ କରିବା ପାଇଁ । ବିଭୀଷଣ ମଧ ମହାପ୍ରଭୁଙ୍କ ସହିତ ଯାତ୍ରା କରନ୍ତି । ଏହି ରଥଯାତ୍ରାରେ ବାହୁଡ଼ା ଯାତ୍ରା ହୁଏ ନାହିଁ । ଏହି ଅଶୋକାଷ୍ଟମୀ ରଥଯାତ୍ରା ମହାପ୍ରଭୁଙ୍କ ଶ୍ରେଷ୍ଠ ଯାତ୍ରା ।

**ମେଘେଶ୍ୱର** - ଅଶୋକାଷ୍ଟମୀ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ରଥଯାତ୍ରାରେ କିଛି ଅସୁବିଧା ଘଟିଲେ ପ୍ରାୟଶ୍ଚିତ୍ତ ସ୍ୱରୂପ ଏହି ଶମ୍ଭୁଙ୍କୁ ଆରାଧନା କରାଯାଏ । ବର୍ଷାର ଅଭାବ, ଅନାବୃଷ୍ଟି ହେଲେ ଏହି ଲିଙ୍ଗଙ୍କୁ ଜଳାଶୟୀ କରାଯାଇ ତନ୍ତ୍ର ଦ୍ୱାରା ଆରାଧନା, ହୋମ, ଯଜ୍ଞ କଲେ ନିଶ୍ଚୟ ବର୍ଷା ହୁଏ । ଏଣୁ ଏହି ଲିଙ୍ଗଙ୍କ ନାମ ମେଘେଶ୍ୱର ବା ମେଘେଶ୍ୱର ।

**ଅଲାବୁକେଶ୍ୱର** - ଏହି ଲିଙ୍ଗକୁ ନାଗେଶ୍ୱର ଲିଙ୍ଗ କୁହାଯାଏ । ଏହି ଲିଙ୍ଗ ସମ୍ବନ୍ଧରେ ଏକ କାହାଣୀ ରହିଛି । ଜଣେ ସିଦ୍ଧ, ସାଧକ, ସାଧୁ ମହାତ୍ମ୍ୟ ତପସ୍ୟାରେ ଶିବଙ୍କୁ ସନ୍ତୁଷ୍ଟ କଲେ, ଶିବ ତାଙ୍କୁ ବର ଦେବା ପାଇଁ କହିଲେ । ସାଧୁ କହିଲେ ମହାପ୍ରଭୁ, ଭିକ୍ଷାପାତ୍ର, ଲାଉ ତୁମ୍ବାକୁ ଏକ ଜଳାଶୟରେ ପରିଣତ କର । ପ୍ରଭୁ ତାହା ହିଁ କଲେ । ଅଲାବୁକେଶ୍ୱରଙ୍କ ସାମ୍ନାରେ ଏକ ଜଳାଶୟ ଅଛି । ଏହି ଜଳାଶୟରେ ସ୍ନାନ କଲେ ପାପମୋଚନ ହୁଏ ।

ମହାପ୍ରଭୁ ଲିଙ୍ଗରାଜଙ୍କ ବେଢ଼ାରେ ରାମେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର ବହୁ ଲିଙ୍ଗ ମଧ ରହିଛନ୍ତି । ଲିଙ୍ଗରାଜ ମନ୍ଦିର ଅଗ୍ନିକୋଣରେ ଏକ ପାର୍ବତୀ, ଶିବ ଲିଙ୍ଗ (ଏକ ଗର୍ତ୍ତ ମଧରେ) ଦେଖାଯାନ୍ତି । ଏହି ଲିଙ୍ଗଠାରୁ ପ୍ରାଚୀନ ଲିଙ୍ଗ ନାହାନ୍ତି, ଏହାଙ୍କୁ ବୁଢ଼ା ଲିଙ୍ଗ ବା ଲିଙ୍ଗରାଜଙ୍କ 'ବାପା, ମା' ବୋଲି ଲୋକେ କହିଥାନ୍ତି ।

ଏତଦ୍ ବ୍ୟତୀତ ସ୍ୱର୍ଣ୍ଣକାଳେଶ୍ୱର, ସୁବର୍ଣ୍ଣେଶ୍ୱର, କୋଟିନୀର୍ଥେଶ୍ୱର, ପାତାଳେଶ୍ୱର, ତାଳେଶ୍ୱର କାଳୀ, କପିଳେଶ୍ୱର, ବାରେଣୀଶ୍ୱର, ଗୋକର୍ଣ୍ଣେଶ୍ୱର ସୁନ୍ଦରେଶ୍ୱର, ଭୀମେଶ୍ୱର, ଯମେଶ୍ୱର ପ୍ରଭୃତି ଶିବମାନେ ଏଠାରେ ବିଦ୍ୟମାନ । କେଦାରଗୌରୀ ମନ୍ଦିର, ରାଜାରାଣୀ ମନ୍ଦିର ଅନନ୍ତ ବାସୁଦେବ ମନ୍ଦିର, ଶ୍ରୀରାମ ମନ୍ଦିର, ଖଣ୍ଡଗିରି ଉଦୟଗିରିର ବୌଦ୍ଧ, ଜୈନ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, ଇନ୍ଦ୍ରେଶ୍ୱର ମନ୍ଦିର ଆଦି ଏଠାରେ ବହୁ ପ୍ରାଚୀନ ମନ୍ଦିର ରହିଛି । ଅନାମିକା ଗୁମ୍ଫା, ନବମୁନୀ ଗୁମ୍ଫା, ସାତଘର ତ୍ରିଶୂଳ ଗୁମ୍ଫା, ଲଲାଟେନ୍ଦୁ କେଶରୀ ଗୁମ୍ଫା, ଆକାଶ ଗଙ୍ଗା, ଦେବସଭା, ଅନନ୍ତ, ରାଣୀ, ଅନାମିକା, ଅଳକାପୁରୀ ଜୟାବିଜୟା ଆଦି ବହୁ ଗୁମ୍ଫା, ଖଣ୍ଡଗିରି ଉଦୟଗିରିରେ ଅଛି ।

ଏହି କ୍ଷେତ୍ର ମଧରେ ବହୁ ମଠ ରହିଛି, ତନ୍ମଧ୍ୟରୁ ଭାରତୀମଠ, କାପାଳୀମଠ । ଏହି ମଠମାନଙ୍କରେ ଶିବ, ଭୈରବ, ଦୁର୍ଗା, କାଳୀ, ଆଦି ମୂର୍ତ୍ତିମାନଙ୍କର ମନ୍ଦିର ଦେଖିବାକୁ ମିଳେ । ଏହି ଲିଙ୍ଗରାଜ ମନ୍ଦିର ଓଡ଼ିଶାର ପ୍ରାଚୀନତମ ମନ୍ଦିର ଖ୍ରୀଷ୍ଟପୂର୍ବ ୧୦-୧୨ ଶତାବ୍ଦୀରେ ନିର୍ମାଣ ହୋଇଥିଲା । ସୋମବଂଶ ବା କେଶ୍ୱରୀ ବଂଶର ମହାରାଜ ଯଯାତି କେଶରୀ ଏହି ମନ୍ଦିର ଆରମ୍ଭ କରିଥିଲେ ଓ ଲଲାଟେନ୍ଦୁ କେଶରୀଙ୍କ ଦ୍ୱାରା ସମାପ୍ତ ହୋଇଥିଲା । କେଶରୀ ବଂଶର ରାଜାମାନେ ଶୈବ ଧର୍ମରେ ଦୀକ୍ଷିତ ହୋଇ ଓଡ଼ିଶା ଓ ଓଡ଼ିଶା ବାହାରେ ଶୈବ ଧର୍ମ ପ୍ରଚାରରେ ପ୍ରୟାସ କରିଥିଲେ । ଏଥିରୁ ପ୍ରତିପାଦିତ ହୁଏ ପ୍ରାଚୀନ କାଳରେ ଏକାମ୍ର ଭୁବନେଶ୍ୱର ଭାରତ ତଥା ଜମ୍ବୁଦ୍ୱୀପ ଭୂଖଣ୍ଡରେ ଶ୍ରେଷ୍ଠ ଶୈବ କ୍ଷେତ୍ର ଥିଲା । ଶୈବ ରାଜଧର୍ମ ଥିଲା । ଏହି କ୍ଷେତ୍ର ପରମ, ପାବନ ଏହି କ୍ଷେତ୍ର ମଙ୍ଗଳମୟ ଓ ପାପ ନାଶକ । ଏହି କ୍ଷେତ୍ରରେ ପ୍ରବେଶ ମାତ୍ରକେ ଜୀବ ଶିବ ଅର୍ଥାତ୍ ଭକ୍ତ ହୋଇଯାଏ । ଧର୍ମ, ଅର୍ଥ, କାମ, ମୋକ୍ଷ, ଚତୁର୍ବର୍ଗ ଫଳ, କାମ-କ୍ରୋଧ-ଲୋଭ-ମୋହ, ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ତ୍ରିତାପରୁ ମୁକ୍ତିମିଳେ ଏହି କ୍ଷେତ୍ରରେ ପ୍ରବେଶ ଓ ଶିବ ଦର୍ଶନରେ ।

**ପର୍ବପର୍ବାଣି** - ଶିବଶକ୍ତିଙ୍କ ସମସ୍ତ ପର୍ବପର୍ବାଣୀ ଏଠାରେ ଶାସ୍ତ୍ରୋକ୍ତ ବିଧିବିଧାନ ଅନୁଯାଇ ପାଳନ କରାଯାଏ । ଜାଗର, ଶୀତଳଷଷ୍ଠୀ,

ଶିବବିବାହ, ଅଶୋକାଷ୍ଟମୀ ରଥଯାତ୍ରା, ମହାପ୍ରଭୁ ଲିଙ୍ଗରାଜଙ୍କ ପ୍ରଧାନ ପର୍ବ । ଦୁର୍ଗାପୂଜା, ଦଶହରା, କାଳୀପୂଜା, ନବରାତ୍ରି ପୂଜା, ବାସନ୍ତୀ ଦୁର୍ଗାପୂଜା ମଧ୍ୟ ଏଠାରେ ଥିବା ଶକ୍ତି (ପାର୍ବତୀ) ମନ୍ଦିରରେ ପାଳନ କରାଯାଏ । ଅଶୋକାଷ୍ଟମୀ ରଥଯାତ୍ରାରେ ରଥ ପରେ ମହାପ୍ରଭୁଙ୍କ ବିଜେ ପ୍ରତିମା ଅଷ୍ଟଶମ୍ଭୁ ରଥ ପରେ ବିଦ୍ୟମାନ ରହନ୍ତି । ଏହି ରଥଯାତ୍ରାରେ ବାହୁଡ଼ା ଯାତ୍ରା ଅନୁଷ୍ଠିତ ହୁଏ ନାହିଁ ।

ଅଧୁନା ଭୁବନେଶ୍ୱର ଓଡ଼ିଶାର ରାଜଧାନୀ । ଏହି ମହାନଗରରେ ଗଳିକନ୍ଦିମାନଙ୍କରେ ଅସଂଖ୍ୟ ଶିବ, ଦୁର୍ଗା, ଚଣ୍ଡୀ, ଜଗନ୍ନାଥ, କାଳୀ, ଗଣେଶ, ସନ୍ତୋଷୀ ମା', ତାରିଣୀ ମା', ନବଗ୍ରହ, ହନୁମାନ ମନ୍ଦିର ଆଦି ଗଢ଼ି ଉଠି ଭୁବନେଶ୍ୱରକୁ ମନ୍ଦିରମୟୀ ନଗରରେ ପ୍ରତିପାଦନ କରିଛି । ରାଜ୍ୟ ଓ କେନ୍ଦ୍ର ସରକାର ବହୁ ନିଗମ, କାର୍ଯ୍ୟାଳୟ, ବିଧାନସଭା, ସରକାରୀ ବ୍ୟାଙ୍କ, ବିଦ୍ୟୁତ୍, ଦୂରଭାଷ ନିଗମ ଆଦିର ମୁଖ୍ୟ କାର୍ଯ୍ୟାଳୟ, ସଚିବାଳୟ ବ୍ୟବସ୍ଥାପକ ଭବନ, ରାଜ୍ୟପାଳଙ୍କ ଭବନ, ନନ୍ଦନକାନନ ଜୀବ ଉଦ୍ୟାନ ଆଦି ରହିଛି । ସ୍ଥଳପଥରେ ଆକାଶପଥରେ ରେଳପଥରେ ଯାତାୟାତରେ ମଧ୍ୟ ସୁବିଧା ରହିଛି । ଉପସଂହାରରେ ଏତିକି କୁହାଯାଇପାରେ ମଙ୍ଗଳମୟ ଲିଙ୍ଗରାଜଙ୍କ କୃପାରେ ଏକାମ୍ରକ୍ଷେତ୍ର ମହନୀୟ ପବିତ୍ର ପାବନ, ପାପନାଶନ ହୋଇଛି । ଭକ୍ତ ଏଠାରେ ପ୍ରବେଶ କରି ମଙ୍ଗଳମୟ ଲିଙ୍ଗରାଜଙ୍କ ନାମ ଉଚ୍ଚାରଣ କରି ଉଚ୍ଚସ୍ୱରରେ ଗାଇ ଉଠେ -

ସର୍ବ ମାଙ୍ଗଲ୍ୟ ମାଙ୍ଗଲ୍ୟଶିବେ ସର୍ବାର୍ଥ ସାଧିକେ,
ଶରଣ୍ୟ ତ୍ରୟମ୍ବକେ ଗୌରୀ ନାରାୟଣୀ ନମୋସ୍ତୁତେ ।
ବ୍ରହ୍ମା ମୁରାରୀ ସୁରାର୍ଚ୍ଚିତ ଲିଙ୍ଗମ୍
ତତ୍ ପ୍ରଣମାମି ଶ୍ରୀସଦାଶିବ ଲିଙ୍ଗମ୍ ।
ଜନ୍ମଜ ପାପ ନିର୍ବାପକ ଲିଙ୍ଗମ୍
ତତ୍ ପ୍ରଣମାମି ଶ୍ରୀଲିଙ୍ଗରାଜ ଲିଙ୍ଗମ୍ ।
ଅଷ୍ଟ ଦରିଦ୍ର ବିନାଶନ ଲିଙ୍ଗମ୍
ତତ୍ ପ୍ରଣମାମି ଶ୍ରୀଲିଙ୍ଗରାଜଲିଙ୍ଗମ୍ ॥

ଗବେଷକ, ଜଗନ୍ନାଥ ତତ୍ତ୍ୱ ଓ ସଂସ୍କୃତି
ପ୍ରବକ୍ତା, ଗୀତା ଭାଗବତ
ଶ୍ରୀରାମ ଚରିତ ମାନସ, ଦୂର ସଞ୍ଚାର କେନ୍ଦ୍ର
ଭଦ୍ରକ - ୭୫୬୧୦୦

# ଗ୍ରାମଶ୍ରୀ ସ୍ୱୟଂ ସହାୟିକା ଗୋଷ୍ଠୀର ସଫଳତା

'ଗୃହିଣୀ ହିସାବରେ ରୋଷେଇ ଘରକୁ ଗଲେ ପ୍ରଥମେ ପରିବା ଚିନ୍ତା । ଆଜିକାଲିର ଦୁନିଆଁରେ ପରିବାର ଯାହା ଦାମ୍, ତାହା ଆମେ ପ୍ରତ୍ୟେକ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଛୁ । ତେଣୁ ସେହି 'ପରିବା'କୁ ମାଧ୍ୟମ କରି ଆମର ଜୀବିକାକୁ ପରିବର୍ତ୍ତିତ କରିବାର ନିଷ୍ପତ୍ତି ନେଲୁ । ଆଜି ୪ ବର୍ଷ ପରେ ସେହି କ୍ଷୁଦ୍ର ଚିନ୍ତାଧାରାର ବାସ୍ତବରୂପ ଆପଣମାନେ ଦେଖୁଛନ୍ତି ଆଉ ଏହା ହିଁ ଆମ ଜୀବନ ଓ ଜୀବିକାର ମୁଖ୍ୟ ମାଧ୍ୟମ ବୋଲି କୁହନ୍ତି ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ 'ଗ୍ରାମଶ୍ରୀ'ର ସଦସ୍ୟାବୃନ୍ଦ ।

ଅନୁଗୁଳ ଜିଲ୍ଲା ତାଳଚେର ଉପଖଣ୍ଡର କଣିହାଁ ବ୍ଲକ୍‌ର ଗହମ ଗ୍ରାମ । ସେହି ଗ୍ରାମରେ ୨୦୦୨ ମସିହାରେ ଶ୍ରୀମତୀ ସୋଭାଗିନୀ ସାହୁଙ୍କ ସଭାପତିତ୍ୱରେ 'ଗ୍ରାମଶ୍ରୀ' ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରାଗଲା । ଯାହାର ସଂପାଦିକା ହେଲେ ପ୍ରମିଳା ବିଶ୍ୱାଳ । ୧୦ ଜଣ ମହିଳା, ସର୍ବୋପରି ସମସ୍ତେ ସେହି ଗ୍ରାମର ବୋହୂ ଏହି ଗୋଷ୍ଠୀର ସଦସ୍ୟାଭାବେ ପରିବା ଚାଷ କରିବାକୁ ନିଷ୍ପତ୍ତି ନେଲେ । କହିବା ବାହୁଲ୍ୟ ଏ ସମସ୍ତ ସଦସ୍ୟାମାନଙ୍କ ପରିବାର ହେଉଛନ୍ତି ବି.ପି.ଏଲ୍. ତାଲିକାଭୁକ୍ତ । ନିଜର ଜମିବାଡ଼ି ନଥିବାରୁ ଗହମ ସ୍କୁଲ ସନ୍ନିକଟ କିଛି ଜମିକୁ ବିଭିନ୍ନ ବ୍ୟକ୍ତିଙ୍କଠାରୁ ବାର୍ଷିକ ଖଜଣା ସୂତ୍ରରେ ଆଣି, କଦଳୀ, ବାଇଗଣ, କୋବି, ବିନ୍ ଓ ଅନ୍ୟାନ୍ୟ ଋତୁଭିତ୍ତିକ ଫସଲ ଚାଷ କରିବାରେ ଲାଗିଲେ । ଏହି ୩ ଏକର ପରିମିତ ଜମିରେ ସଦସ୍ୟାମାନେ ନିଜେ କୋଡାଖୁସା, ପାଣି ମଡ଼ା ଇତ୍ୟାଦି କରିବା ସହ ବିକ୍ରିବଟା କ୍ଷେତ୍ରରେ ମଧ୍ୟ ପାରଦର୍ଶିତା ଦେଖାଇଛନ୍ତି । ସ୍ଥାନୀୟ ପବିତ୍ର ନଗର ଗ୍ରାମ୍ୟ ବ୍ୟାଙ୍କରୁ ଅଢ଼େଇ ଲକ୍ଷ ଟଙ୍କାର ଋଣ ଉଠାଇଛନ୍ତି ଯେଉଁଥିରେ ସବ୍‌ସିଡ଼ିର ପରିମାଣ ୧ ଲକ୍ଷ ଟଙ୍କା ଓ ଏହି ଅର୍ଥକୁ ସେମାନେ ଉକ୍ତ ଚାଷରେ ବିନିଯୋଗ କରିଛନ୍ତି । ବର୍ତ୍ତମାନ ବିଭିନ୍ନ କୃଷି ବିଶେଷଜ୍ଞମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନୂଆ ନୂଆ ଓ ଅଧିକ ଅମଳକ୍ଷମ ଚାଷ କରିବା ସେମାନଙ୍କର ପ୍ରଧାନଲକ୍ଷ୍ୟ । ବାସ୍ତବରେ 'ଗ୍ରାମଶ୍ରୀ' ସ୍ୱୟଂ ସହାୟିକା ଗୋଷ୍ଠୀ ପ୍ରମାଣ କରିଛନ୍ତି 'ନାରୀ ଚାହିଁଲେ ଗୋଟିଏ କାହିଁକି ଶହ ଶହ ପରିବାରର ଭାଗ୍ୟ ମଧ୍ୟ ବଦଳାଇ ଦେଇପାରେ, ଯଦି ତା'ମଧ୍ୟରେ ଆତ୍ମବିଶ୍ୱାସ ରହିଥିବ ।

ସୌଜନ୍ୟ : ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀ, ତାଳଚେର

# ଏକାମ୍ରକ୍ଷେତ୍ର ଭୁବନେଶ୍ୱରର ବିବିଧ ମନ୍ଦିରର ଐତିହ୍ୟ ଓ ପରମ୍ପରା

ସୁଶାନ୍ତ କୁମାର ସ୍ୱାଇଁ

**ଭୁ**ବନେଶ୍ୱର ସର୍ବଭାରତୀୟ ସ୍ତରରେ ଏକ ପ୍ରମୁଖ ପ୍ରାଚୀନ ଶୈବ କ୍ଷେତ୍ର । ତଥାପି ଏଠାରେ ସର୍ବଧର୍ମ ସମନ୍ୱୟ ବାତାବରଣ ସୃଷ୍ଟି ପୂର୍ବକ ପ୍ରତ୍ୟେକ ଧର୍ମକୁ ସମ୍ମାନ କରାଯାଇ ବିଭିନ୍ନ ଐତିହାସିକ କୀର୍ତ୍ତିରାଜ ନିର୍ମାଣ କରାଯାଇଛି । ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ସମୟରୁ ସୂର୍ଯ୍ୟବଂଶୀ ଗଜପତିଙ୍କ ପର୍ଯ୍ୟନ୍ତ ଦୀର୍ଘ ଦୁଇହଜାର ବର୍ଷର ପ୍ରାଚୀନ କୀର୍ତ୍ତି ଦୃଷ୍ଟିଗୋଚର ହୁଏ । ଭୁବନେଶ୍ୱରର ପୂର୍ବନାମ ଏକାମ୍ରକାନନ । ବ୍ୟାସଦେବଙ୍କ ଲିଖିତ ଅଷ୍ଟାଦଶ ପୁରାଣରେ ଏକାମ୍ରକାନନ ବିଷୟରେ ଉଲ୍ଲେଖ ଥିବାରୁ ଏହା ବହୁ ପ୍ରାଚୀନ କ୍ଷେତ୍ର ରୂପେ ପ୍ରସିଦ୍ଧିଲାଭ କରିଆସିଛି । ପୌରାଣିକ ଓ ଐତିହାସିକ ବର୍ଣ୍ଣନାରୁ ଜଣାଯାଏ ଯେ, ଏଠାରେ ପ୍ରଥମେ ଗୌଡ଼ ଦେଶର ରାଜାଶଶାଙ୍କ ଗୋଟିଏ ଶିବ ମନ୍ଦିର ନିର୍ମାଣ କରିଥିଲେ । ସଂପ୍ରତି ସେହି ମନ୍ଦିରର ସ୍ଥିତି ନାହିଁ । ପରବର୍ତ୍ତୀ ସମୟରେ ଏକାମ୍ର କ୍ଷେତ୍ର ବା ଏକାମ୍ରକାନନରେ ଦଶସହସ୍ର ମନ୍ଦିର ଗଢ଼ି ଉଠିଥିଲା । ସମୟସ୍ରୋତରେ ପ୍ରାକୃତିକ ବିପର୍ଯ୍ୟୟ କାରଣରୁ ହେଉ ବା ରକ୍ଷଣାବେକ୍ଷଣ ଅଭାବ ଦୃଷ୍ଟିରୁ ହେଉ ଅନେକଗୁଡ଼ିଏ ମନ୍ଦିର ଭଗ୍ନ ହୋଇ ମାଟିରେ ମିଶିଯାଇଛି । ପୁରୁଣା ଭୁବନେଶ୍ୱର ଅଞ୍ଚଳରେ ବହୁ ଛୋଟବଡ଼ ମନ୍ଦିର ଦେଖିବାକୁ ମିଳେ । ସେଥିମଧ୍ୟରୁ ଅନେକ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ି ରହିଛିତ, ଆଉ କେତେକ ଉତ୍କଳୀୟ କାରୁକଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକୁ ବହନ କରି ଅକ୍ଷୁଣ୍ଣ ଅବସ୍ଥାରେ ଦଣ୍ଡାୟମାନ ହୋଇରହିଛି । ଯାହାକି ଦେଶବିଦେଶର ପର୍ଯ୍ୟଟକମାନଙ୍କୁ ପ୍ରତିଦିନ ଆକୃଷ୍ଟ କରିବା ସଂଗେସଂଗେ ଓଡ଼ିଶାର ଗର୍ବ ଓ ଗୌରବକୁ ମହିମାମଣ୍ଡିତ କରିଥାଏ ।

**ପରଶୁରାମେଶ୍ୱର ମନ୍ଦିର :** ଚକ୍ର କ୍ଷେତ୍ର ଭୁବନେଶ୍ୱରରେ ଯେତେଗୋଟିଏ ଶିବ ମନ୍ଦିର ଅକ୍ଷୁଣ୍ଣ ଅବସ୍ଥାରେ ରହିଛି ତନ୍ମଧ୍ୟରୁ ପରଶୁରାମେଶ୍ୱର ମନ୍ଦିର ଅନ୍ୟତମ । ବହୁ ଗବେଷକ ଓ ଐତିହାସିକମାନଙ୍କ ମତରେ ଶତ୍ରୁଘ୍ନେଶ୍ୱର, ଭରତେଶ୍ୱର ଓ ଲକ୍ଷ୍ମଣେଶ୍ୱର ମନ୍ଦିର ତିନୋଟିର ପରବର୍ତ୍ତୀ ସମୟରେ ଏହା ନିର୍ମିତ । ସତ କହିବାକୁ ଗଲେ କପିଳେଶ୍ୱର ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଥିବା ଶନିଶ୍ଚର ମହାଦେବ ମନ୍ଦିରର ସମକାଳୀନ ମନ୍ଦିର ହେଉଛି ପରଶୁରାମେଶ୍ୱର । କାରଣ ପରଶୁରାମେଶ୍ୱର ମନ୍ଦିର ଦ୍ୱାର ଦେଶରେ ଅଷ୍ଟଗ୍ରହ ଥିବାବେଳେ କପିଳେଶ୍ୱର ଶନିଶ୍ଚର ମହାଦେବ ମନ୍ଦିର ଦ୍ୱାର ଦେଶରେ ଅଷ୍ଟଗ୍ରହ ଦୃଷ୍ଟିଗୋଚର ହୋଇଥାଏ । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ପରଶୁରାମେଶ୍ୱର ମନ୍ଦିର ବହୁ ପ୍ରାଚୀନ । ଏହି ଦୁଇ ମନ୍ଦିର ବ୍ୟତୀତ ଭୁବନେଶ୍ୱରର ଅନ୍ୟାନ୍ୟ ମନ୍ଦିରରେ ନବଗ୍ରହ ପାଟ ଦେଖାଯାଏ । ପ୍ରଖ୍ୟାତ୍ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀମତୀ ଦେବାଳ ମିତ୍ରଙ୍କ ମତରେ ପରଶୁରାମେଶ୍ୱର ମନ୍ଦିର ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ନିର୍ମାଣ କରାଯାଇଥିଲା ।

ଏକାମ୍ର ପୁରାଣରେ ଉଲ୍ଲେଖ ଅଛି ଭଗବାନ ପରଶୁରାମ ମାର୍କେଣ୍ଡୟ ଆଦି ମୁନିମାନଙ୍କ ସଙ୍ଗେ ଆସି ଲିଙ୍ଗରାଜ ମହାପ୍ରଭୁଙ୍କୁ ଦର୍ଶନ କରି ସନ୍ତୁଷ୍ଟ ପୂର୍ବକ ନିଜେ ଏକ ଶିବଲିଙ୍ଗ ପ୍ରତିଷ୍ଠା କରିବା ସଂଗେସଂଗେ ଶିବ ମନ୍ଦିର ନିର୍ମାଣ କରିଥିଲେ । ତେଣୁ ସେହିଦିନଠାରୁ ଏହି ଲିଙ୍ଗର ନାମ ଓ ମନ୍ଦିରର ନାମ ପରଶୁରାମେଶ୍ୱର ଭାବେ ଅଭିହିତ ହେଲା । ସେ ମଧ୍ୟ ବରପ୍ରାପ୍ତ ହୋଇଥିଲେ ଯେ ଆଷାଢ଼ ମାସ ଶୁକ୍ଳ ଅଷ୍ଟମୀ ତିଥିରେ ଯେଉଁ ବ୍ୟକ୍ତି ବିନ୍ଦୁସାଗରରେ ସ୍ନାନ କରି 'ପରଶୁରାମେଶ୍ୱର'ଙ୍କୁ ସଭକ୍ତିରେ ପୂଜାର୍ଚ୍ଚନା କରିବ, ସେ ସକଳ ମୁକ୍ତିର ଅଧିକାରୀ ହୋଇପାରିବ । ପରଶୁରାମେଶ୍ୱର ଲିଙ୍ଗରେ ପ୍ରତ୍ୟୁଷରେ କ୍ଷୀର, ମଧ୍ୟାହ୍ନରେ ଘୃତ ଓ ଅପରାହ୍ନରେ ମଧୁରେ ଅଭିଷେକ ବା ମାର୍ଜନା କଲେ ଭକ୍ତର ସମସ୍ତ କାମନା ପୂରଣ ହୋଇଥାଏ । ଯାହାକି ଏକାମ୍ରପୁରାଣରେ 'ଊନପଞ୍ଚାଶତ୍' ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

'ଏକାମ୍ରଚନ୍ଦ୍ରିକା' ବର୍ଣ୍ଣନା ଅନୁସାରେ ଆଷାଢ଼ ମାସ ଶୁକ୍ଳ ଅଷ୍ଟମୀ ତିଥିରେ ଲିଙ୍ଗରାଜ ମହାପ୍ରଭୁଙ୍କ ବିଜେ ପ୍ରତିମା ଶିବିକାରେ ଆରୋହଣ କରି ପରଶୁରାମେଶ୍ୱର ପୀଠକୁ ଗମନ କରିଥାନ୍ତି । ଯେଉଁ ଭକ୍ତ ଶିବିକାରେ ବସିଥିବା ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କୁ ଦର୍ଶନ କରେ ସେ ମହାପାତକରୁ ମୁକ୍ତ ହୋଇ ଶିବାଲୋକକୁ ଗମନ କରିଥାଏ । ଏହି ସମୟରେ ପୂଜକ ଦ୍ୱାରା ଭେଟ ଆଳତୀ ଓ ନୈବେଦ୍ୟ ଲାଗି କରାଯାଏ । ଶୟନ ଚତୁର୍ଦ୍ଦଶୀ ପୂର୍ବରୁ ମହାପ୍ରଭୁ ପରଶୁରାମେଶ୍ୱରଙ୍କୁ କ୍ଷେତ୍ର ଜଗିବା ଲାଗି କହିବାକୁ ଆସିଥାନ୍ତି ବୋଲି ଲୋକୋକ୍ତି ରହିଅଛି ।

ଏହି ମନ୍ଦିରର ଉଚ୍ଚତା ୪୨ ଫୁଟ । ଦ୍ୱାରର ମୁହଁ ପଶ୍ଚିମ ଦିଗକୁ । ଚାଳଯୁକ୍ତ ଆୟତାକାର ଜଗମୋହନରେ ବାତାୟନର ସୁବିଧା

ରହିଛି । ଗଣ୍ଡିର ରାହାପାଗରେ ବିଧିମତେ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀଙ୍କ ମୂର୍ତ୍ତି ପାର୍ଶ୍ୱଦେବତା ଭାବେ ଖୋଦିତ ହୋଇଛି । ମନ୍ଦିରର ଉତ୍ତର ପାର୍ଶ୍ୱ ଜଗମୋହନ ବାଡ଼ରେ ସପ୍ତମାତୃକା ସହ କାର୍ତ୍ତିକେଶ୍ୱର ଓ ଗଣେଶ ପୂଜା ପାଉଛନ୍ତି । ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ସହସ୍ରଲିଙ୍ଗ ସ୍ଥାପନ କରାଯାଇଛି । ଏହାର ଅବସ୍ଥିତି ବାୟନ କୋଣରେ । ଏହି ମନ୍ଦିରର ବକ୍ରମସ୍ତକ ବା ଭୋଗୁଡ଼ିକ ଅତ୍ୟନ୍ତ ଆକର୍ଷଣୀୟ ଏବଂ ଏଥିରେ ନଟରାଜ ମୂର୍ତ୍ତି ସ୍ଥାପନ କରାଯାଇଛି । ମୋଟ ଉପରେ କହିବାକୁ ଗଲେ ବିମାନ ମନ୍ଦିରଟି ସପ୍ତରଥ ବିଶିଷ୍ଟ ରେଖଶୈଳୀ । ଏହି ମନ୍ଦିରର ଉତ୍ତର ପାର୍ଶ୍ୱ କୁଣ୍ଡ ଏବେ ଥିବାବେଳେ ପଶ୍ଚିମ ପାର୍ଶ୍ୱ ପୁଷ୍କରିଣୀ ପୋତି ଦିଆଯାଇଛି । ଦୁଃଖର କଥା ଉତ୍ତର ଦିଗ ପୁଷ୍କରିଣୀ ଲଟାବୁଦା ଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ଏବଂ ବିଶାଳ ପ୍ରାଚୀର କରାଯାଇଥିବାରୁ ଲୋକଲୋଚନକୁ ଏହା ଆସିପାରେ ନାହିଁ ।

**ଗୌରୀ ମନ୍ଦିର :** ଭୌମକର ବଂଶର ରାଣୀ ଗୌରୀଦେବୀ ୭୯୦ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରାଇଥିଲେ । ଏହି ମନ୍ଦିରର ଦୈର୍ଘ୍ୟ ପୂର୍ବ-ପଶ୍ଚିମ ୧୧ ଫୁଟ ଓ ଉତ୍ତର-ଦକ୍ଷିଣ ୧୩ ଫୁଟ । କାଳକ୍ରମେ ଏହାର ପ୍ରାଚୀନ ଜଗମୋହନ ଭାଙ୍ଗି ପଡ଼ିବାରୁ ଆଜକୁ ୬୦ ବର୍ଷ ତଳେ ପୁନଃ ଜଗମୋହନ ନୂତନ ଶୈଳୀରେ ନିର୍ମିତ ହୋଇଛି । ଗୌରୀଦେବୀଙ୍କ ମନ୍ଦିର ପୂର୍ବମୁଖୀ । କେଦାରଗୌରୀ ପୀଠରେ ଅବସ୍ଥିତ ମନ୍ଦିରମାନଙ୍କ ମଧ୍ୟରେ ଗୌରୀମନ୍ଦିର ସର୍ବପ୍ରଥମେ ନିର୍ମାଣ କରାଯାଇଥିଲା । ତତ୍‌ପରେ କେଦାରନାଥ, ହନୁମାନ, ଦ୍ୱିତକେଦାରନାଥ, ଗଣେଶ, କପିଳେଶ୍ୱର, ତାରିଣୀ ଓ ନାଗେଶ୍ୱର ମନ୍ଦିର ନିର୍ମାଣ କରାଯାଇଛି ।

ଗୌରୀ ମନ୍ଦିର ଶୀର୍ଷରେ କଳସଯୁକ୍ତ ଗୋଟିଏ ଖାଖରାମୁଣ୍ଡି ଥିବାସ୍ଥଳେ ପରବର୍ତ୍ତୀ କାଳରେ ମସ୍ତକ ପୁନର୍ଗଠିତ ହୋଇ ଆଉ ଗୋଟିଏ କଳସଯୁକ୍ତ ଖାଖରାମୁଣ୍ଡି ଯୁକ୍ତ ହୋଇଛି । ଉପରିଭାଗରେ ପଲସ୍ତରା କରାଯାଇ ତା'ଉପରେ ଲାଲରଙ୍ଗର ଲେପ ଦିଆଯାଇଅଛି । ମନ୍ଦିରରେ ମନୁଷ୍ୟାକୃତି ବିଶିଷ୍ଟ ଦଣ୍ଡାୟମାନ ମା' ଗୌରୀ ଦେବୀ ପୂଜା ପାଉଛନ୍ତି । ଜଗମୋହନରେ ମୁଗୁନି ପଥରରେ ନିର୍ମିତ ଏକ ସିଂହ ମୂର୍ତ୍ତି ସ୍ଥାପିତ ହୋଇଛି । ଶୀତଳଷଷ୍ଠୀ, ଶାରଦୀୟ ପୀଠେ ଦଶହରା ଓ ଓଢ଼ଣୀ ଷଷ୍ଠୀ ଦିନ ଗୌରୀଦେବୀଙ୍କୁ ଚନ୍ଦନ ଓ ସୁଗନ୍ଧ ଅତରରେ ସୁସଜ୍ଜିତ ବେଶ କରାଯାଇଥାଏ ।

**କେଦାରନାଥ ବା କେଦାରେଶ୍ୱର ମନ୍ଦିର :** ଦକ୍ଷିଣାଭିମୁଖୀ କେଦାରେଶ୍ୱର ମନ୍ଦିର ସୋମବଂଶୀ ସମୟରେ ନିର୍ମିତ । ସୋମବଂଶୀ ସମୟରେ ନିର୍ମିତ ମନ୍ଦିରଗୁଡ଼ିକରେ ଜଗମୋହନ ନଥାଏ । ନାଗେଶ୍ୱର, ସିଦ୍ଧେଶ୍ୱର ପ୍ରଭୃତି ମନ୍ଦିରରେ ଜଗମୋହନ ଦୃଷ୍ଟିଗୋଚର ହୁଏ ନାହିଁ । କିନ୍ତୁ ପରବର୍ତ୍ତୀ ସମୟରେ କେଦାରେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରରେ ଜଗମୋହନ ବିମାନ ମନ୍ଦିର ସହ ସଂପୃକ୍ତ କରାଯାଇଛି । କେବଳ ମୁଖ୍ୟମନ୍ଦିର/ଗର୍ଭଗୃହ/ବିମାନ ମନ୍ଦିର ନିର୍ମାଣାଧୀନ ମନ୍ଦିରକୁ ଦେଉଳ କୁହାଯାଏ । ଦେଉଳର ପ୍ରବେଶ ଦ୍ୱାରରେ ନବଗ୍ରହ ପାଟ ଏବଂ ତାହା



ନିମ୍ନରେ ଲକ୍ଷ୍ମୀ ନିର୍ମିତ ହୋଇଥାନ୍ତି । ମନ୍ଦିରଟି ବିମାନ ଓ ମୁଖଶାଳା ଏପରି ଦୁଇ ଭାଗରେ ନିର୍ମିତ । ଏହି ମନ୍ଦିରର ସମ୍ମୁଖରେ ପୂର୍ବାଭିମୁଖୀ ଗୌରୀଦେବୀଙ୍କ ମନ୍ଦିର ଅବସ୍ଥିତ । କେଦାରେଶ୍ୱର ମନ୍ଦିରର ଉଚ୍ଚତା ୪୧ ଫୁଟ । ମନ୍ଦିରରେ ପୂଜିତ ଲିଙ୍ଗ ଉପରେ ଏକ ସୂକ୍ଷ୍ମ ଝରଣା ଚିର ପ୍ରବାହିତ । ମନ୍ଦିରର ମୁଖ ଦକ୍ଷିଣ ଦିଗକୁ ଏବଂ ଶକ୍ତିର ମୁଖ ପୂର୍ବ ଦିଗକୁ । ଏହି ମନ୍ଦିର ଠଣାଗୁଡ଼ିକରେ ଯଥା ପୂର୍ବଦିଗରେ ମା' ପାର୍ବତୀ ଏବଂ ପାର୍ବତୀଙ୍କ ପାଦଦେଶରେ ପାଦୁକ କୁଣ୍ଡ । ପଶ୍ଚିମ ଦିଗ ବା ଶିବଲିଙ୍ଗର ଦକ୍ଷିଣରେ ଗଣେଶ ଏବଂ ପାଶ୍ଚାତ ଭାଗରେ କାର୍ତ୍ତିକେଶ୍ୱର ସ୍ଥାପନ କରାଯାଇଛି । ଲିଙ୍ଗ ସମ୍ମୁଖରେ ଅଥବା ଜଗମୋହନରେ ଶିବଙ୍କ ବାହାନ ବୃଷଭ ଦୃଷ୍ଟିଗୋଚର ହୁଏ ନାହିଁ । ଏପରି ଆଉ ଅନ୍ୟ କୌଣସି ଶୈବପୀଠମାନଙ୍କରେ ଦେଖିବାକୁ ମିଳେ ନାହିଁ । ସମ୍ଭବତଃ କେଦାରେଶ୍ୱର ହରହରି ଉପାସନ ପୂର୍ବକ ବେଲ ଓ ତୁଳସୀ ପତ୍ର ଲାଗି ହେଉଥିବା ଯୋଗୁଁ ଲିଙ୍ଗରାଜ ମନ୍ଦିର ପରି ଏଠାରେ ବୃଷଭ ଅପସାରଣ କରାଯାଇଛି । କେଦାରଗୌରୀ ପ୍ରାଙ୍ଗଣ ମଧ୍ୟରେ ପୂଜା ପାଉଥିବା ଗଣେଶ ଉପବିଷ୍ଟ ପୂର୍ବକ ଦକ୍ଷିଣକୁ ଶୁଣ୍ଢ ଭାଙ୍ଗି ରହିଛନ୍ତି । ସେହିପରି ହନୁମାନ ମୂର୍ତ୍ତି ସଂଗେ ଲଙ୍କେଶ୍ୱରୀ ଓ ହନୁମାନଙ୍କ ପୁତ୍ର ମକରଧ୍ୱଜ ପୂଜା ପାଉଛନ୍ତି ।

କେଦାରେଶ୍ୱର ମନ୍ଦିରର ଚତୁଃପାର୍ଶ୍ୱରେ ଚାରିଗୋଟି କୁଣ୍ଡର ପ୍ରସିଦ୍ଧି ରହିଛି । କେଦାରେଶ୍ୱର ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଥିବା ମନ୍ଦିରକୁ ଲାଗି କୁଣ୍ଡର ନାମ ଦୁଗ୍ଧକୁଣ୍ଡ । ଏହି କୁଣ୍ଡର ଜଳକୁ ପିଇଲେ ପେଟରୋଗ ଭଲ ହୋଇଯାଏ । କେଦାରେଶ୍ୱର ଲିଙ୍ଗରୁ ଝରୁଥିବା ଜଳ ମାଟିର ନିମ୍ନଦେଶ ଦେଇ ଏଥିରେ ମିଶିଥାଏ । ପୂର୍ବେ ଏହା ଏକ ପୁଷ୍କରିଣୀ ସଦୃଶ ଥିଲା । ପାଣି ଆଣିବା ପାଇଁ ଲୋକମାନେ ପାହାଚରେ ଯାଇ ଆଣୁଥିବାରୁ ଲୋକଙ୍କ ପାଦ ପାଣିରେ ସ୍ପର୍ଶ କରୁଥିବା ଯୋଗୁଁ ଏହାକୁ କୂପରେ ପରିଣତି କରି ଦିଆଗଲା କାରଣ କେଦାରେଶ୍ୱର ଲିଙ୍ଗରେ ମାର୍ଜଣା ପାଇଁ କ୍ଷୀର, ଗଙ୍ଗାଜଳ, ମହୁ, ଘୃତ ପ୍ରଭୃତି ଆସି ଏହି କୁଣ୍ଡ ବା ପୁଷ୍କରିଣୀରେ ମିଶିଥାଏ । ଭକ୍ତର ଭାବନାରେ ଏହା ପାଦୁକା ହୋଇଥିବାରୁ ଏହାକୁ କୂଅରେ ରୂପାନ୍ତରିତ କରାଯାଇଛି । ପୂର୍ବେ ଏହି ପୀଠରେ ଅନେକ କୋଚିଲାଖାଇ, ଲିମ୍ବ, ଅଶୋକ ପ୍ରଭୃତି ଔଷଧଯୁକ୍ତ ବୃକ୍ଷର ଚେର ଦେଇ ପାଣି ଝରି ଗଚ୍ଛିତ ହେଉଥିବା ଦୃଷ୍ଟିରୁ

ଉକ୍ତ ପାଣିର ଔଷଧୀୟ ଗୁଣ ଅଧିକ ଥିଲା । ସଂପ୍ରତି ବିଶ୍ୱାସ ଓ ଭକ୍ତିରେ ପାଦୁକା ଭାବି ଏହି କୁଣ୍ଡର ପାଣି ସେବନ କରାଯାଉଛି । ପୂର୍ବକୁ ଥିବା କେଦାରକୁଣ୍ଡରେ ମହାଦେବଙ୍କ ପ୍ରସାଦ ପ୍ରସ୍ତୁତି ପାଇଁ ଚାଉଳ, ପନିପରିବା ଧୂଆ ଯାଉଥିବାରୁ ଏହାର ଅନ୍ୟନାମ ଚାଉଳ ଧୂଆକୁଣ୍ଡ ନାମରେ ପରିଚିତ । ଗୌରୀ ମନ୍ଦିର ସମ୍ମୁଖରେ ଥିବା କୁଣ୍ଡକୁ ଗୌରୀକୁଣ୍ଡ ଏବଂ ଗୌରୀକୁଣ୍ଡର ଅପରପାର୍ଶ୍ୱରେ ଥିବା କୁଣ୍ଡକୁ ଶ୍ୟାମାକୁଣ୍ଡ କୁହାଯାଏ । ଯେଉଁ ବ୍ୟକ୍ତି ତେଲ ଲଗାଇ ଆସେ ସେ ଗୌରୀକୁଣ୍ଡରେ ସ୍ନାନ କରେ । ଯିଏ ସାବୁନ ବ୍ୟବହାର କରେ ସେ ଶ୍ୟାମକୁଣ୍ଡରେ ସ୍ନାନ କରିଥାଏ । କାର୍ତ୍ତିକ ପୂର୍ଣ୍ଣିମାରେ ଡଙ୍ଗା ଗୌରୀକୁଣ୍ଡରେ ଭସା ହୋଇଥାଏ ।

**ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର :** କେଦାରଗୌରୀ ଉତ୍ତର ପାର୍ଶ୍ୱରେ ମୁକ୍ତେଶ୍ୱର ଓ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ମୁକ୍ତେଶ୍ୱର ମନ୍ଦିର ସମ୍ମୁଖ ବେଢ଼ା ଉପରେ ଏକ ଧାଡ଼ିରେ ଛଅଗୋଟି କ୍ଷୁଦ୍ର ମନ୍ଦିର ବିଭିନ୍ନ ଆକୃତିରେ ନିର୍ମିତ । ଏହି ମନ୍ଦିରଗୁଡ଼ିକର ଉତ୍ତରପାର୍ଶ୍ୱ ଶେଷ ଭାଗରେ ପଞ୍ଚରଥ ଶୈଳୀରେ ନିର୍ମିତ ୪୦ ଫୁଟ ଉଚ୍ଚ ବିଶିଷ୍ଟ ଗର୍ଭଗୃହ ବା ବିମାନ ମନ୍ଦିର ସହିତ ପରବର୍ତ୍ତୀ ସମୟରେ ସଂଯୋଜିତ ଜଗମୋହନ ଅବସ୍ଥିତ । ମନ୍ଦିର ମଧ୍ୟରେ



ବିଶେଷ କିଛି କାରୁକାର୍ଯ୍ୟ ନାହିଁ କିନ୍ତୁ ଏହା ରେଖଶୈଳୀରେ ନିର୍ମିତ । ଏହାର ମୁଖ ପୂର୍ବ ଦିଗକୁ ଅବସ୍ଥିତ । ଉଦୟ ସୂର୍ଯ୍ୟ କିରଣ ମହାଦେବଙ୍କ ଉପରେ ପଡ଼ିଥାଏ । ମନ୍ଦିରର ଗାତ୍ରଗୁଡ଼ିକରେ ଯଥା ଦକ୍ଷିଣପାର୍ଶ୍ୱରେ ଗଣେଶ, ଉତ୍ତରପାର୍ଶ୍ୱରେ ପାର୍ବତୀ ପଶ୍ଚିମ ପାର୍ଶ୍ୱରେ କାର୍ତ୍ତିକେଶ୍ୱର ଥିବାବେଳେ ମନ୍ଦିରର ନବଗ୍ରହପାଟ ଅବସ୍ଥିତ ସ୍ଥାନରୁ କଢ଼ାଯାଇ ସମ୍ମୁଖ ଭାଗରେ ଥିବା ମଣ୍ଡପର ପାହାଚ ପାଖରେ ପୂର୍ବମୁଖୀ କରାଯାଇ ରଖାଯାଇଛି ।

ପଞ୍ଚରଥ ପ୍ରଣାଳୀ ରେଖଶୈଳୀରେ ନିର୍ମିତ ମୁକ୍ତେଶ୍ୱର ମନ୍ଦିର ବିମାନ ଓ ଜଗମୋହନ ନେଇ ଗଠିତ । ବିମାନର ଅନ୍ତର୍ଭାଗ ଆୟତନ ପୂର୍ବ-ପଶ୍ଚିମ ୭ ଫୁଟ ୨ ଇଞ୍ଚ ଓ ଉତ୍ତର-ଦକ୍ଷିଣ ୭ ଫୁଟ ୬ ଇଞ୍ଚ । ସେହିପରି ଜଗମୋହନର ଅନ୍ତର୍ଭାଗ ଦୈର୍ଘ୍ୟ ପୂର୍ବ-ପଶ୍ଚିମ ୧୫ ଫୁଟ ୩ ଇଞ୍ଚ ଓ ଉତ୍ତର-ଦକ୍ଷିଣ ୧୨ ଫୁଟ ୧ ଇଞ୍ଚ । ମୁକ୍ତେଶ୍ୱର ମନ୍ଦିରବେଢ଼ା ବା ଚତୁଷ୍କୋଣ ଭୂମି ପୂର୍ବ-ପଶ୍ଚିମ ୩୨ ଫୁଟ ୬ ଇଞ୍ଚ, ଉତ୍ତର-ଦକ୍ଷିଣ ୭୭'୪'' । ମନ୍ଦିରକୁ ଘେରି ୪'୪'' ଉଚ୍ଚତା ବିଶିଷ୍ଟ ଏକ କାରୁକାର୍ଯ୍ୟପୂର୍ଣ୍ଣ ବାଡ଼ ରହିଛି । ଦକ୍ଷିଣ ପାର୍ଶ୍ୱର ଏହି ବାଡ଼ ଦେହରେ ଦୁଇ ମୁଣ୍ଡ ବିଶିଷ୍ଟ ୪ ଗୋଟି ମନୁଷ୍ୟ ଶରୀର ଶିଳ୍ପୀ ତା'ର ନିହାଣ ମୁନରେ କାରୁକାର୍ଯ୍ୟର ଚମତ୍କାରିତା ଦେଖାଇପାରିଛି ।

ଏହି ମନ୍ଦିରକୁ ସୋମବଂଶୀ କେଶରୀ ବଂଶ ରାଜା ପ୍ରଥମ ଯଯାତିଙ୍କ ଦ୍ୱାର ୯୬୬ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରାଯାଇଥିଲା । ପ୍ରାଚୀର ଘେରା ଏହି ପଶ୍ଚିମାମୁଖୀ ମନ୍ଦିରର ଉଚ୍ଚତା ୩୪'୪'' ଓ ଜଗମୋହନର ଉଚ୍ଚତା ୨୦'୬.୫'' । ଏହାର ସମ୍ମୁଖରେ ୧୫' ଉଚ୍ଚତା ବିଶିଷ୍ଟ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ଷୋଳପାଖ ବିଶିଷ୍ଟ ଏକ ତୋରଣ ରହିଛି । ଜଗମୋହନର ଭିତରପାର୍ଶ୍ୱ ଉପରିଭାଗରେ ଭାସ୍କର୍ଯ୍ୟର ଉନ୍ନତ ନମୁନାରେ ନିର୍ମିତ ଅଷ୍ଟମାତୃକା ମୂର୍ତ୍ତି ନିର୍ମିତ । ବୋଧହୁଏ ଏପରି ଅଷ୍ଟମାତୃକା ମୂର୍ତ୍ତି ସମଗ୍ର ଭାରତବର୍ଷରେ ବିରଳ । ଏହି ମନ୍ଦିର ବେଢ଼ାରେ ମା' ସରସ୍ୱତୀ, ବିଘ୍ନରାଜ ଗଣେଶ, କାର୍ତ୍ତିକେଶ୍ୱର ପ୍ରଭୃତି ଦେବତା ସ୍ଥାପତ୍ୟ କଳାରେ ନିର୍ମିତ ହୋଇଛନ୍ତି । ବେଢ଼ାର ଦକ୍ଷିଣ ପାର୍ଶ୍ୱରେ ଏକ କୁଣ୍ଡ ରହିଛି । ତାହାର ନାମ ମରିଚିକୁଣ୍ଡ । ଅଶୋକାଷ୍ଟମୀ ଦିନ ଏହି କୁଣ୍ଡର ପାଣିକୁ ନିଲାମ କରାଯାଏ । ଯେଉଁ ବନ୍ଧ୍ୟାନାରୀମାନେ ଏହି କୁଣ୍ଡର ଜଳରେ ସ୍ନାନ କରେ ତା'ର ସନ୍ତାନ ଲାଭ କରନ୍ତି ବୋଲି ବିଶ୍ୱାସ ଅଛି । ମନ୍ଦିରର ପାଶ୍ଚାତ ଭାଗରେ ଅର୍ଥାତ୍ ପୂର୍ବ ଦିଗରେ ବେଢ଼ାକୁ ଲାଗି ଏକ ଜଳକୁଣ୍ଡ ଅଛି । ତାହାକୁ ସିଦ୍ଧକୁଣ୍ଡ ବା ହଳଦୀ କାଠୁଆ କୁଣ୍ଡ କୁହାଯାଏ । ଏହି ମନ୍ଦିରବେଢ଼ା ବାହାରେ ଅର୍ଥାତ୍ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଅନେକ ଛୋଟ ବଡ଼ ମନ୍ଦିର ସହ ନୈରତ କୋଣରେ ସୂର୍ଯ୍ୟ ଘଡ଼ି ଶୋଭା ପାଉଅଛି ।

**ବୈତାଳ ବା ତିନିମୁଣ୍ଡିଆ ମନ୍ଦିର :** ପୁରୁଣା ଭୁବନେଶ୍ୱର ବିନ୍ଦୁସାଗରର ପାଶ୍ଚିମ ପାର୍ଶ୍ୱ ବା ବିଶ୍ରାମଘାଟର ଅନତି ଦୂରରେ ବଡ଼ଦାଣ୍ଡ କଡ଼କୁ (ପୂର୍ବଦିଗ) ଲାଗି ବୈତାଳ ମନ୍ଦିର ଅବସ୍ଥିତ । ଏହା ଅନ୍ୟ ମନ୍ଦିର ଭଳି ଗୋଲାକାର ବା ବର୍ଗାକାର ସଦୃଶ ନହୋଇ ଆୟତାକାର ଭାବେ ନିର୍ମିତ । ଏହାକୁ ଖାକରା ଶୈଳୀ ମନ୍ଦିର କୁହାଯାଏ । ଏଥିରେ ଗୋଟିଏ ଆମଳକ ଶିଳା ଓ କଳସ ପରିବର୍ତ୍ତେ ତିନି ଗୋଟି କଳସ ବିଶିଷ୍ଟ ତିନିଗୋଟି ଆମଳକ ଶିଳା ସ୍ଥାପିତ ହୋଇଛି । ୭୭୪ ଖ୍ରୀଷ୍ଟାବ୍ଦରେ ନିର୍ମିତ ଏହି କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରର ଉଚ୍ଚତା ୩୮ ଫୁଟ । ବିମାନର ଉତ୍ତର-ଦକ୍ଷିଣ ପାର୍ଶ୍ୱର ଲମ୍ୱ ୨୦ ଫୁଟ ଓ ପୂର୍ବ-ପଶ୍ଚିମ ପାର୍ଶ୍ୱର ଓସାର ୧୭'୬'' । ଏହି ମନ୍ଦିର ବିମାନ ଓ ଜଗମୋହନ ନେଇ ଗଠିତ ହୋଇଛି । ଜଗମୋହନ ଦ୍ୱିଚାଳ ଓ ବିଶିଷ୍ଟ । ଜଗମୋହନ ଭିତରକୁ ଆଲୋକ ପ୍ରବେଶ କରିବା ପାଇଁ ଦକ୍ଷିଣ ଦିଗରେ ମନ୍ଦିରର ଉର୍ଦ୍ଧ୍ୱ ଭାଗରେ ଚାରିକୋଣିଆ ଜାଲି ଝରକ ଅଛି । ଅନ୍ୟାନ୍ୟ ମନ୍ଦିର ପରି ଏଥିରେ ଦ୍ୱାରବନ୍ଧ ଉପରେ ନବଗ୍ରହ ଖୋଦିତ ହୋଇନାହାନ୍ତି । ମନ୍ଦିର ଦେହରେ ହରପାର୍ବତୀ, ମହିଷାସୁରମର୍ଦ୍ଦିନୀ ଦୁର୍ଗା, ଅଷ୍ଟଭୂଜା ଦୁର୍ଗା ଓ ଅନ୍ୟାନ୍ୟ ନରମୁଣ୍ଡମାଳିନୀ ଯୋଗିନୀ ମୂର୍ତ୍ତିମାନ ଖୋଦିତ ହୋଇଛି । ମନ୍ଦିର ମଧ୍ୟରେ ଅଷ୍ଟଭୂଜା ଚାମଣ୍ଡା ମୂର୍ତ୍ତି ଏବଂ ଭୈରବ ମୂର୍ତ୍ତି ପୂଜା ପାଉଛନ୍ତି । ଏହି ଚାମଣ୍ଡାଙ୍କ ବେକରେ ନରମୁଣ୍ଡ ମାଳ ଓ ହସ୍ତରେ ଖର୍ପର ଶୋଭା ପାଉଛି । ଏହାଏକ ତାନ୍ତ୍ରିକ ପୀଠ । ପୂର୍ବେ ଏଠାରେ ତନ୍ତ୍ର ଉପଚାରରେ ପୂଜାର୍ଚ୍ଚନା ପୂର୍ବକ ନରବଳୀର ପ୍ରଚଳନ ଥିବା କଥା ଜନଶ୍ରୁତିରୁ ଜଣାଯାଏ ।

ବୈତାଳ ମନ୍ଦିରକୁ ଲାଗି ତାହାର ଉତ୍ତର ଦିଗକୁ ଶିଶିରେଶ୍ୱର ମନ୍ଦିର ଅବସ୍ଥିତ । ଏହା ବିମାନ ଓ ଜଗମୋହନ ନେଇ ଗଠିତ । ମୁଖ୍ୟ

ବିମାନ ମନ୍ଦିରର ଶୀର୍ଷାଂଶ ଭାଙ୍ଗି ଯାଇଥିଲେ ମଧ ପାର୍ଶ୍ୱଦେବତାଗୁଡ଼ିକ ଯଥା- ଚତୁର୍ଭୁଜ ଗଣେଶ ଦକ୍ଷିଣପାର୍ଶ୍ୱ ଗାତ୍ରରେ, ପଶ୍ଚିମ ଗାତ୍ରରେ କାର୍ତ୍ତିକେଶ୍ୱର ଏବଂ ଉତ୍ତରପାର୍ଶ୍ୱ ଗାତ୍ରରେ ଦଶଭୂଜା ମହିଷାସୁରମର୍ଦ୍ଦିନୀ ଦୁର୍ଗା ଅକ୍ଷୁଣ୍ଣ ଅବସ୍ଥାରେ ଯଥାସ୍ଥାନରେ ଅବସ୍ଥାନ କରିଛନ୍ତି । ସ୍ଥାପତ୍ୟ କଳା ଦୃଷ୍ଟିରେ ଏହି ମନ୍ଦିରଟି ଯଥେଷ୍ଟ ସାଦୃଶ୍ୟ ପରଶୁରାମେଶ୍ୱର ମନ୍ଦିର ସହିତ ରହିଲେ ମଧ ତାହାର ସୂକ୍ଷ୍ମ କାରୁକାର୍ଯ୍ୟ ତୁଳିର ଅଧିକ ସାଦୃଶ ବୈତାଳ ମନ୍ଦିର ସହିତ ସାମଞ୍ଜସ୍ୟ ରହିଛି । ଦ୍ୱାରବନ୍ଧର ସୂକ୍ଷ୍ମ କାରୁକାର୍ଯ୍ୟ କଳିଙ୍ଗ ସ୍ଥାପତ୍ୟକୁ ଗୌରବାନ୍ୱିତ କରୁଛି । ଏହି ମନ୍ଦିରର ଅନେକ ସ୍ଥାପତ୍ୟ ପୂରାପୂରି ଭାବେ ବୌଦ୍ଧ ମନ୍ଦିର ସ୍ଥାପତ୍ୟର ପ୍ରତୀକ, ଯାହାକି ରତ୍ନଗିରିର ବୌଦ୍ଧ ବିହାରରେ ଦେଖିବାକୁ ମିଳେ, ଶିଳ୍ପରୀତି ଅନୁଯାୟୀ ଏହି ମନ୍ଦିରଟି ଅଷ୍ଟମ ଶତାବ୍ଦୀରେ ନିର୍ମିତ ବୋଲି ମନେହୁଏ ଏବଂ ବୈତାଳ ମନ୍ଦିରର ସମସାମୟିକ କହିଲେ ସମ୍ଭବତଃ ଭୁଲ୍ ହେବ ନାହିଁ ।

**ବୁଦ୍ଧେଶ୍ୱରୀ ମନ୍ଦିର :** ଏକାମ୍ର ଚନ୍ଦ୍ରିକା, କପିଳ ସଂହିତା ଓ ସ୍ୱର୍ଣ୍ଣାଦ୍ରି ମହୋଦୟ ପ୍ରଭୃତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଭୁବନେଶ୍ୱରର ପୂର୍ବନାମ ଏକାମ୍ରକାନନ ଥିଲା । ଏହି ଏକାମ୍ରକାନନ ମଧରେ ଏକ ଆମ୍ରବୃକ୍ଷ ପାଞ୍ଚଗୋଟି ଶାଖା ବିଦ୍ୟମାନ ଥିଲା । ଗୋଟିଏ ଶାଖା ଉପରିଭାଗକୁ ଅନ୍ୟ ଚାରିଗୋଟି ଶାଖା ଚାରିଦିଗକୁ ଲମ୍ବିଥିଲା । ଏହାର ପରିଧି ଚକ୍ରାକୃତି ସଦୃଶ ବାର କିଲୋମିଟର ପର୍ଯ୍ୟନ୍ତ ଥିଲା । ଏହି ବୃକ୍ଷର ଶାଖାଗୁଡ଼ିକର ଚତୁଃପାର୍ଶ୍ୱର ସୀମାଥିଲା ପୂର୍ବରେ କୁଆଖାଇ - ଦୟାନଦୀ ଅପରପାର୍ଶ୍ୱରେ ଥିବା ଟଙ୍କପାଣି ଗ୍ରାମର ଭାବକୁଣ୍ଡଳେଶ୍ୱର, ଉତ୍ତରରେ ଲକ୍ଷ୍ମୀ ସାଗର ନିକଟବର୍ତ୍ତୀ ଝାରପଡ଼ା ଗ୍ରାମରେ 'ବ୍ରାହୀ ଦେବୀ' ବା 'ବଳହା ଦେବୀ'ଙ୍କ ପର୍ଯ୍ୟନ୍ତ ଓ ଦକ୍ଷିଣରେ ଧଉଳିଗିରି ପାଦଦେଶରେ ଥିବା ବହିରଙ୍ଗେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସଂପ୍ରତି ଉତ୍ତର ଦିଗରେ ଥିବା ବ୍ରାହୀ ଦେବୀ ବୋଧହୁଏ ବୁଦ୍ଧେଶ୍ୱରୀ ରୂପେ ପୂଜା ପାଉଛନ୍ତି, ଏହି ବୁଦ୍ଧେଶ୍ୱରୀ ପୂର୍ବେ ଅନ୍ୟ ଏକ ସ୍ଥାନରେ ପୂଜା ପାଉଥିଲେ । ତତ୍ପରେ ସେଠାରୁ ସ୍ଥାନାନ୍ତରିତ ହୋଇ ୨୦୩ ନମ୍ବର ଜାତୀୟ ରାଜପଥ କଡ଼ରେ (କଟକ ରୋଡ଼) ପୂଜା ପାଉଛନ୍ତି । ତାଙ୍କର ସ୍ୱତନ୍ତ୍ର ମନ୍ଦିର ସହ ଅନ୍ୟାନ୍ୟ ଦେବ ଦେବୀ ତାଙ୍କ ପ୍ରାଙ୍ଗଣରେ ପରବର୍ତ୍ତୀ ସମୟରେ ସ୍ଥାପନ କରାଯାଇଛି । ବୁଦ୍ଧେଶ୍ୱରୀ ବୌଦ୍ଧ ଧର୍ମ ବଜ୍ରଯାନି ଦେବୀ ଅଟନ୍ତି । କିନ୍ତୁ ଏବେ ହିନ୍ଦୁ ଦେବୀ ରୂପେ ଅଭିହିତ ପୂର୍ବକ ଏକାମ୍ରକ୍ଷେତ୍ରର ଉତ୍ତରଦିଗକୁ ଜଗି ରହିଛନ୍ତି । ଅର୍ଥାତ୍ ରକ୍ଷାକର୍ତ୍ତୀ ଭାବେ ତାଙ୍କ କାର୍ଯ୍ୟ ସଂପାଦନା କରୁଛନ୍ତି । ଦେବୀଙ୍କର ଗଠନ ଏବଂ ସ୍ଥାପନା ସମୟ ଆନୁମାନିକ ନବମ ଖ୍ରୀଷ୍ଟାବ୍ଦ ହେବ ବୋଲି ଅନୁମାନ କରାଯାଏ ।

**ମୋହିନୀ ମନ୍ଦିର :** ବିନ୍ଦୁ ସାଗର ଦକ୍ଷିଣକୂଳରେ ପୂର୍ବାଭିମୁଖୀ ମୋହିନୀ ମନ୍ଦିର ଅବସ୍ଥିତ । ଏହାକୁ ୬୮୭ ଖ୍ରୀଷ୍ଟାବ୍ଦରେ ମୋହିନୀ ଦେବୀ (ରାଣୀ) ନିର୍ମାଣ କରାଇଥିଲେ । ଏହି ମନ୍ଦିର ବିମାନ ଓ ଜଗମୋହନକୁ ନେଇ ଗଠିତ । ମନ୍ଦିରର ଉଚ୍ଚତା ୩୧ ଫୁଟ । ଏଥିରେ ନୃତ୍ୟରତା ଦଶଭୁଜା ଚାମୁଣ୍ଡା ମୂର୍ତ୍ତି ପୂଜା ପାଉଛନ୍ତି । ମନ୍ଦିରର ପାର୍ଶ୍ୱଦେବତା ରୂପେ ପାର୍ବତୀ, କାର୍ତ୍ତିକେୟ ଓ ଗଣେଶ ଯଥାସ୍ଥାନରେ ଅବସ୍ଥାନ କରିଛନ୍ତି । ମୁଖଶାଳାରେ ଷଡ଼ଭୁଜା ମହିଷାମର୍ଦ୍ଦିନୀ ଦେବୀମୂର୍ତ୍ତି ରହିଛନ୍ତି । ତାହା ଅନ୍ୟତ୍ର ଆସି ଏଠାରେ ସ୍ଥାପିତ ହୋଇଥିବାର ଜଣାଯାଏ । ମନ୍ଦିର ବାଡ଼ରେ କେତୋଟି ଲିପି ଖୋଦିତ ହୋଇଛି । ମନ୍ଦିର ନିର୍ମାଣ ବେଳର କାରୁକାର୍ଯ୍ୟଗୁଡ଼ିକ ଅସଂପୂର୍ଣ୍ଣ ହେବାପରି ମନେ ହେଉଛି । ପରଶୁରାମେଶ୍ୱର ମନ୍ଦିର ପରି ଏହାର ଗଠନ ଶୈଳୀ ।

**ଭୁବନେଶ୍ୱରୀ ମନ୍ଦିର :** ଲିଙ୍ଗରାଜ ମନ୍ଦିର ପ୍ରାଙ୍ଗଣ ମଧରେ ଲିଙ୍ଗରାଜ ମନ୍ଦିରର ଜଗମୋହନର ଉତ୍ତରପାର୍ଶ୍ୱକୁ ଲାଗି ୨୫ ଫୁଟ ଉଚ୍ଚତା ବିଶିଷ୍ଟ ଜଗମୋହନ ଯୁକ୍ତ ଖାକର । ଶୈଳୀ ମନ୍ଦିର ମଧରେ ଦେବୀ ପୂଜା ପାଉଛନ୍ତି । ଦେବୀ ଗର୍ଭଗୃହରେ ମାଟି ପତନଠାରୁ ଅଳ୍ପ ଗଭୀରରେ ଅବସ୍ଥାନ ପୂର୍ବକ ଉପାସିତ ହେଉଛନ୍ତି । ଓଡ଼ିଶାର ଅନ୍ୟାନ୍ୟ ଅଳ୍ପ ଗଭୀରରେ ଅବସ୍ଥାନ ପୂର୍ବକ ଉପାସିତ ହେଉଛନ୍ତି । ଓଡ଼ିଶାର ଅନ୍ୟାନ୍ୟ ଶୈବପୀଠମାନଙ୍କରେ ଶିବଙ୍କର ଅର୍ଦ୍ଧାଙ୍ଗିନୀ ରୂପେ ପାର୍ବତୀଙ୍କୁ ପ୍ରାଧାନ୍ୟ ଦିଆଯାଇଥିବାବେଳେ, ଏକାମ୍ରକ୍ଷେତ୍ର ଭୁବନେଶ୍ୱରରେ ଦେବୀ ଭୁବନେଶ୍ୱରୀ ହେଉଛନ୍ତି ଶିବଙ୍କ ଶକ୍ତି । ଅର୍ଥାତ୍ ଦେବୀ ଭୁବନେଶ୍ୱରୀ ହେଉଛନ୍ତି କୃତିବାସ ଲିଙ୍ଗରାଜ ମହାପ୍ରଭୁ ତ୍ରିଭୁବନେଶ୍ୱରଙ୍କ ଧର୍ମପତ୍ନୀ । ଯାହାଙ୍କର ନାମ ଲୋକାଚାର ମତରେ ସ୍ୱନାମଧନ୍ୟା ହୋଇଛି ଗୋପାଲୁଣୀ ବା ଗୋପାଳିନୀ । ଲିଙ୍ଗରାଜଙ୍କ ସହିତ ମା' ଭୁବନେଶ୍ୱରୀ ବିଭିନ୍ନ ପର୍ବପର୍ବାଣିରେ ସାମିଲ ହୁଅନ୍ତି । ରାତିରେ ପ୍ରତ୍ୟେକ ମନ୍ଦିର ଏପରିକି ଲିଙ୍ଗରାଜଙ୍କ ମନ୍ଦିର ପହୁଡ଼ ପଡ଼ିଲା ପରେ ମା' ଭୁବନେଶ୍ୱରୀଙ୍କ ରାତ୍ରକାଳୀନ ଧୂପ ଓ ନୈବେଦ୍ୟ ଲାଗି କରାଯାଇ ପହଡ଼ ପଡ଼େ । ଶ୍ରୀକ୍ଷେତ୍ର ପୁରୀରେ ଅନ୍ନପ୍ରସାଦ ପ୍ରଥମେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଲାଗି କରାଯାଏ ଏବଂ ତତ୍ପରେ ସେହି ପ୍ରସାଦକୁ ମା' ବିମଳାଙ୍କୁ ସମର୍ପଣ ପରେ ତାହା ମହାପ୍ରସାଦରେ ପରିଣତ ହୋଇଥାଏ । ଠିକ୍ ସେହିପରି ଚକ୍ରକ୍ଷେତ୍ର ଭୁବନେଶ୍ୱରରେ ଲିଙ୍ଗରାଜ ମହାପ୍ରଭୁଙ୍କ ନୈବେଦ୍ୟ ଲାଗି ପରେ ତାହା ପ୍ରସାଦ ହୁଏ । କିନ୍ତୁ ଭୁବନେଶ୍ୱରୀଙ୍କୁ ସେହି ପ୍ରସାଦ ଲାଗି ହେଲେ ମହାପ୍ରସାଦରେ ରୂପାନ୍ତରିତ ହୋଇଥାଏ । ଦେବୀ ଭୁବନେଶ୍ୱରୀ ହେଉଛନ୍ତି ଭୁବନେଶ୍ୱରର ଅଧିଷ୍ଠାତ୍ରୀ ଦେବୀ ।

**ଶ୍ରୀଲିଙ୍ଗରାଜ ମନ୍ଦିର :** ଦଶମ ଶତାବ୍ଦୀରେ ନିର୍ମିତ ଶ୍ରୀଲିଙ୍ଗରାଜ ମନ୍ଦିର ଏକାମ୍ରକ୍ଷେତ୍ର ଭୁବନେଶ୍ୱରରେ ସର୍ବଶ୍ରେଷ୍ଠ ମନ୍ଦିର ଭାବେ ସର୍ବଜନ ବିଦିତ । ଲିଙ୍ଗରାଜ ମନ୍ଦିରକୁ କେଶରୀ ବଂଶର ଚାରିଜଣ ସମ୍ରାଟ ଲଗାତାର ମନ୍ଦିର ନିର୍ମାଣ କରିଥିଲେ । ମାତ୍ର ଇତିହାସ ସୂର୍ଯ୍ୟ କେଶରୀଙ୍କୁ ବାଦ ଦେଇ ଅନ୍ୟ ତିନିଜଣ ରାଜାଙ୍କୁ ସ୍ୱୀକାର କରିଛି । ଇତିହାସ ପୃଷ୍ଠାରେ ବର୍ଣ୍ଣିତ ଦଶମ ଶତାବ୍ଦୀରେ ଯଯାତି କେଶରୀ ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ସତ୍ୟ ଏହା ପୂରଣ କରିବାକୁ ସତଚେଷ୍ଟା କରିଥିଲେ ଅନନ୍ତ ବର୍ମା ବା ଅନନ୍ତ କେଶରୀ କିନ୍ତୁ ଲଲାଟ କେଶରୀ ବା ଲଲାଟେନ୍ଦୁ କେଶରୀ ଏକାଦଶ ଶତାବ୍ଦୀରେ ସମାପ୍ତ

କରିଥିଲେ । ଲିଙ୍ଗରାଜ ମନ୍ଦିରର ମୁଖ୍ୟ ଦେଉଳ ବା ଗର୍ଭଗୃହର ଉଚ୍ଚତା ୧୮୫ ଫୁଟ । ମତାନ୍ତରରେ ୧୬୦ ଫୁଟ ଏବଂ ୧୨୭ ଫୁଟ । ଏହି ଦେଉଳ ରାହାପାଗ, ଅନୁରାହା ପାଗ ଓ କନିକ ପାଗରେ ବିଭକ୍ତ ପୂର୍ବକ ପଞ୍ଚରଥଯୁକ୍ତ ରେଖ ଶୈଳୀ ନିର୍ମିତ । ଏହାର ଭୂତଳ ଆୟତନ ୫୨' x ୫୨' । ମନ୍ଦିର ପା'ଭାଗରେ ପାଞ୍ଚଗୋଟି କାନିସ୍ ଅଛି ଏବଂ ଏହାର ଉଚ୍ଚତା ୩.୨୦ ମି. । ପା' ଭାଗର ପ୍ରଥମ ଭାଗକୁ ଖୁରା ଯାହାକି ଗୋରୁମାନଙ୍କ ଖୁରା ସଦୃଶ । ଦ୍ୱିତୀୟ ଭାଗ କୁମ୍ଭ ନାମରେ ଅଭିହିତ। ଏହା କଳସର ଏକ ଭାଗ ସଦୃଶ ଦେଖାଯାଏ । ତୃତୀୟ ପତଳା ଧାରକୁ 'ପଟି' କୁହାଯାଏ । ଏହା ଏକ ସରଳ ଓ ସଂକୀର୍ଣ୍ଣ ଧାରରେ ନିର୍ମିତ । ଚତୁର୍ଥ ଅଂଶକୁ କନି କୁହାଯାଏ । ଏକ ଧାରୁଆ କୋଣ ସୃଷ୍ଟି କରିଥିବାରୁ ଏହାର ନାମ ସମ୍ଭବତଃ ଏହିପରି ହୋଇଥାଇପାରେ । ସର୍ବୋଚ୍ଚରେ ଥିବା କିଞ୍ଚିତ୍ ଧାରରେ ବସନ୍ତ ଋତୁରେ ପଲ୍ଲବିତ ପତ୍ରଫୁଲ ଓ ପ୍ରକୃତିର ପ୍ରତିମା ଆଦି ଖୋଦିତ ହେଉଥିବାର ଜଣାଯାଏ । ବୋଧହୁଏ ସେଥିପାଇଁ ଏହାକୁ ଲିଙ୍ଗରାଜ ମନ୍ଦିର ନିର୍ମାଣ ପରେ ଶ୍ରୀମନ୍ଦିର ନିର୍ମାଣ ହୋଇଥିବାରୁ ସେଥିରେ ପୀଷ୍ଟ ଦେଖିବାକୁ ମିଳେ । ପ୍ରାୟତଃ ଏକ ବିକଶିତ ରେଖ ଦେଉଳରେ ପୀଷ୍ଟ, ବାଡ଼, ଗଣ୍ଡି ଓ ମସ୍ତକ ଥିବାର ଜଣାଯାଏ । ସୋମବଂଶ ସମୟର ମନ୍ଦିରମାନଙ୍କରେ ଏହା ନଥିବାର ଜଣାଯାଏ । କିନ୍ତୁ ଗଙ୍ଗବଂଶ ସମୟର ମନ୍ଦିର ଯଥା- ଶ୍ରୀମନ୍ଦିର ବା ଜଗନ୍ନାଥ ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିର, କୋଣାର୍କ ସୂର୍ଯ୍ୟ ମନ୍ଦିର ଯମେଶ୍ୱର ମନ୍ଦିରରେ ପୀଷ୍ଟ ଥିବାର ଦୃଷ୍ଟିଗୋଚର ହୁଏ ।

ଲିଙ୍ଗରାଜ ମନ୍ଦିରର ଜଗମୋହନ ଭୂତଳ ଆୟତନ ସଂପୂର୍ଣ୍ଣ ବର୍ଗକ୍ଷେତ୍ର ନୁହେଁ । ଏହାର ମାପ ୫୦' x ୫୫' । ଏହା ଛୋଟ ସନ୍ଧିସ୍ଥଳ ଦ୍ୱାରା ଗର୍ଭଗୃହ ସହିତ ସଂଯୋଗ କରାଯାଇଛି । ଏହାର ବାଡ଼ ଦକ୍ଷିଣ ପାର୍ଶ୍ୱ ରାହା ଉପରେ ଦଣ୍ଡଯୁକ୍ତ ଏକ ଗବାକ୍ଷ । ବାଣୟନ ଦେଖାଯାଏ । ବୋଧହୁଏ ପରବର୍ତ୍ତୀ ସମୟରେ ଦକ୍ଷିଣ ପାର୍ଶ୍ୱ ଗବାକ୍ଷକୁ ଭାଙ୍ଗି ମନ୍ଦିର ଭିତରକୁ ପ୍ରବେଶ ପାଇଁ ମୁଖ୍ୟଦ୍ୱାର କରାଯାଇଛି । ଜଗମୋହନରେ ଚାରୋଟି ଚତୁଷ୍କୋଣ ଖମ୍ଭ । ପା' ଭାଗରେ ପାଞ୍ଚପ୍ରକାର କାନିସ୍ ଦେଖିବାକୁ ମିଳେ । ବିମାନ ଦେଉଳ ପରି ଏହାର ନକ୍ସା ମଧ ପଞ୍ଚରଥ । ଅନୁରାହରେ ବିଡାଳ, ମୈଥୁନ ଓ ଅଳସକନ୍ୟାର ମୂର୍ତ୍ତି ବିମଣ୍ଡିତ । ଭୂମି ପତନଠାରୁ ଜଗମୋହନର ଉଚ୍ଚତା ୯୫ ଫୁଟ ବାହ୍ୟ ପାର୍ଶ୍ୱ ନିର୍ମିତ ବାଡ଼ର ଉଚ୍ଚତା ପ୍ରାୟ ୮.୬୦ ମିଟର ହୋଇଥିବା ବେଳେ ପୀଢ଼ ଓ ଘଣ୍ଟଯୁକ୍ତ ଚାଳର ଉଚ୍ଚତା ପ୍ରାୟ ୧୯୦୦ ମିଟର ଏହା ଉପରେ ପ୍ରାୟ ୧.୫୦ ମିଟର ଉଚ୍ଚତା ବିଶିଷ୍ଟ କଳସ ଅଛି । ଏହି ଚାଳର ଚତୁଃପାର୍ଶ୍ୱରେ ସିଂହମୂର୍ତ୍ତି ଯୁକ୍ତ ବଜ୍ରମସ୍ତକ ଧାରର ବର୍ଣ୍ଣନାତ୍ମକ ମୂର୍ତ୍ତି ଦେଖିବାକୁ ମିଳେ । ଦେଉଳ ସହିତ ଜଗମୋହନକୁ ସମତା ରକ୍ଷାକରି ଏପରି କରାଯାଇଥିବାର ଅନୁମାନ କରାଯାଏ ।

ଲିଙ୍ଗରାଜ ମନ୍ଦିରର ନାଟ ମନ୍ଦିର ଓ ଭୋଗମଣ୍ଡପ ପ୍ରାୟତଃ ଗଙ୍ଗବଂଶର ସମ୍ରାଟ ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ସମୟର । ତ୍ରୟୋଦଶ ଶତାବ୍ଦୀରେ ଜଗମୋହନଠାରୁ କିଛି ଦୂରରେ ନାଟମନ୍ଦିର ନିର୍ମାଣ କରାଯାଇଥିଲା । ଏହି ନାଟମଣ୍ଡପ ବା ନାଟମନ୍ଦିର ପରବର୍ତ୍ତୀ ସମୟରେ ଭୋଗମଣ୍ଡପରେ ପରିଣତ ହେଲା । ଏହାର ବହିଃଭାଗର ଆୟତନ ଥିଲା ୫୬' x ୫୬' ଏବଂ ଅନ୍ତଭାଗର ଆୟତନ ହେଲା ୪୨' x ୪୨' । ତ୍ରୟୋଦଶ ଶତାବ୍ଦୀ ଶେଷ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭରେ ଜଗମୋହନ ସାମନାରେ ଥିବା ଖାଲିସ୍ଥାନରେ ଏକ ପୀଠ ନିର୍ମିତ ହେଲା । ଉକ୍ତ ଖୋଲାପୀଠରେ କୃତିବାସ ଲିଙ୍ଗରାଜଙ୍କ ନାନାପ୍ରକାର ପୂଜାର୍ଚ୍ଚନା ଓ ଉତ୍ସବମାନ ପାଳିତ ହେଲା । ଏହି ପୀଠ ଉପରେ ନୂତନ ନାଟମନ୍ଦିର ନିର୍ମାଣ କରାଗଲା । ଏହାଦ୍ୱାରା ପୂର୍ବନାଟ ମନ୍ଦିର ଭୋଗମଣ୍ଡପ ଏବଂ ପୀଠଟି ନୂତନ ନାଟମନ୍ଦିର ରୂପେ ବ୍ୟବହୃତ ହେଲା । ଏହାଦ୍ୱାରା ଭକ୍ତମାନଙ୍କୁ ଦୃଷ୍ଟିରେ ରଖି ଭୋଗ ସାମଗ୍ରୀ ବୃଦ୍ଧି ଘଟିଲା । କାରଣ ସେତେବେଳକୁ ଲିଙ୍ଗରାଜ ହରିହର ଉପାସନା ପୂର୍ବକ ସ୍ୱୀକୃତି ପାଇ ସାରିଲେଣି । ନୂତନ ନାଟମନ୍ଦିର ଦୈର୍ଘ୍ୟ ୫୨ ଫୁଟ ଓ ପ୍ରସ୍ଥ ୪୮ ଫୁଟ । ଏହି ନାଟମନ୍ଦିରର ପଶ୍ଚିମପାର୍ଶ୍ୱରେ ଜଗମୋହନ ଓ ପୂର୍ବପାର୍ଶ୍ୱରେ ପରିବର୍ତ୍ତିତ ଭୋଗମଣ୍ଡପ ରହିଲା ।

ଶ୍ରୀଲିଙ୍ଗରାଜ ମନ୍ଦିରରେ ଶିବ ଉପାସନା ପ୍ରଚଳିତ ଥିବା ସତ୍ତ୍ୱେ ଏଠାରେ ହରିହର ଉପାସନା ପରିଦୃଷ୍ଟ ହୋଇଥାଏ । ଏହାର କାରଣ ହେଉଛି ତୃତୀୟ ଅନଙ୍ଗଭୀମ ଗଙ୍ଗବଂଶର ସମ୍ରାଟ ଥିଲେ ଏବଂ ସେ ଥିଲେ ବୈଷ୍ଣବ ଧର୍ମ ଗ୍ରହଣ ପୂର୍ବକ ଶ୍ରୀଜଗନ୍ନାଥଙ୍କ ପୂଜା କରୁଥିଲେ । କିନ୍ତୁ ତ୍ରୟୋଦଶ ଶତାବ୍ଦୀରେ ସେ ଯେତେବେଳେ ଲିଙ୍ଗରାଜ ମନ୍ଦିରର ତତ୍ତ୍ୱାବଧାନ ନିଜ ହସ୍ତକୁ ନେଲେ, ଲିଙ୍ଗରାଜ ମନ୍ଦିରର ରୀତିନୀତି, ପୂଜାର୍ଚ୍ଚନା, ବିଧିବିଧାନ ଉପରେ କିଛି ପରିବର୍ତ୍ତନ କଲେ । ଭୁବନେଶ୍ୱରରେ ଶୈବ ସଂସ୍କୃତିରେ ବୈଷ୍ଣବ ସଂସ୍କୃତି ଆରୋପିତ ପୂର୍ବକ ଏଠାରେ ଏକତ୍ର ହରିହର ଉପାସନା ପ୍ରଚଳନ କଲେ । ତେଣୁ ସେ ଶକ୍ତିରୁ ଲିଙ୍ଗକୁ ଅପସାରିତ କରି ବେଲ ଓ ତୁଳସୀ ପତ୍ର ଲାଗି କରାଇଲେ । ମୁଖଶାଳରେ ଥିବା ବିଶାଳ ବୃଷଭକୁ ସେଠାରୁ ଉଠାଇ ଉତ୍ତରପାର୍ଶ୍ୱ ସ୍ୱତନ୍ତ୍ର ଗୃହରେ ଅବସ୍ଥାପନ କଲେ । ତତ୍‌ସଂଗେସଂଗେ କୁଡୁଆରେ ଅନ୍ନ ମହାପ୍ରସାଦ ଲାଗି କରାଗଲା । ଏତଦ୍‌ବ୍ୟତୀତ ମନ୍ଦିର କଳସରେ ତ୍ରିଶୂଳ ପରିବର୍ତ୍ତେ ଆୟୁଧ ରୂପେ ପିନାକି ଧନୁଶୋଭା ପାଇଲା । ଏଥିସହିତ ମନ୍ଦିରର ଚତୁଃପାର୍ଶ୍ୱରେ ବୈଷ୍ଣବ ମନ୍ଦିର ନିର୍ମାଣ କରାଗଲା । ଲିଙ୍ଗରାଜ ମନ୍ଦିରର ଅଗ୍ନିକୋଣରେ ଲକ୍ଷ୍ମୀନୃସିଂହ, ଉତ୍ତରରେ ଅନନ୍ତେଶ୍ୱର (ବିଷ୍ଣୁ ମନ୍ଦିର), ପଶ୍ଚିମରେ ପତିତପାବନ (ଶ୍ରୀଜଗନ୍ନାଥ), ଦକ୍ଷିଣରେ ସତ୍ୟ ନାରାୟଣ ଓ ଲକ୍ଷ୍ମୀନାରାୟଣ (ରାଧାକୃଷ୍ଣ) ମନ୍ଦିର ନିର୍ମାଣ ପୂର୍ବକ ଦକ୍ଷିଣଘର କରାଯାଇ ଚଳନ୍ତି ପ୍ରତିମା ବା ବିଜେ ପ୍ରତିମା ପ୍ରଚଳନ କରାଗଲା । ଚଳନ୍ତି ପ୍ରତିମା ଯୋଗୁଁ ଶ୍ରୀଲିଙ୍ଗରାଜଙ୍କର ବିବିଧ ବହିର୍ଯାତ୍ରାମାନ ଅନୁଷ୍ଠିତ ହେଲା । ଅପସାରିତ ଲିଙ୍ଗ ପରବର୍ତ୍ତୀ ସମୟରେ ଲିଙ୍ଗରାଜ ମନ୍ଦିର ପ୍ରାଙ୍ଗଣର ଦକ୍ଷିଣ ଦିଗରେ ବୈଦ୍ୟନାଥ ହୋଇ ପୂଜା ହେଲେ ।

ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କର ଚଉଷଠି ପ୍ରକାର ଭୋଗକୁ ମହାସୁଆର ସେବକ ରନ୍ଧନ କରି ପ୍ରତ୍ୟେକ ଧୂପରେ ଯଥାନିୟମରେ ସ୍ଥାପନ କରନ୍ତି । ପ୍ରତ୍ୟୁଷରୁ ମହାପ୍ରଭୁ ଲିଙ୍ଗରାଜଙ୍କର ବାଲଧୂପ । ଏହା ପରେ ସକାଳ ଧୂପ ପ୍ରାୟ ପୂର୍ବାହ୍ନ ୧୦.୩୦ ବା ୧୧.୦୦ ଘଟିକା ବେଳକୁ ଲାଗି କରାଯାଏ । ଦିନ ୧ ଘଟିକାରେ ମଧାହ୍ନ ଧୂପ, ଦିନ ୩ ଘଟିକାରେରେ ଦ୍ୱିପ୍ରହର ଧୂପ । ସନ୍ଧ୍ୟା ଧୂପ ୭.୩୦ ଘଟିକାରେ ଲାଗିଥାଏ । ମାର୍ଗଶିରକୁ ବର୍ଷର ପ୍ରଥମ ମାସ ମନ୍ଦିରରେ ଧରାଯାଇଥାଏ । ଏହି କ୍ରମରେ ଲିଙ୍ଗରାଜଙ୍କର ଚତୁର୍ଦ୍ଦଶ ଯାତ୍ରା ହେଲା - ୧. ପ୍ରଥମାଷ୍ଟମୀ (ମାର୍ଗଶୀର କୃଷ୍ଣ ଅଷ୍ଟମୀ), ୨. ପ୍ରାବରଣ ଷଷ୍ଠୀ (ମାର୍ଗଶୀର ଶୁକ୍ଳ ଷଷ୍ଠୀ), ୩. ପୁଷ୍ୟାଭିଷେକ (ପୌଷ ପୂର୍ଣ୍ଣିମା), ୪. ମକର ସଂକ୍ରାନ୍ତି (ମାଘ ସଂକ୍ରାନ୍ତି), ୫. ମାଘ ସପ୍ତମୀ (ମାଘ ଶୁକ୍ଳ ସପ୍ତମୀ), ୬. ଶିବରାତ୍ରୀ (ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ), ୯. ଚନ୍ଦନଯାତ୍ରା (ବୈଶାଖ ଶୁକ୍ଳ ତୃତୀୟ), ୧୦. ପରଶୁରାମ ଅଷ୍ଟମୀ (ଆଷାଢ଼ ଶୁକ୍ଳ ଅଷ୍ଟମୀ), ୧୧. ଶୟନ ଚତୁର୍ଦ୍ଦଶୀ (ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ), ୧୨. ପବିତ୍ରାରୋପଣ (ଶ୍ରାବଣ ଶୁକ୍ଳ ଚତୁର୍ଦ୍ଦଶୀ), ୧୩. ଯମ ଦ୍ୱିତୀୟା (କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା), ୧୪. ଉତ୍‌ଥାପନ ଚତୁର୍ଦ୍ଦଶୀ (କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ), ଏତଦ୍‌ବ୍ୟତୀତ ଲିଙ୍ଗରାଜର ଦ୍ୱାଦଶ ଉପଯାତ୍ରା ପାଳିତ ହୋଇଥାଏ ।

**ରାଜାରାଣୀ ମନ୍ଦିର :** ଐତିହାସିକମାନେ ସୋମବଂଶୀ ନିହୁଷ ବା ଇନ୍ଦ୍ରରଥଙ୍କ ରାଜତ୍ୱକାଳ ଖ୍ରୀ:ଅ: ୧୦୨୦ରେ ରାଜାରାଣୀ ମନ୍ଦିର ନିର୍ମିତ । ମାଦଳାପାଞ୍ଜିରେ ଇନ୍ଦ୍ରକେଶରୀ ନାମକ ଜଣେ କେଶରୀ ବଂଶର ସମ୍ରାଟ ଥିବାର ଉଲ୍ଲେଖ ସମ୍ଭବତଃ ସେହି କେଶରୀ ବଂଶ ସୋମବଂଶୀ ଇନ୍ଦ୍ରରଥ ହୋଇଥାଇ ପାରନ୍ତି । ମୁଖମନ୍ଦିର ପଞ୍ଚରଥ ରେଖଶୈଳୀ ଓ ଜଗମୋହନ ପୀଢ଼ ଦେଉଳ ଭାବରେ ନିର୍ମିତ । ଜଗମୋହନର ଦକ୍ଷିଣ ଭାଗରେ ନିଶାପାର୍ବତୀ ଓ ପଶ୍ଚିମରେ ଶିବ ବିବାହ ପ୍ରଦର୍ଶିତ । ଶିବ ମକୁଟ ପିନ୍ଧି ବର ବେଶରେ ଏକ ତକିଆକୁ ଆଉଜି ବସିଛନ୍ତି ଏବଂ ତାଙ୍କ ସମ୍ମୁଖ ଦେବୀ ପାର୍ବତୀଙ୍କ ହସ୍ତ ଧାରଣ କରିଥିବା ବେଳେ ଶିବ ଡାହାଣ ହାତରେ ଧରି ପକାଇଛନ୍ତି । ଶିବ ପାର୍ବତୀଙ୍କୁ ହସ୍ତଧାରଣ କରିଥିବା ବିଗ୍ରହ କଲ୍ୟାଣ ସୁନ୍ଦର ମୂର୍ତ୍ତି ଭାବରେ ପରିଚିତ ଓ ଆଦୃତ । ଦ୍ୱାରବଂଧର ଉଭୟ ପାର୍ଶ୍ୱରେ ନାଗ ଓ ନାଗୀ ସ୍ତମ୍ଭ ଉପରେ ପୁଷ୍ପମାଳା ଧରି ଉଭା ହୋଇଛନ୍ତି । ରାଜାରାଣୀ ମନ୍ଦିରର ଉଚ୍ଚତା ୫୯ ଫୁଟ । ଏହି ମନ୍ଦିରର ବହିର୍ଭାଗ ଦୈର୍ଘ୍ୟ ପୂର୍ବ-ପଶ୍ଚିମ ୨୯ ଫୁଟ । ଉତ୍ତର-ଦକ୍ଷିଣ ୩୧ ଫୁଟ । ସେହିପରି ଅନ୍ତର୍ଭାଗ ଆୟତନ ପୂର୍ବ-ପଶ୍ଚିମ ଓ ଉତ୍ତର-ଦକ୍ଷିଣ ପ୍ରତ୍ୟେକ ୧୦ ଫୁଟ ୩ ଇଞ୍ଚ । ଏହି ମନ୍ଦିରରେ ଥିବା ଜଗମୋହନ ଅନ୍ତର୍ଭାଗର ଆୟତନ ପୂର୍ବ-ପଶ୍ଚିମ ଓ ଉତ୍ତର-ଦକ୍ଷିଣ ପ୍ରତ୍ୟେକ ଅଂଶ ୧୭ ଫୁଟ ୧୦ ଇଞ୍ଚ । ଏହି ମନ୍ଦିର ମଧରେ ବର୍ତ୍ତମାନ କୌଣସି ଦେବଦେବୀ ପୂଜା ପାଉନାହାନ୍ତି । ଏଥିରେ ସମ୍ଭବତଃ ହରପାର୍ବତୀଙ୍କ ଯୁଗଳ ମୂର୍ତ୍ତି ଉପାସନା ହେଉଥିଲା । ପରବର୍ତ୍ତୀ କାଳରେ ସେହି ମୂର୍ତ୍ତି ଅପସାରିତ ହୋଇଛି । ରାଜାରାଣୀଆ ନାମକ ଏକ ପ୍ରକାର ଲାଲରଙ୍ଗର କନ୍ଦାପଥରରେ ମନ୍ଦିର ନିର୍ମିତ ହୋଇଥିବାରୁ ଏହାକୁ ରାଜରାଣୀ ମନ୍ଦିର ଭାବେ ଅଭିହିତ କରୁଛନ୍ତି । ବୋଧହୁଏ ଏପରିନାମ ଶିବପାର୍ବତୀଙ୍କ ପ୍ରତିମାମୂର୍ତ୍ତି ଅପସାରିତ ହେଲା ପରେ ହୋଇଛି ।

**ଭାସ୍କରେଶ୍ୱର ମନ୍ଦିର :** ଭୁବନେଶ୍ୱରସ୍ଥିତ ବ୍ରହ୍ମେଶ୍ୱର ଛକର ବାମପାର୍ଶ୍ୱ ବା ଉତ୍ତରଦିଗରେ ଭାସ୍କରେଶ୍ୱର ମନ୍ଦିର ଅବସ୍ଥିତ । ମନ୍ଦିରର ଗଠନ ପ୍ରଣାଳୀ ମନ୍ଦିର ସ୍ଥାପତ୍ୟଠାରୁ ପୃଥକ୍ । ମନ୍ଦିରରେ ଥିବା ୯'୨'' ଉଚ୍ଚତା ବିଶିଷ୍ଟ ଶିବଲିଙ୍ଗକୁ ଐତିହାସିକମାନେ ଅଶୋକଙ୍କର ଅନୁଶାସନର ଗୋଟିଏ ସ୍ତମ୍ଭ ଥିଲାବୋଲି ମତ ଦେଇଛନ୍ତି । ତେଣୁ



ବୌଦ୍ଧଧର୍ମର ଅବସାନ ପରେ ଶୈବଧର୍ମାବଲମ୍ବୀ କୌଣସି ଶାସକ ପରବର୍ତ୍ତୀ କାଳରେ ଦଣ୍ଡାୟମାନ ଥିବା ଏହି ଅଶୋକସ୍ତମ୍ଭ ଉପରେ ମନ୍ଦିରଟି ନିର୍ମାଣ କରି ଉକ୍ତ ସ୍ତମ୍ଭକୁ ଶିବଲିଙ୍ଗରେ ପରିଣତ କରିଛନ୍ତି । ଏହି ଶିବଲିଙ୍ଗର ମୂଳପରିଧି ସାଢ଼େ ବାରଫୁଟ । ଗୌରୀ ପୀଠର ବେଢ଼ା ପ୍ରାୟ ୨୦ ଫୁଟ । ସ୍ତମ୍ଭରେ ବ୍ରାହ୍ମୀଲିପି ଖୋଦିତ ହୋଇଥିବାର ସ୍ପଷ୍ଟ ବାରି ହୋଇପଡୁଛି ।

ପ୍ରଥମେ ବୌଦ୍ଧ ଧର୍ମାବଲମ୍ବୀମାନେ ଅଶୋକସ୍ତମ୍ଭର ଉପରି ଭାଗରେ ଓଲଟ ପଦ୍ମଟିଏ ଓ ତା'ଉପରେ ଗୋଟିଏ ବିରାଟ ସିଂହ ସ୍ଥାପନ କରିଯାଇଥିଲା । ବର୍ତ୍ତମାନ ଭଗ୍ନ ଓଲଟପଦ୍ମଟି ଜୟଦେବ ରାଜ୍ୟ ସଂଗ୍ରହାଳୟ ହତା ମଧରେ ସାମନା ଫାଟକ ନିକଟରେ ପଡ଼ି ରହିଥିବାବେଳେ ଅନ୍ୟ ଖଣ୍ଡେ ମାଉସୀମା ମନ୍ଦିର ହତାରେ । ସିଂହ ସଂଗ୍ରହାଳୟରେ ଏବଂ ଆଉ କିଛି ଭଗ୍ନ ଅଂଶ ଏବେ ମଧ ଭାସ୍କରେଶ୍ୱର ହତାରେ ପଡ଼ିଛି । ମନ୍ଦିରଟି ଦୁଇତାଲା ବିଶିଷ୍ଟ ଏହା ପୀଢ଼ ଶୈଳୀରେ ନିର୍ମିତ । ପ୍ରଥମ ତାଲାଟି ଗୋଟିଏ ମଣ୍ଡପ ବା ମଞ୍ଚ ସଦୃଶ ଦୃଷ୍ଟିଗୋଚର ହୁଏ । ଏହାର ଚତୁଃଦିଗରେ ଚାରିଗୋଟି ପ୍ରବେଶ ଦ୍ୱାର ରହିଛି । ଦ୍ୱିତୀୟ ତାଲାକୁ ଯିବାପାଇଁ ଉଭୟ ପାର୍ଶ୍ୱର ମଞ୍ଚକୁ ଲାଗି ପାବଚ୍ଛ ନିର୍ମାଣ କରାଯାଇଛି । ଭକ୍ତମାନେ ପ୍ରଥମ ତାଲାରେ ଲିଙ୍ଗ ଦର୍ଶନ କରିବା ସହିତ ସେହିଠାରେ ପ୍ରଭୁଙ୍କୁ ପ୍ରଣାମ କରିଥାନ୍ତି କିନ୍ତୁ ଦ୍ୱିତୀୟ ତାଲାକୁ ଯାଇ ପ୍ରଭୁଙ୍କ ମସ୍ତକରେ ବେଲପତ୍ର, ପୁଷ୍ପ, କ୍ଷୀର ଓ ନୈବେଦ୍ୟ ଲାଗି କରାଏ । ଏଥିରୁ ଅନୁମେୟ ଏହା କେତେ ବଡ଼ ଶିବଲିଙ୍ଗ ହୋଇପାରିଛି । ମାଘଶୁକ୍ଳ ସପ୍ତମୀ ଦିନ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଭାସ୍କରେଶ୍ୱର ମନ୍ଦିର ନିକଟକୁ ନିଆଯାଏ । ତାଙ୍କ ସଂଗେ ମା' ଭୁବନେଶ୍ୱରୀ ଓ ବାସୁଦେବ ଯାଇଥା'ନ୍ତି । ସେଠାରେ ଚନ୍ଦ୍ରଶେଖରଙ୍କୁ ସ୍ନାନ, ନବବସ୍ତ୍ରାଦି ପରିଧାନ ଓ ଭୋଗ କରାଯାଇ ଅପରାହ୍ନରେ ମନ୍ଦିରକୁ ଅଣାଯାଏ । ଏହି ଦିନ ଓଡ଼ିଶାର

ପ୍ରଥମ ସରବରାକାର (ବର୍ତ୍ତମାନ ବଡ଼ଗଡ଼ ଗ୍ରାମର ସାମନ୍ତରାୟ ବଂଶ) ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ଦଉଶାଢ଼ୀ ପିନ୍ଧିବାର ପ୍ରଚଳନ ଅଦ୍ୟାବଧି ଚଳି ଆସୁଅଛି । ସେହି ସମୟରେ ଯେଉଁ ଭୋଗହୁଏ ତାହାକୁ ସାମନ୍ତରାୟ ବଂଶ ବଂଶାନୁକ୍ରମେ ଅଦ୍ୟାବଧି ଦେଇଆସୁଛନ୍ତି । ଲୋକଚାର ମତରେ ଏହି ମନ୍ଦିରର ଗଠନ ପ୍ରଣାଳୀରେ ଲିଙ୍ଗରାଜଙ୍କର ଅଶୋକାଷ୍ଟମୀ ରୁକୁଣାରଥ ନିର୍ମିତ ହୁଏ । ପୂର୍ବେ ରୁକୁଣାରଥ ଉଚ୍ଚତା ଭାସ୍କରେଶ୍ୱର ମନ୍ଦିର ଉଚ୍ଚତା ସହିତ ସମାନ ଥିଲା । ବର୍ତ୍ତମାନ ରଥର ଉଚ୍ଚତା କମି ଗଲାଣି । ସଂପ୍ରତି ଆଧୁନିକ ସହର ଯୋଗୁଁ ବିଦ୍ୟୁତ ତାର, କେବୁଲ ଓ ଟେଲିଫୋନ ତାର ରାସ୍ତାର ଉପରି ପାର୍ଶ୍ୱରେ ଆଚ୍ଛାଦିତ ହୋଇଥିବାରୁ ବୋଧହୁଏ ଏପରି କରାଯାଇଛି ଏବଂ ଅନ୍ୟ ଏକ କଥା ହେଉଛି କାଠର ବହୁ ଅଭାବ ।

**ମେଘେଶ୍ୱର ମନ୍ଦିର :** ଭୁବନେଶ୍ୱରସ୍ଥ ବ୍ରହ୍ମେଶ୍ୱର ପାଟଣାର ପୂର୍ବଦିଗକୁ ଟଙ୍କପାଣି ରାସ୍ତାକୁ ଲାଗି ଉତ୍ତର ଦିଗରେ ମେଘେଶ୍ୱର ମନ୍ଦିର ଅବସ୍ଥିତ । ଏହି ମନ୍ଦିରକୁ ଗଙ୍ଗବଂଶର ରାଜା ରାଜରାଜଦେବଙ୍କ ଶାଳକ ସ୍ୱପ୍ନେଶ୍ୱର ଦେବଙ୍କ ଦ୍ୱାରା ଅନଙ୍ଗଭୀମଙ୍କ ରାଜତ୍ୱକାଳରେ ଅର୍ଥାତ୍ ୧୧୯୫ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିବା କଥା ମନ୍ଦିର ଶିଳାଲିପିରୁ ଜଣାଯାଏ । ସ୍ୱପ୍ନେଶ୍ୱର ଦେବଙ୍କ ନାମରେ କୌଣସି ରାଜୋପାଧି ନାହିଁ । ରାଜାଙ୍କ ପ୍ରଧାନ ସେନାପତି ଥାଇ ରାଜାଙ୍କ କୀର୍ତ୍ତିଠାରୁ ଅଧିକ କୀର୍ତ୍ତି ସେ ରଖିଯାଇଛନ୍ତି । ସେ ମେଘେଶ୍ୱର ମନ୍ଦିର ନିର୍ମାଣ କରାଇ ତହିଁରେ ଦେବଦାସୀ ପ୍ରଥା ପ୍ରଚଳନ କରାଇଥିଲେ । ମେଘେଶ୍ୱର ମନ୍ଦିର ଓ ମେଘେଶ୍ୱର ତୀର୍ଥ ଉଭୟ ସ୍ୱପ୍ନେଶ୍ୱର ଦେବଙ୍କ କୀର୍ତ୍ତି । ବ୍ରାହ୍ମଣ ବିଷ୍ଣୁ ଆଚାର୍ଯ୍ୟ ମେଘେଶ୍ୱର ମନ୍ଦିର ପ୍ରତିଷ୍ଠା କରିଥିଲେ ।

ସପ୍ତରଥ ପ୍ରଣାଳୀରେ ନିର୍ମିତ ଏହି ମନ୍ଦିରର ଉଚ୍ଚତା ୫୧ ଫୁଟ । ବିମାନ ମନ୍ଦିର ରେଖଶୈଳୀ ଓ ଜଗମୋହନ ପୀଢ଼ ସଦୃଶ ନିର୍ମିତ । ମନ୍ଦିରର ମୁଖ ପଶ୍ଚିମ ଦିଗକୁ । ଏହି ମନ୍ଦିର ବିଶାଳ ପ୍ରାଚୀର ଘେରା ମଧ୍ୟରେ ଅବସ୍ଥିତ । ପ୍ରାଚୀରର ଦୈର୍ଘ୍ୟ ପୂର୍ବ-ପଶ୍ଚିମ ସର୍ବୋଚ୍ଚ ୧୬୧'୫'' ଓ ସର୍ବନିମ୍ନ ୧୫୬'୬'' । ଉତ୍ତର-ଦକ୍ଷିଣ ସର୍ବୋଚ୍ଚ ୭୦'୨'' ଓ ସର୍ବନିମ୍ନ ୬୩'୭'' । ସେହିପରି ମନ୍ଦିରର ବହିର୍ଭାଗ ଦୈର୍ଘ୍ୟ ପୂର୍ବ-ପଶ୍ଚିମ ୩୬'୩'' ଓ ଉତ୍ତର-ଦକ୍ଷିଣ ୧୪'୧୦'' । ବର୍ଗାକାର ବିଶିଷ୍ଟ ଜଗମୋହନ ଅନ୍ତର୍ଭାଗର ପ୍ରତ୍ୟେକ ପାର୍ଶ୍ୱ ୨୧'୬'' । ଦ୍ୱାରବନ୍ଧରେ ସପ୍ତଫଣା ଯୁକ୍ତ ନାଗ ଓ ନାଗୀ ମୂର୍ତ୍ତି ଖୋଦିତ ହୋଇଛି । ମନ୍ଦିରର ଉତ୍ତର ପାର୍ଶ୍ୱ ବେଢ଼ାକୁ ଲାଗି ମେଘତୀର୍ଥ ନାମକ ଗୋଟିଏ ପୁଷ୍କରିଣୀ ରହିଛି । ଭୁବନେଶ୍ୱରରେ ଥିବା ଅଷ୍ଟତୀର୍ଥମାନଙ୍କ ମଧ୍ୟରେ ଏହା ଅନ୍ୟତମ । ଏହି ଶିବଲିଙ୍ଗକୁ ପୂଜା କଲେ ବର୍ଷା ହେବାର ସମ୍ଭାବନା ଅଧିକ ଥାଏ ।

**ରାମେଶ୍ୱର ମନ୍ଦିର ବା ମାଉସୀ ମା' ମନ୍ଦିର :** ରାମେଶ୍ୱର ମନ୍ଦିରଟି ଗଙ୍ଗରାଜତ୍ୱ ସମୟର ଅର୍ଥାତ୍ ଆନୁମାନିକ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇଥିବା ଜଣାଯାଏ । ଲିଙ୍ଗରାଜ ମନ୍ଦିରର ଉତ୍ତର ଦିଗରେ ପ୍ରାୟ ଏକ କିଲୋମିଟର ଦୂରରେ ଅବସ୍ଥିତ ମାଉସୀ ମା' ମନ୍ଦିର । ମଗଧ ସମ୍ରାଟ ଅଶୋକ କଳିଙ୍ଗ ଯୁଦ୍ଧପରେ ବୌଦ୍ଧଧର୍ମ ଗ୍ରହଣ ପୂର୍ବକ ଏଠାରେ ମଧ୍ୟ ଗୋଟିଏ ବିଶାଳ ସ୍ତମ୍ଭ ପ୍ରତିଷ୍ଠା କରିବା ସଂଗେସଂଗେ କେତେକ ତଡ଼ାଗ ବାପ୍ପୀ ଓ ଦୀର୍ଘିକା ପ୍ରଭୃତି ନିର୍ମାଣ କରାଇଥିବାର ଜଣାଯାଏ । ରାମେଶ୍ୱର ମନ୍ଦିର ନିକଟରେ ଥିବା ଅଶୋକ ଝର ଓ ଅଶୋକ କୁଣ୍ଡ ନିଃସନ୍ଦେହରେ ତାଙ୍କରି କୀର୍ତ୍ତି । ସେ ଯେଉଁ ସ୍ତମ୍ଭଟି ପ୍ରତିଷ୍ଠା କରିଥିଲେ ଖୁବ୍ ସମ୍ଭବ ତାହା ବର୍ତ୍ତମାନ ରାମେଶ୍ୱର ମନ୍ଦିର ଗଠିତ ହୋଇଥିବା ସ୍ଥାନରେ ସ୍ଥାପିତ ହୋଇଥିଲା । କାଳକ୍ରମେ ବୌଦ୍ଧଧର୍ମର ଅବସାନ ପରେ ଶୈବ ଧର୍ମାବଲମ୍ବୀମାନେ ସେହି ସ୍ତମ୍ଭକୁ ସ୍ଥାନାନ୍ତରିତ କରି ସେହି ମୂଳଭିତ୍ତି ଉପରେ ରାମେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଏହି ମନ୍ଦିର ପରିସରଭୁକ୍ତ ଅନ୍ୟ ମନ୍ଦିରଗୁଡ଼ିକ ହେଲେ ରାସ୍ତାର ଅପରପାର୍ଶ୍ୱରେ ତିନିଗୋଟି ମନ୍ଦିର ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର । ରାସ୍ତାର ଦୁଇ ପାର୍ଶ୍ୱରେ ଥିବା ଦୁଇଟି ପଶ୍ଚିମାଭିମୁଖୀ କ୍ଷୁଦ୍ର ଶିବ ମନ୍ଦିର ଦେଖିବାକୁ ମିଳେ । ସେମାନେ ହେଲେ ବାମର ବଶିଷ୍ଠେଶ୍ୱର ଦକ୍ଷିଣର ବାମଦେବେଶ୍ୱର । ଏ ସମସ୍ତ ଶିବଲିଙ୍ଗ ପୂଜିତ ହେଉଛନ୍ତି । ଏକାମ୍ରପୁରାଣ ବର୍ଣ୍ଣିତ ଅନୁସାରରେ ଏଠାରେ ଆହୁରି ଅନେକ ଶିବମନ୍ଦିର ପ୍ରତିଷ୍ଠା ଲାଭ କରିଥିଲା । ସେଗୁଡ଼ିକ ହେଉଛି ସୀତେଶ୍ୱର, ହନୁମଦୀଶ୍ୱର, ଲବେଶ୍ୱର, ଜାବାଲେଶ୍ୱର ଓ ସୁମନ୍ତେଶ୍ୱର ।

ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖର, ଦେବୀ ରୁକୁଣା ଓ ବାସୁଦେବ ଅଶୋକାଷ୍ଟମୀ ରଥଯାତ୍ରା ଅବସରରେ ବହିର୍ଯାତ୍ରା ପୂର୍ବକ ଏଠାକୁ ଆସନ୍ତି ମାତ୍ର ୫ ଦିନ ପାଇଁ । ମନ୍ଦିର ପାଶ୍ଚାତ୍ ଭାଗରେ ଥିବା ଅଶୋକଝର ସଂପ୍ରତି ଏବେ ସୀତାଝର ଓ ଦକ୍ଷିଣରେ ଥିବା ବାମ୍ପିକୁ ସୀତାକୁଣ୍ଡ କୁହାଗଲାଣି । ସମୟ ସ୍ରୋତରେ ଧର୍ମର ପ୍ରଭାବ ଯୋଗୁଁ ଏହାର ନାମ ପରିବର୍ତ୍ତନଶୀଳ ।

**ବ୍ରହ୍ମେଶ୍ୱର ମନ୍ଦିର :** ଭୁବନେଶ୍ୱରସ୍ଥିତ ବ୍ରହ୍ମେଶ୍ୱର ପାଟଣାର ଶେଷ ସୀମାନ୍ତ ଅର୍ଥାତ୍ ଗଙ୍ଗୁଆନଦୀ ଉତ୍ତର ପାର୍ଶ୍ୱରେ ବ୍ରହ୍ମେଶ୍ୱର ମନ୍ଦିର ଅବସ୍ଥିତ, ଏହା ଲିଙ୍ଗରାଜ ମନ୍ଦିରଠାରୁ ଏକ ହଜାର ଏକତ୍ରିଶ ଧେନ୍ୱନ୍ତରରେ । ଏହି ମନ୍ଦିରଟି ୧୦୬୦ ଖ୍ରୀଷ୍ଟାବ୍ଦରେ କେଶରୀ ବଂଶ ସମ୍ରାଟ ଉଦ୍ୟୋତକେଶରୀଙ୍କ ସମୟରେ ନିର୍ମିତ ହୋଇଥିଲା । କିନ୍ତୁ ତାଙ୍କ ମାତା କୋଳାବତୀ ଦେବୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କ ଦ୍ୱାରା ଏହି ମନ୍ଦିରଟି ବହୁ କାରୁକାର୍ଯ୍ୟପୂର୍ଣ୍ଣ ଓ ଅଷ୍ଟାୟତନ ବିଶିଷ୍ଟ ମନ୍ଦିର ହେଲେ ମଧ୍ୟ ଏହାର ବାଡ଼ ମଧ୍ୟରେ ଥିବା ମନ୍ଦିରକୁ ଅନୁଧ୍ୟାନ କଲେ ଜଣାଯାଏ ପଞ୍ଚଆୟତନ । ମନ୍ଦିରବେଢ଼ାର ଚାରିକୋଣରେ ଅଳ୍ପ ଉଚ୍ଚ ବିଶିଷ୍ଟ ଚାରୋଟି ମନ୍ଦିର ଥିବାବେଳେ ବେଢ଼ାର ମଧ୍ୟଭାଗରେ ପୂର୍ବମୁଖୀ ବ୍ରହ୍ମେଶ୍ୱର ମନ୍ଦିରରେ ବିଭୁବ୍ରହ୍ମେଶ୍ୱର ଲିଙ୍ଗ ପୂଜା ପାଉଛନ୍ତି । ମନ୍ଦିରର ଉଚ୍ଚତା ୬୦ ଫୁଟ । ଏହାର ମୁଖଶାଳା ୪୭ ଫୁଟ । ଏହାର ଦୁଇଟି ବେଢ଼ା ପ୍ରାଚୀର । ଅନ୍ତର୍ଭାଗ ପ୍ରାଚୀରର ଲମ୍ବ ପୂର୍ବ-ପଶ୍ଚିମ

୧୦୭'୯'' ଓ ପ୍ରସ୍ଥ ଉତ୍ତର-ଦକ୍ଷିଣ ୭୧' । ଦ୍ୱିତୀୟ ବେଢ଼ା ପ୍ରାଚୀର ମଧ୍ୟରେ ମନ୍ଦିରର ଦକ୍ଷିଣ ଦିଗକୁ ପାବଚ୍ଛଯୁକ୍ତ ଗୋଟିଏ ପୁଷ୍କରିଣୀ ରହିଛି । ପୁଷ୍କରିଣୀର କୂଳକୁ ଲାଗି ଉତ୍ତର ଦିଗକୁ ଅର୍ଥାତ୍ ପ୍ରଥମ ପ୍ରାଚୀରକୁ ଲାଗି ପୂର୍ବମୁଖୀ ଗୋଟିଏ ଶିବ ମନ୍ଦିର ଅଛି । ତାହା ବ୍ରହ୍ମ କୁଣ୍ଡେଶ୍ୱର ନାମରେ ଖ୍ୟାତ । ସେଥିରେ ବର୍ତ୍ତମାନ ଶିବଲିଙ୍ଗ ପୂଜିତ ହେଉଛନ୍ତି । ଆଉ ଦୁଇଟି ଶୂନ୍ୟ ମନ୍ଦିରର ଉତ୍ତର ପାର୍ଶ୍ୱରେ ଦ୍ୱିତୀୟ ବେଢ଼ାରେ ଗୋଟିଏ ଓ କିୟତ ଦୂରରେ ଦ୍ୱିତୀୟ ବେଢ଼ା ବାହାରେ ଅନ୍ୟଟି ଅବସ୍ଥିତ । ପୂର୍ବ ଦିଗରେ ଗୋଟିଏ ପ୍ରାଚୀନ କୂପ ଅଛି । ବର୍ତ୍ତମାନ ଦ୍ୱିତୀୟ ପ୍ରାଚୀରର ଚତୁର୍ଦ୍ଦିଗରେ ତାରବାଡ଼ ଦ୍ୱାରା ଆବଦ୍ଧ କରାଯାଇଛି । ପ୍ରାୟ ୧୦୦ ଫୁଟ ଲମ୍ବର ପ୍ରାଚୀନ ଭଗ୍ନ ପ୍ରାଚୀର ପୂର୍ବ ଓ ଦକ୍ଷିଣ ଦିଗରେ ପୂର୍ବ-ଦକ୍ଷିଣ କୋଣକୁ ଲାଗି ଦ୍ୱିତୀୟ ପ୍ରାଚୀରର ନିଦର୍ଶନ ସ୍ୱରୂପ କିଛି ଅଂଶ ରହିଯାଇଛି ।

୧୯୧୨ ମସିହା ବନ୍ଦୋବସ୍ତ ରେକର୍ଡ଼ରୁ ଜଣାପଡ଼େ । ବ୍ରହ୍ମେଶ୍ୱର ଦେବଙ୍କ ବିଜେସ୍ଥଳୀ ସହିତ ନିଜ ଦଖଲରେ ୨୮ ଏକର ୩୨୯ ଡେସିମିଲ ଜମି ରହିଅଛି । ବିଜେସ୍ଥଳୀରେ ପୋଖରୀ ୨ଟି, କୂପ ୫ଟି, କୁଣ୍ଡ ଗୋଟିଏ, ମନ୍ଦିର ନଅଗୋଟି ଅବସ୍ଥିତ । ମୂଳ ମନ୍ଦିର ୭୦ ଡେସିମିଲ ପାର୍ଶ୍ୱମନ୍ଦିର ଚାରୋଟି ୬୫ ଡେସିମିଲ କରି ସମସ୍ତ ବେଢ଼ା ଏରିଆ ୧୩୬ ଡେସିମିଲ । ବ୍ରହ୍ମକୁଣ୍ଡ ୧୨୭ ଡେସିମିଲ । ମନ୍ଦିରକୁ ଯିବାବାଟର ଦକ୍ଷିଣକୁ ୨ଟି ମନ୍ଦିର ଦେଖିବାକୁ ମିଳେ । କିନ୍ତୁ ଅନ୍ୟ ମନ୍ଦିର ଦେଖାଯାଏ ନାହିଁ । ପୋଖରୀ ଉପରେ ଉତ୍ତର ପଟକୁ ଯେଉଁ ବ୍ରହ୍ମକୁଣ୍ଡେଶ୍ୱରୀ ମନ୍ଦିର ରହିଛି ତା'ର ପ୍ଲଟ ନଂ.୩୫୮୮ । ଏରିଆ ଏ ୫-୯୦୦ ଡେସିମିଲ । ଏହାର ବାହାର ବେଢ଼ା ଓ ଭିତର ବେଢ଼ା ରୂପରେ ପରିବେଷ୍ଟିତ ।

**ନାଗେଶ୍ୱର ମନ୍ଦିର :** ଭୁବନେଶ୍ୱରସ୍ଥ ନାଗେଶ୍ୱର ଟାଙ୍ଗିରେ ପଶ୍ଚିମାଭିମୁଖୀ ନାଗେଶ୍ୱର ମନ୍ଦିରର ଉଚ୍ଚତା ୫୦ ଫୁଟ । ଜଗମୋହନ ବିହୀନ ନାଗେଶ୍ୱର ମନ୍ଦିରରେ ପାର୍ଶ୍ୱଦେବତା ଦୃଷ୍ଟିଗୋଚର ହୋଇଥାଏ । ମନ୍ଦିରର ପାର୍ଶ୍ୱଦେବତା ଭାବେ ଦକ୍ଷିଣରେ ଦଣ୍ଡାୟମାନ ଚତୁଃହସ୍ତ ବିଶିଷ୍ଟ ଗଣେଶ । ଉତ୍ତରରେ କାର୍ତ୍ତିକେୟ ଓ ପଶ୍ଚିମରେ ପାର୍ବତୀ ମୂର୍ତ୍ତି ସ୍ଥାପିତ ହୋଇଛନ୍ତି । ମନ୍ଦିର ସମ୍ମୁଖରେ ଏକ ସୁଗଭୀର ପୁଷ୍କରିଣୀ ରହିଛି । ଭୁବନେଶ୍ୱରରେ ଥିବା ଅଷ୍ଟତୀର୍ଥ ମଧ୍ୟରୁ ଏହା ଅନ୍ୟତମ ଓ ଏହାର ନାମ ଅଲାବୁତୀର୍ଥ । କେବଳ ଅଷ୍ଟମୀ ତିଥିରେ ଏହି ପୁଷ୍କରିଣୀରେ ସ୍ନାନ କଲେ ବହୁ ପୁଣ୍ୟ ମିଳେ ବୋଲି ପୁରାଣରେ ବର୍ଣ୍ଣିତ । ଏଠାରେ ଏକ ତପସ୍ୱୀ ଦାକ୍ଷିଣାତ୍ୟରୁ ଆସି ଭଗବାନ ସଦାଶିବଙ୍କୁ ଉପାସନା କଲେ । ଶଙ୍କର ତପସ୍ୱୀଙ୍କର ଉପାସନାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଦେଖାଦେଇ ତାଙ୍କର ଅଭିପ୍ରାୟ ପଚାରିଲେ । ତପସ୍ୱୀ କହିଲେ, ହେ ପ୍ରଭୋ ! ମୋର ଏହି ଭିକ୍ଷା ପାତ୍ର ଲଉତୁମ୍ବାଟି ଏକ ଜଳାଶୟରେ ପରିଣତ ହେଉ । ଶିବଙ୍କ ଆଦେଶରେ ସେହି ଲାଉତୁମ୍ବାଟି ଜଳାଶୟରେ ପରିଣତ ହୋଇ ଅଲାବୁତୀର୍ଥ ନାମରେ ପରିଚିତ । ପ୍ରକୃତରେ ଏଠାରେ ପୂଜା ପାଉଥିବା ଶିବଲିଙ୍ଗ ଅଲାବୁକେଶ୍ୱର କିନ୍ତୁ ପରବର୍ତ୍ତୀ ସମୟରେ ବହୁ ଅପଭ୍ରଂଶ ହୋଇ ନାଗେଶ୍ୱର । ପ୍ରଥମେ ଅଲାବୁରୁରୁ 'ଅ' ଅପସାରିତ ହୋଇ ଲାବୁକେଶ୍ୱର ଯଥା- ଅଲାବୁକେଶ୍ୱର - ଲାବୁକେଶ୍ୱର - ଲାବକେଶ୍ୱର - ଲାଉକେଶ୍ୱର - ନାଉକେଶ୍ୱର - ନାବକେଶ୍ୱର - ନବକେଶ୍ୱର - ନାଗେଶ୍ୱର । ଏହି ଶିବଲିଙ୍ଗ ତନ୍ତ୍ର ଉପଚାରରେ ପୂଜା କରାଯାଏ ।

**ଅନନ୍ତ ବାସୁଦେବ :** ଅନଙ୍ଗଭୀମ ଦେବଙ୍କ ତୃତୀୟ କନ୍ୟା ଖ୍ରୀ:୧୨୭୮ରେ ସ୍ୱାମୀ କଳିଙ୍ଗ ସେନାପତି ପରମର୍ଦ୍ଦୀ ଦେବଙ୍କ ମୃତ୍ୟୁର ସ୍ମାରକୀ ସ୍ୱରୂପ ଭୁବନେଶ୍ୱର ବିନ୍ଦୁସାଗରର ପୂର୍ବପାର୍ଶ୍ୱ କୂଳରେ ଅନନ୍ତ ବାସୁଦେବ ମୂର୍ତ୍ତି ମନ୍ଦିର ନିର୍ମାଣ କଲେ । କାରୁକାର୍ଯ୍ୟପୂର୍ଣ୍ଣ ଏହି ମନ୍ଦିରଟି ଚାରିଭାଗରେ ବିଭକ୍ତ ଯଥା- ବିମାନ, ଜଗମୋହନ, ନାଟମନ୍ଦିର ଓ ଭୋଗମଣ୍ଡପ । ମନ୍ଦିରଟି ପଶ୍ଚିମାଭିମୁଖୀ ଓ ପଞ୍ଚ ଆୟତନ ବିଶିଷ୍ଟ । ମନ୍ଦିର ବେଢ଼ାର ଐଶାନ କୋଣରେ ଐଶାନେଶ୍ୱର, ଅଗ୍ନିକୋଣରେ ମନ୍ଦିର ଭଗ୍ନ ପ୍ରାୟ ବୋଧହୁଏ ଅନନ୍ତ ବାସୁଦେବ ମନ୍ଦିର ସମ୍ମୁଖ ଓ ରାସ୍ତାର ଅପରପାର୍ଶ୍ୱ ବିନ୍ଦୁସାଗରକୁ ଲାଗିଥିବା ଛୋଟ ମନ୍ଦିର ମଧ୍ୟ ପୂଜା ପାଉଥିବା ବ୍ରହ୍ମା ମୂର୍ତ୍ତି ସେଠାର ସ୍ଥାନାନ୍ତରିତ ପୂର୍ବକ ସଂପ୍ରତି ଏହିଠାରେ ପୂଜା ପାଉଛନ୍ତି । ନୈରତ କୋଣ ମା' ସରସ୍ୱତୀ ମନ୍ଦିର (ମନ୍ଦିରଟି ଭଗ୍ନ ପ୍ରାୟ ମୂର୍ତ୍ତି ନାହିଁ) ଓ ବାୟବ କୋଣରେ ଲକ୍ଷ୍ମୀ ମନ୍ଦିର (ମୂର୍ତ୍ତି ଅପୂଜା ହୋଇ ପଡ଼ି ରହିଛନ୍ତି) । ଏହି ଚାରି ମନ୍ଦିରର ମଧ୍ୟଭାଗରେ ଅନନ୍ତ ବାସୁଦେବ ମନ୍ଦିର ପ୍ରତିଷ୍ଠା କରାଯାଇଛି । ଏକାମ୍ରଚନ୍ଦ୍ରିକା, କପିଳସଂହିତା, ସ୍ୱର୍ଣ୍ଣାଦ୍ରି ମହୋଦୟ ଏବଂ ଏକାମ୍ର ପୁରାଣରୁ ଜଣାଯାଏ, ଅନନ୍ତ ବାସୁଦେବ ମନ୍ଦିରରେ ପୂଜିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି ଶିଳାମୂର୍ତ୍ତି । ପ୍ରକୃତରେ କହିବାକୁ ଗଲେ ଜଗନ୍ନାଥ (ବାସୁଦେବ- ଶ୍ରୀକୃଷ୍ଣ), ବଳଭଦ୍ର (ଅନନ୍ତ ବା ଶେଷନାଗ) ଓ ସୁଭଦ୍ରା (ଏକାନଂସା) ।

ମନ୍ଦିରରେ ପୂଜିତ ହେଉଥିବା ଦଣ୍ଡାୟମାନ ଅନନ୍ତଙ୍କ ମୂର୍ତ୍ତିର ଉଚ୍ଚତା ୫୫'' ଓ ପ୍ରସ୍ଥ ୧୮'' । ଏହି ଦ୍ୱିଭୂଜ ମୂର୍ତ୍ତିର ଦକ୍ଷିଣ ହସ୍ତରେ ହଳ ଓ ବାମହସ୍ତରେ ମୂଷଳ । ମସ୍ତକରେ ସପ୍ତଫେଣୀ ସର୍ପ । ସୁଭଦ୍ରାଙ୍କ ଉଚ୍ଚତା ୪୦'' ଓ ପ୍ରସ୍ଥ ୧୭'' । ମୂର୍ତ୍ତିର ଶିର ଉପରେ ଦୁଇଟି ପୂର୍ଣ୍ଣ ବିକଶିତ ପଦ୍ମ। ମୂର୍ତ୍ତିର ବାମପାର୍ଶ୍ୱ ପାପୁଲି ଦୁଇଟି ଭାଙ୍ଗି ଯାଇଛି । ବାସୁଦେବଙ୍କ ମୂର୍ତ୍ତିର ଉଚ୍ଚତା ୫୮'' ଓ ପ୍ରସ୍ଥ ୧୮'' । ଶିରରେ ମୁକୁଟ ଓ ଚତୁର୍ଭୁଜ ବିଶିଷ୍ଟ ମୂର୍ତ୍ତିର ଦକ୍ଷିଣ ପାର୍ଶ୍ୱ ଉପରସ୍ଥ ହସ୍ତରେ ଗଦା ଓ ନିମ୍ନ ହସ୍ତରେ ପଦ୍ମ ଏବଂ ବାମ ପାର୍ଶ୍ୱ ଉପର ହସ୍ତରେ ଶଙ୍ଖ ଓ ତଳ ହସ୍ତରେ ଚକ୍ର ଶୋଭାପାଉଛି । ମନ୍ଦିରର ପାର୍ଶ୍ୱଦେବତା ଦୃଷ୍ଟିଗୋଚର ହୋଇଥାଏ ଏବଂ ନିଶା ମନ୍ଦିର ନିର୍ମାଣ କରାଯାଇଛି । ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଗାତ୍ର ବରାହ, ଉତ୍ତର ପାର୍ଶ୍ୱ ଗାତ୍ରରେ ବାମନ ବା ତ୍ରିବିକ୍ରମ ଓ ପୂର୍ବପାର୍ଶ୍ୱ ଗାତ୍ର ବା ପାଶ୍ଚାତ୍ ଭାଗରେ ନୃସିଂହ ପାର୍ଶ୍ୱଦେବତା ବିରାଜମାନ । ଉତ୍ତର ଓ ଦକ୍ଷିଣ ଦିଗର ନିଶା ଦେଉଳ ଭାଙ୍ଗି ଯାଇଥିବା

ବେଳେ ପୂର୍ବଦିଗର ନିଶା ଦେଉଳ ଅଛି । ମୁଖ୍ୟ ଦେଉଳ ବହୁ ଉଚ୍ଚ ହୋଇଥିବା ଦୃଷ୍ଟିରୁ ନିଶା ଦେଉଳଗୁଡ଼ିକ ତାର ଭାରସାମ୍ୟ ରକ୍ଷା କରିଥାଏ । ଏଠାରେ ମହାପ୍ରସାଦ ଲାଗି କରାଯାଏ ଏବଂ ଏହି ମହାପ୍ରସାଦକୁ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକତ୍ର ବସି ସେବନ କରିଥାନ୍ତି ।

**ଯମେଶ୍ୱର ମନ୍ଦିର :** ଲିଙ୍ଗରାଜ ମନ୍ଦିରର ପଶ୍ଚିମ ଦିଗକୁ ଅର୍ଥାତ୍ ବଡ଼େଇବାଙ୍କଠାରୁ ଯେଉଁ ରାସ୍ତା ଯମେଶ୍ୱର ପାଟଣାକୁ ଲମ୍ବିଯାଇଛି ତା'ର ଦକ୍ଷିଣ ପାର୍ଶ୍ୱରେ ଯମେଶ୍ୱର ଓ ଉତ୍ତର ପାର୍ଶ୍ୱରେ ଭାରତୀ ମଠ । ଏହି ଦୁଇଟି ପବିତ୍ର ସ୍ଥାନକୁ ଲିଙ୍ଗରାଜଙ୍କର ଭିଣୋଇ ଘର ଓ ଭଉଣୀ ଘର କୁହାଯାଏ । ଏହି ମନ୍ଦିର ଗଙ୍ଗସମ୍ରାଟ ପ୍ରଥମ ନରସିଂହ ଦେବଙ୍କ ରାଜତ୍ୱ କାଳରେ ନିର୍ମିତ । ପୁନଶ୍ଚ ଏକାମ୍ର ପୁରାଣରେ ବର୍ଣ୍ଣିତ ହୋଇଛି ସ୍ୱୟଂ ଯମଦେବତା ଏହାକୁ ନିର୍ମାଣ କରିଛନ୍ତି । ପ୍ରାଚୀର ଘେରା ପଞ୍ଚରଥ ପ୍ରଣାଳୀରେ ନିର୍ମିତ ପୂର୍ବାଭିମୁଖୀ ଏହି ମନ୍ଦିର ବିମାନ ଓ ମୁଖଶାଳକୁ ନେଇ ଗଠିତ । ମନ୍ଦିର ଓ ଜଗମୋହନର ଅଁଳା ଉପରିସ୍ଥ ଅଂଶ ସବୁ ନଷ୍ଟ ହୋଇଯାଇଛି । ଜଗମୋହନର ଦ୍ୱାରବନ୍ଧ ସମ୍ମୁଖରେ ଦୁଇଟି ସ୍ତମ୍ଭ ରହିଛି । ବେଢ଼ାର ଦକ୍ଷିଣ-ପୂର୍ବ କୋଣରେ ଗୋଟିଏ ମନ୍ଦିର ପୋତି ହୋଇଯାଇଛି । ଏହି ମନ୍ଦିର ସ୍ୱାତନ୍ତ୍ରତା ହେଉଛି ମନ୍ଦିର ବେଢ଼ାର ଚତୁଃପାର୍ଶ୍ୱରେ ୧୦୮ ଶିବଲିଙ୍ଗ ସ୍ଥାପନ କରାଯାଇଛି । ସଂପ୍ରତି ସେହି ଠଣାମାନଙ୍କରୁ ଅନେକ ଶିବଲିଙ୍ଗ ଅପସାରିତ ପୂର୍ବକ ହାତଗଣତିରେ ଶିବଲିଙ୍ଗ ଦୃଷ୍ଟିଗୋଚର ହୋଇଥାଏ ।

କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖର ଶିବିକାରେ ବର୍ହିଯାତ୍ରା ପୂର୍ବକ ଏହି ପୀଠକୁ ଆସନ୍ତି । ଯମଦଣ୍ଡରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଉଣେଇଶିଗୋଟି ମୁଆଁ ନେଇଯାଇଥାନ୍ତି । ସେଠାରେ ପହଞ୍ଚିଲାପରେ ଭେଟ ଆଳତୀ ଓ ନୈବେଦ୍ୟ ଲାଗି ହେଲାପରେ ଲିଙ୍ଗରାଜ ମହାପ୍ରଭୁ ବାହୁଡ଼ିବା ବାଟରେ ଭଗ୍ନୀ କାମାକ୍ଷା ଠାକୁରାଣୀଙ୍କୁ ଭାରତୀ ମଠରେ ସାକ୍ଷାତ କରି ସ୍ୱମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

**ଦକ୍ଷିଣ ଚଣ୍ଡୀ :** ଲିଙ୍ଗରାଜ ମନ୍ଦିର ବେଢ଼ା ଦକ୍ଷିଣ ଦ୍ୱାରର ଅନତି ଦୂରରେ ରାଜାଙ୍କ ଉଆସ ଓ ରାଜବଂଶ ଅଧିଷ୍ଠାତ୍ରୀ ଦେବୀ ଦକ୍ଷିଣ ଚଣ୍ଡୀ ମନ୍ଦିର ବିରାଜମାନ । ରାଜାଙ୍କ ଉଆସ ଏବେ ଉଚ୍ଚବିଦ୍ୟାଳୟରେ ପରିଣତ ହୋଇଥିବାବେଳେ, ମା' ଦକ୍ଷିଣଚଣ୍ଡୀ ଏବେ ସର୍ବସାଧାରଣଙ୍କ ମନ୍ଦିର ହୋଇଯାଇଛି । ଏହି ଚଣ୍ଡୀ ହେଉଚି ମହିଷାମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତି । ଲିଙ୍ଗରାଜ ମନ୍ଦିରରେ ତିନି ଦିଗରେ ଦ୍ୱାର ଥିବାବେଳେ ଦକ୍ଷିଣ ଦ୍ୱାର ସଂପ୍ରତି ସର୍ବଦା ବନ୍ଦ ରହୁଛି । ଏହାର କୌଣସି ଆବଶ୍ୟକତା ମନେ ହେଉ ନାହିଁ । ପୂର୍ବେ ଦକ୍ଷିଣ ଦ୍ୱାରରେ ରାଜ ପରିବାର ଓ ରାଜା ଆସୁଥିବା ବେଳେ ଉତ୍ତର ଦ୍ୱାରରେ ସେବକ ଓ ସାଧୁସନ୍ଥମାନେ ଆସିଥାନ୍ତି । ପୂର୍ବ ଦ୍ୱାରରେ ଭକ୍ତ ଓ ସର୍ବସାଧାରଣ ପାଇଁ ଉଦ୍ଦିଷ୍ଟ । ସମ୍ଭବତଃ ରାଜାଙ୍କ ଉଆସ ମନ୍ଦିରର ଦକ୍ଷିଣ ଦିଗରେ ଅବସ୍ଥିତ ଯୋଗୁଁ ତାଙ୍କର ଆରାଧ୍ୟ ଦେବୀଙ୍କ ନାମ ଦକ୍ଷିଣଚଣ୍ଡୀ ହେବା ସ୍ୱାଭାବିକ ।

**କପିଳେଶ୍ୱର ମନ୍ଦିର :** କପିଳେଶ୍ୱର ମନ୍ଦିର ଲିଙ୍ଗରାଜ ମନ୍ଦିରଠାରୁ ଦେଢ଼ କିଲୋମିଟର ଦୂର ଦକ୍ଷିଣ-ପଶ୍ଚିମ ଦିଗରେ କପିଳେଶ୍ୱର ଗ୍ରାମରେ ଅବସ୍ଥିତ । ଲିଙ୍ଗରାଜ ମହାପ୍ରଭୁଙ୍କ ଭଣ୍ଡାର ରକ୍ଷକଭାବେ କପିଳେଶ୍ୱର ମହାଦେବ ସୁପରିଚିତ । ତଥାପି ବିଭିନ୍ନ ଯାନିଯାତ୍ରାରେ କପିଳେଶ୍ୱରଙ୍କ ଭୂମିକା ଥାଏ କିନ୍ତୁ ଚରିତ୍ର ପରିବର୍ତ୍ତନ ହୋଇଥାଏ । କପିଳେଶ୍ୱର ମହାଦେବ ଶୀତଳଷଷ୍ଠୀ ଓ ଶିବ ବିବାହ ଦିନ ଲିଙ୍ଗରାଜ (ବର) ପକ୍ଷରୁ ପିତା ରୂପେ । ଚୈତ୍ରମାସ ଶୁକ୍ଳ ଦ୍ୱାଦଶ ଶତଭିକ୍ଷା ନକ୍ଷତ୍ରଯୁକ୍ତ ତିଥିରେ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖର ଶ୍ରୀରାମନଗରୀରେ ଅବସ୍ଥିତ ବାରୁଣେଶ୍ୱର ପୀଠକୁ ବାରଣୀ ତୀର୍ଥ କରିବାକୁ ଗଲାବେଳେ ବାଟରେ କପିଳେଶ୍ୱର ମନ୍ଦିରକୁ ଯାନ୍ତି ଏବଂ ସଂଗେ କପିଳେଶ୍ୱରଙ୍କୁ ମନ୍ତ୍ରୀ ହିସାବରେ ନିଅନ୍ତି । ଚନ୍ଦନ ଯାତ୍ରାରେ ଅତିଥି ହିସାବରେ ନୌକା ବିହାର କରିବାକୁ ୨୨ ଦିନ ଆସିଥାନ୍ତି (ଶ୍ରୀକ୍ଷେତ୍ରଠାରୁ ଏଠାରେ ଗୋଟିଏ ଦିନ ଅଧିକ ଚନ୍ଦନ ଯାତ୍ରା ଅନୁଷ୍ଠିତ ହୁଏ) । ଏଠାରେ କହି ରଖେ କପିଳେଶ୍ୱର ନିଜ ଚନ୍ଦନ ପୁଷ୍କରିଣୀରେ ବିହାର କରିଲା ପରେ ବିନ୍ଦୁସାଗରକୁ ରାତ୍ର ୮ ଘଟିକାକୁ ଆସିଥାନ୍ତି । କପିଳେନ୍ଦ୍ର ଦେବ (୧୪୩୫-୧୪୬୭) ରାଜା ହେବାର ପାଞ୍ଚ ଦଶ ବର୍ଷ ମଧ୍ୟରେ ଏହାକୁ ନିର୍ମାଣ କରାଇଥିଲେ । ପ୍ରାଚୀର ଘେର କପିଳେଶ୍ୱର ମନ୍ଦିର ବିମାନ, ଜଗମୋହନ, ନାଟମନ୍ଦିର ଓ ଭୋଗମଣ୍ଡପ ନେଇ ଗଠିତ । ବିମାନ ସହିତ ମୁଖଶାଳା ପୂର୍ବରୁ ଥିଲା କିନ୍ତୁ ଏଠାରେ ମହାପ୍ରସାଦ ଲାଗି ହେବାର ପରବର୍ତ୍ତୀ ସମୟରେ ନାଟମଣ୍ଡପ ଓ ଭୋଗମଣ୍ଡପ ଗଠିତ ହେଲା । ଅନନ୍ତ ବାସୁଦେବଙ୍କ ମହାପ୍ରସାଦ ଅଳ୍ପଦିନ ହେବ ଆରମ୍ଭ ପୂର୍ବରୁ ଭୁବନେଶ୍ୱରୀବାସୀ ଲିଙ୍ଗରାଜ ମନ୍ଦିର ପରେ କପିଳେଶ୍ୱର ମନ୍ଦିର ପ୍ରସାଦକୁ ମହାପ୍ରସାଦ କହୁଥିଲେ । ୧୯୭୦ ମସିହା ବେଳକୁ କପିଳନାଥଙ୍କର ମଲ୍ଲିଆ ସେବକ, ଖୁଣ୍ଟିଆ ସେବକ (ବ୍ରାହ୍ମଣ) ମଧ୍ୟରେ ମାଲି ମକଦ୍ଦମା ଲାଗି କପିଳନାଥଙ୍କର ସେବାପୂଜା ବନ୍ଦ ହୋଇଗଲା । ସେହି ସମୟରେ କପିଳନାଥ ପୂଜାରେ ବହୁ ବିଭ୍ରାଟ ଲାଗିବାରୁ ମଝିରେ ମଝିରେ ଲିଙ୍ଗରାଜ ପୂଜାପଣ୍ଡା କପିଳନାଥଙ୍କୁ ପୂଜା କରିବାକୁ ଯା'ନ୍ତି । ସେ ଯାହାହେଉ ସେଠାରେ ପୂଜାରେ ବିଭ୍ରାଟ ଯୋଗୁଁ ମହାପ୍ରସାଦ ବନ୍ଦ ହୋଇଗଲା । କପିଳେଶ୍ୱର ମହାଦେବଙ୍କ ପ୍ରସାଦକୁ ମହାପ୍ରସାଦ କୁହାଯିବାର କାରଣ ସ୍ୱୟଂ କପିଳମୁନିଙ୍କ ଦ୍ୱାରା ସ୍ଥାପିତ କପିଳେଶ୍ୱର ଶିବଲିଙ୍ଗ ହରିହର ଉପାସନା ପଦ୍ଧତିରେ ପୂଜାର୍ଚ୍ଚନା କରାଯାଏ । ପୁରାଣ ଅନୁସାରେ କପିଳମୁନି ଭଗବାନ ଶ୍ରୀବିଷ୍ଣୁଙ୍କ ଅବତାର ଏବଂ କପିଳେନ୍ଦ୍ର ଦେବଙ୍କ ଦ୍ୱାରା ନିର୍ମିତ କପିଳେଶ୍ୱର ମନ୍ଦିର ନାଟମଣ୍ଡପର ଦ୍ୱାରଦେଶର ଦକ୍ଷିଣପାର୍ଶ୍ୱରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି । ଯେଉଁ ମନ୍ଦିର ମଧ୍ୟରେ ଅବତାରୀ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ମହାଦେବ କପିଳେଶ୍ୱର ସେ

ପ୍ରସାଦ କିପରି ମହାପ୍ରସାଦ ନହେବ । ଏହି ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଥିବା କାଳିକା ମୂର୍ତ୍ତି ସାବିତ୍ରୀ ଅମାବାସ୍ୟାରେ ସାବିତ୍ରୀ ରୂପେ ପୂଜା ପାଆନ୍ତି । ପ୍ରକୃତ କଥା ହେଉଛି ମା'କାଳୀ ପ୍ରତ୍ୟକ୍ଷ ଦେବୀ ଭାବେ ସୁପରିଚିତ ।

**ଭୀମେଶ୍ୱର ମନ୍ଦିର :**

ଦକ୍ଷିଣସ୍ୟେଦଧେସ୍ତୀତରେ ଏକାମ୍ରକବନଂ ସ୍ମୃତଂ ।
ତସ୍ମିନ୍ ପୁଣ୍ୟମେୟ କ୍ଷେତ୍ରେ ଲିଙ୍ଗସ୍ୟାରାଧନଂ କୁରୁ ॥

ଦ୍ୱାପର ଯୁଗରେ ଭୀମ କୁରୁକ୍ଷେତ୍ର ଯୁଦ୍ଧରେ କୌରବମାନଙ୍କ ସୈନ୍ୟଙ୍କୁ ହତ୍ୟା କରି ନିଜର ବହୁ ପାପ ଅର୍ଜନ କରିଥିବା ହୃଦୟଙ୍ଗମ କରି ବ୍ରାହ୍ମଣମାନଙ୍କୁ ପଚାରିବାରୁ ବ୍ରାହ୍ମଣମାନେ କହିଲେ ଏହିଠାରୁ ଦକ୍ଷିଣ ସମୁଦ୍ରର ୧୦ ଯୋଜନ ଦୂରରେ ଏକାମ୍ରକାନନ ନାମକ ବନଭୂମି ଅଛି । ସେଠାରେ କୃତିବାସ ବ୍ରହ୍ମ ସ୍ୱରୂପ ଲିଙ୍ଗକୁ ପୂଜା କଲେ ତୁମର ପାପ କ୍ଷୟ ହେବ । ଭୀମ ପାପକ୍ଷୟରୁ ମୁକ୍ତି ହୋଇ ଫେରିଲା ବେଳେ ଲିଙ୍ଗରାଜ ମନ୍ଦିରର ପଶ୍ଚିମରେ ଭୀମେଶ୍ୱର ଶିବଲିଙ୍ଗ ସ୍ଥାପନ କରି ହସ୍ତିନାପୁର ଫେରି ଯାଇଥିଲେ । ସେହି ସ୍ମୃତିକୁ ରକ୍ଷା କରିବାକୁ ଯାଇ ଭୈମ ଏକାଦଶୀ ଦିନ ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖର, ଦେବୀ ଭୁବନେଶ୍ୱରୀ ଗୋଟିଏ ଶିବିକାରେ ଓ ଅନ୍ୟ ଗୋଟିଏ ଶିବିକା ଅଷ୍ଟବକ୍ରେଶ୍ୱର ଗମନ କରିଥାନ୍ତି । ସେଠାରେ ପହଞ୍ଚିଲା ପରେ ବନ୍ଦାପନା, ଭେଟ ଆଳତୀ ଓ ନୈବେଦ୍ୟ ଲାଗି କରାଯାଏ । ଏହାକୁ ହରିହର ଭେଟ କୁହାଯାଏ ।

**ଉପାଦାନର ଉତ୍ସ ଓ ବ୍ୟକ୍ତି ବିଶେଷ :**


୧. ଏକାମ୍ରକ୍ଷେତ୍ର - ପ୍ରଥମ ସ୍ତବକ - ଉତ୍କଳ ପାଠକ ସଂସଦ

୨. ଦୁର୍ଗାଚରଣ ପଣ୍ଡା - କଳିଙ୍ଗର ମନ୍ଦିର ସ୍ଥାପତ୍ୟ - ପ୍ରଥମ ପ୍ରକାଶନ, ଏପ୍ରିଲ-୨୦୦୦

୩. ଶ୍ରୀ ଦୁଃଖୀଶ୍ୟାମ ବେହେରା - ଓଡ଼ିଶାର ମନ୍ଦିର - ପ୍ରଥମ ଖଣ୍ଡ, ପ୍ରଥମ ଓ ଦ୍ୱିତୀୟ ଭାଗ

୪. ଡଃ ଗୋପୀନାଥ ମହାପାତ୍ର - ଶ୍ରୀଜଗନ୍ନାଥ ତତ୍ତ୍ୱ - ପ୍ରଥମ ପ୍ରକାଶନ, ୧୯୮୯

୫. ଡକ୍ଟର ବାସୁଦେବ ସାହୁ - ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା - ପ୍ରଥମ ଭାଗ, ପୃ.୨୮




ସିଦ୍ଧେଶ୍ୱର ମନ୍ଦିର


୬. ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ - ଶ୍ରୀବ୍ରହ୍ମେଶ୍ୱର କଳ୍ପତରୁ - ପ୍ରଥମ ପ୍ରକାଶନ, ୨୦୦୫

୭. ଗୁଣନିଧି ମହାପାତ୍ର - ମୋ' କଥା ଓ ମୋ' ବ୍ୟଥା - ପ୍ରଥମ ପ୍ରକାଶନ - ୨୦୦୫, ପ୍ରକାଶକ- କେଦାରନାଥ ଗବେଷଣା ପ୍ରତିଷ୍ଠାନ

୮. ସୁଶାନ୍ତ କୁମାର ସ୍ୱାଇଁ - ଆମ ସଂସ୍କୃତିର କେତେ ଗାଥା - ପ୍ରକାଶକ- ଶ୍ୱେତ ସଂକେତ ସାରସ୍ୱତ ମଞ୍ଚ, ପ୍ରଥମ ସଂସ୍କରଣ, ୩.୭.୦୫

୯. ପଣ୍ଡିତ ମାନଗୋବିନ୍ଦ ମହାସୁଆର - ଭୁବନେଶ୍ୱରର ଐତିହ୍ୟ - ପ୍ରଥମ ସଂସ୍କରଣ, ୧୯୯୮

୧୦. ଏକାମ୍ର ପୁରାଣ

୧୧. ଏକାମ୍ର ଚନ୍ଦ୍ରିକା

୧୨. କପିଳ ସଂହିତା

୧୩. ପ୍ରକାଶ ଗରାବଡୁ (ଲିଙ୍ଗରାଜ ମନ୍ଦିର ସେବକ)

୧୪. ଚିତ୍ରସେନ ବଡୁ - ଶ୍ରୀଲିଙ୍ଗରାଜ ଓ ବଡୁସେବକ - ପ୍ରଥମ ସଂସ୍କରଣ, ୨୬.୧.୦୪


ପ୍ଲଟ ନଂ-୪୫୮୬, ଗୌରୀ ନଗର
ପୁରୁଣା ଭୁବନେଶ୍ୱର - ୭୫୧୦୦୨

# ମହାମେଘବାହନ ଐରବୀର ଶ୍ରୀ ଖାରବେଳଙ୍କ ସଂକ୍ଷିପ୍ତ ପରିଚୟ ଓ ସମୟ ନିରୂପଣ

ଡା. ଗୌରୀଶଙ୍କର ତ୍ରିପାଠୀ

**ଚ**ଣ୍ଡାଶୋକଙ୍କ ଲୋମହର୍ଷକ କଳିଙ୍ଗ ଯୁଦ୍ଧ ତାଙ୍କ ରାଜତ୍ୱର ଅଷ୍ଟମ ବର୍ଷରେ ସଂଘଟିତ ହୋଇଥିଲା ଖ୍ରୀ.ପୂ. ୨୬୧ରେ । ଯେତେଗୁଡ଼ିଏ ଲୋମହର୍ଷଣକାରୀ ଯୁଦ୍ଧ ଏ ଧରାଧାମରେ ସଂଘଟିତ ହୋଇଛି - ସେଥିମଧ୍ୟରୁ ଏ କଳିଙ୍ଗ ଯୁଦ୍ଧ ଗୋଟିଏ । କେଉଁ ରାଜବଂଶର କେଉଁ ରାଜା ତତ୍କାଳୀନ କଳିଙ୍ଗରେ ରାଜତ୍ୱ କରୁଥିଲେ ତା'ର ସଠିକ୍ ବିବରଣୀ ଇତିହାସରେ ନାହିଁ । ଚଣ୍ଡାଶୋକଙ୍କ କଳିଙ୍ଗ ଆକ୍ରମଣ ପୂର୍ବରୁ ଆମ କଳିଙ୍ଗର କୌଣସି ରାଜା ପାଟଳୀପୁତ୍ର ଉପକଣ୍ଠରେ ଯୁଦ୍ଧଂଦେହୀ ଡାକରା ଦେଇନଥିଲେ ।

କେତେକ ଗବେଷକ ଐତିହାସିକ ମହାମେଘବାହନ ଐରବୀର ଖାରବେଳଙ୍କ ଚେଦୀବଂଶୀୟ କୌଣସି ରାଜା ସେତେବେଳେ କଳିଙ୍ଗରେ ରାଜତ୍ୱ କରୁଥିବା ସମ୍ଭବ ହୋଇପାରେ ବୋଲି ମତବ୍ୟକ୍ତ କରନ୍ତି । ତା'ର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ କଳିଙ୍ଗର ସ୍ୱାଧୀନ ସମ୍ରାଟ ଐରବୀର ଖାରବେଳ ଚଣ୍ଡାଶୋକଙ୍କ କଳିଙ୍ଗ ଆକ୍ରମଣର ପ୍ରତିଶୋଧ ନେଇଥିବା ବିଷୟ ତାଙ୍କର ଅନୁଶାସନରୁ ଜଣାଯାଏ ।

ହାତୀଗୁମ୍ଫା ଶିଳାଲେଖରେ ଶ୍ରୀ ଖାରବେଳଙ୍କର ତେରବର୍ଷ ରାଜତ୍ୱର ସଂକ୍ଷିପ୍ତ ବିବରଣୀ ସତରଧାଡ଼ିରେ ଉଲ୍ଲେଖ ଅଛି । କାଳକବଳିତ ଏ ସତରଧାଡ଼ି ଆଜି ଓଡ଼ିଶାର ଗର୍ବ ଓ ଗୌରବ । ଶ୍ରୀ ଖାରବେଳଙ୍କ ସମୟ ନିରୂପଣ ପ୍ରସଙ୍ଗରେ ଯେଉଁ ଯେଉଁ ଧାଡ଼ିର ଯେତିକି ଆବଶ୍ୟକତା ଅଛି, ସେଗୁଡ଼ିକୁ ନିମ୍ନରେ ଉଦ୍ଧାର କରି ତା'ର ସମ୍ୟକ ଆଲୋଚନା କରିବା ।

ପ୍ରଫେସର ବରୁଆଙ୍କ ପାଠ ଅନୁସାରେ -

୧. ଚତୁର୍ଥ ଧାଡ଼ି - XXX ଦୁତୀୟେଚ ବସେ ଅଚିତୟିତା ସାତକର୍ଣ୍ଣିଂ ପଛିମ-ଦିସଂ ହୟ-ଗଜ-ନର-ରଧ ବହୁତଂ ଦଂଡଂ XXX ପାଠାପୟତି XXX

୨. ଷଷ୍ଠ ଧାଡ଼ି - ପଂଚମେ ଚ ଦାନି ବସେ XXX ନଂଦରାଜ-ତିବସସତ-ଓଘାଟିତଂ ତଉସୁଳିଆବାଟା XXX

(ପାଠାନ୍ତରେ ତନପୁଳିଆ ବାଟା)

୩. ଏକାଦଶ ଧାଡ଼ି - କଳିଙ୍ଗ ପୂବରାଜ-ନିବେସିତ ପିଥୁଦଗଦଭ-ନଗଳିନେ କାଢୟତି ଜାନପଦ-ଭବନଂ ଚ ତେରସ-ବସ-ସତ-କତଂ ଭିଦତି-ତିମିର-ଦହ-ସଂଘାତଂ XXX

୪. ଦ୍ୱାଦଶ ଧାଡ଼ି - XXX ମଗଧାନଂ ଚ ରାଜାନଂ ବହସତି ମିତଂ ପାଦେ ବଂଦାପୟତି XXX ନଂଦରାଜନୀତଂ କାଳିଂଗ-ଜୀନାସନଂ ଅଂଗମଗଧ ତୋ କଳିଂଗ ଆନେତି XXX ମଗଧାବାସିନଂ ଚ ପାଦେ ବଂଦାପୟତି XXX

୫. ପଞ୍ଚଦଶ ଧାଡ଼ି - XXX ସତ-ଦଶ-ଲେଣ-ସତଂ କାରାପିତଂ XXX

ଅନ୍ୟାନ୍ୟ ଗବେଷକ ଶ୍ରୀ ଜୟସ୍ୱାଲ ପ୍ରଭୃତି ଏହି ଶିଳାଲେଖ ନିଜ ନିଜ ତୀକ୍ଷ୍ଣ ବୁଦ୍ଧିରେ ପଢ଼ିଛନ୍ତି । ମାତ୍ର ବରୁଆଙ୍କ ପାଠ ବହୁ ଗବେଷକ ଗ୍ରହଣ କରିଥିବା ଦୃଷ୍ଟିରୁ ସେହି ପାଠକୁ ହିଁ ଏଠାରେ ନିଆଯାଇଛି । ଏଠାରେ ଶିଳାଲେଖର ବ୍ୟାକରଣ ଓ ଭାଷାର ଶୈଳୀକୁ ଭଲ ଭାବେ ବିଚାରକୁ ନେବା ଉଚିତ୍ । ପାଲି ଭାଷାବିତ୍ ଓ ପ୍ରାକୃତ ଭାଷାବିତ୍ - ପଣ୍ଡିତମାନଙ୍କ ମତକୁ ଏ ବିଷୟରେ ଅଗ୍ରାହ୍ୟ କରିହେବ ନାହିଁ । ହାତୀଗୁମ୍ଫା ଶିଳାଲେଖରେ ନନ୍ଦରାଜ, ବୃହସ୍ପତି ମିତ୍ର ଓ ସାତକର୍ଣ୍ଣି ନାମ ଉଲ୍ଲେଖ ଅଛି । ଏମାନଙ୍କର ସଠିକ୍ ସମୟ ନିରୂପଣ ହୋଇପାରିଲେ ଏବଂ ସେହି ସମୟ ହାତୀଗୁମ୍ଫା ଶିଳାଲେଖରେ ଉଲ୍ଲେଖଥିବା ସମୟ ସହିତ ମିଶିଲେ ଐରବୀର ଶ୍ରୀ ଖାରବେଳଙ୍କ ସମୟ ନିରୂପଣ ହୋଇପାରିବ । ଏହାକୁ ଭିତ୍ତିକରି ମୋଟାମୋଟି ଆଜି ପର୍ଯ୍ୟନ୍ତ ଗବେଷକମାନେ ବ୍ୟସ୍ତ ଅଛନ୍ତି ।

ଏହାବ୍ୟତୀତ ହାତୀଗୁମ୍ଫା ଶିଳାଲେଖରେ ସଂଖ୍ୟା ସମ୍ବଳିତ - କ୍ଲୁ - ମଧ୍ୟ ଅଛି ଯାହା ମାଧ୍ୟମରେ ଆମେ ସମ୍ୟକ ଆଲୋକପାତ କରିପାରିବା । ତତ୍କାଳୀନ କଳିଙ୍ଗର ଭାଷାନୁସାରେ ଏହି ସଂଖ୍ୟା ସମ୍ବଳିତ କ୍ଲୁ ଏମିତି ଭାବରେ ପ୍ରତିପାଦିତ ହୋଇ ଯେ ତାହା ଗୋଟିଏ

ବ୍ୟାକରଣଗତ ଶୈଳୀରେ ହିଁ ଲେଖାଯାଇଛି ବୋଲି ବିଶିଷ୍ଟ ପାଲି ଓ ପ୍ରାକୃତ ଭାଷାବିତ୍ ଗବେଷକ ଐତିହାସିକ ମତବ୍ୟକ୍ତ କରିଛନ୍ତି ଯାହାକି ସେ ସମୟରେ (ତତ୍କାଳୀନ କଳିଙ୍ଗର) ଆଞ୍ଚଳିକ ଭାଷାରେ ପ୍ରଚଳିତ ଥିବା ସମ୍ଭବ । ଶିଳାଲେଖର ଷଷ୍ଠଧାଡ଼ିରେ ତିବସ ସତ-ଏକାଦଶ ଧାଡ଼ିରେ ତେରସ ବସସତ ଏବଂ ପଞ୍ଚଦମ ଧାଡ଼ିରେ ସତଦଶ-ଲେଣ-ସତ ଶବ୍ଦାବଳୀ ପ୍ରୟୋଗ କରାଯାଇଛି ।

ଶିଳାଲେଖର ସତଦଶ ଲେଣ ସତର ଅର୍ଥ ୧୧୭ ଗୁମ୍ଫା ଏବଂ ତେରସବସ ସତର ଅର୍ଥ ୧୧୩ ବର୍ଷ ବୋଲି ବହୁ ଗବେଷକଙ୍କ ଦ୍ୱାରା ଗୃହୀତ ହୋଇଥିବା ସ୍ଥଳେ ସେମାନେ ତିବସସତକୁ ୧୦୩ ବର୍ଷ ପରିବର୍ତ୍ତେ ୩୦୦ ବର୍ଷ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । ସ୍ୱର୍ଗତଃ ବିଜୟଚନ୍ଦ୍ର ମଜୁମଦାର ଓ ବେନି ମାଧବ ବରୁଆ ପ୍ରମୁଖ ପ୍ରାକୃତ ଭାଷାବିତ୍ ଓ ପାଲି ଭାଷାବିତ୍ ପଣ୍ଡିତମାନେ 'ତିବସ ସତ'କୁ ୧୦୩ ବର୍ଷ ବୋଲି ସ୍ଥିର କରିଛନ୍ତି । କିନ୍ତୁ ସ୍ୱର୍ଗୀୟ ରମାପ୍ରସାଦ ଚନ୍ଦ୍ର ଓ ଜୀନେଶ ଚନ୍ଦ୍ର ସରକାର ପ୍ରମୁଖ ଐତିହାସିକମାନେ ଏହା ୩୦୦ ବର୍ଷକୁ ବୁଝାଉଥିବା ମତପ୍ରକାଶ କରିଛନ୍ତି । ଏ ପ୍ରସଙ୍ଗରେ ସ୍ୱର୍ଗତଃ ବିଜୟ ଚନ୍ଦ୍ର ମଜୁମଦାରଙ୍କ ମତକୁ ଉଲ୍ଲେଖ କରିବା ସମୀଚୀନ ମନେ କରୁଛି ।

(Orissa in the making-Page-51)

'Ti-basa-sata' and 'Terasa-basa-sata' for 300 and 1300 respectively are grammatically wrong. In the second Sahasa for 1000 is not used. Moreover looking at the idiom of the Prakrit Speeches of the time, we may assert with some certainty that to express 300 years, the expression Ti-sata-basani (TI-SATA-BASANI) should have been used without allowing 'basa' to come between 'ti' and 'Sata'.

ଆମ ଓଡ଼ିଶାର ବିଶିଷ୍ଟ ଗବେଷକ, ସାହିତ୍ୟିକ, ଐତିହାସିକ ପ୍ରାତଃ ସ୍ମରଣୀୟ ଶ୍ରୀ କେଦାରନାଥ ମହାପାତ୍ର ମହାଶୟ ତିବସସତକୁ ୩୦୦ ବର୍ଷ ବୋଲି ଗ୍ରହଣ କରି ସେହି ଅନୁସାରେ ଶ୍ରୀ ଖାରବେଳଙ୍କର ସମୟ ନିରୂପଣ କରିଛନ୍ତି । ଅବଶ୍ୟ ଏହି ମତକୁ ଅନ୍ୟ କେତେ ଗବେଷକ ଯେ ଗ୍ରହଣ କରିନାହାନ୍ତି, ତାହା ନୁହେଁ । ଏହି ସ୍ୱନାମଧନ୍ୟ ଗବେଷକମାନଙ୍କ ମତରେ ନନ୍ଦରାଜାଙ୍କ ଦ୍ୱାରା ୩୦୦ ବର୍ଷ ପୂର୍ବେ ଅସମ୍ପୂର୍ଣ୍ଣ ଭାବେ ଖୋଳାଯାଇଥିବା ପ୍ରଣାଳୀର ଖୋଦନ କାର୍ଯ୍ୟ ଶ୍ରୀ ଖାରବେଳ ସମ୍ପୂର୍ଣ୍ଣ କରିଥିଲେ । ଏହି ସିଦ୍ଧାନ୍ତରେ ପହଞ୍ଚି ଶ୍ରୀ କେଦାରନାଥ ମହାପାତ୍ର ମହୋଦୟ ଖ୍ରୀ:ପୂ:୧୦୦ ଅବ୍ଦରେ ଶ୍ରୀ ଖାରବେଳ ସିଂହାସନାରୂଢ଼ ହୋଇଥିବା ସ୍ଥିର କରାଯାଇପାରେ ବୋଲି ମତବ୍ୟକ୍ତ କରିଛନ୍ତି । ଏହାର କେତେବର୍ଷ ପୂର୍ବରୁ ସେ ରାଜତ୍ୱ ଆରମ୍ଭ କରିଥିବା ଅସମ୍ଭବ ନୁହେଁ ବୋଲି ମଧ ସ୍ପଷ୍ଟ ଭାଷାରେ ପ୍ରକାଶ କରିଛନ୍ତି ।

ଏ ପ୍ରସଙ୍ଗରେ ଏକାଦଶ ଧାଡ଼ିରେ ଥିବା ତେରସବସ ସତକୁ ବିଚାର କରାଯାଉ । ଐରବୀର ମହାମେଘବାହନ ଶ୍ରୀ ଖାରବେଳ କଳିଙ୍ଗର ପୂର୍ବରାଜାମାନଙ୍କ ଦ୍ୱାରା ସ୍ଥାପିତ ଏବଂ ଏକଶତ ତେରବର୍ଷ ପର୍ଯ୍ୟନ୍ତ ପରିତ୍ୟକ୍ତ ପିଥୁଦକ ଦଭ ନଗର ପରିଷ୍କାର କରି ଜୀନପଦ ଭବନ ଉଦ୍ଧାର କରିଥିଲେ । ସେହି ଜୀନପଦ ଭବନରେ ମଗଧରୁ ଜିଣି ଆଣିଥିବା ଜୀନାସନକୁ ପୁନଶ୍ଚ ପ୍ରତିଷ୍ଠା କରିଥିଲେ । କେବଳ ସେତିକି ନୁହେଁ ଶିଳାଲେଖରେ ଲିଖିତ ୧୦୩ ବର୍ଷ ତଳେ ନନ୍ଦରାଜା ଦ୍ୱାରା ଖୋଦିତ ପ୍ରଣାଳୀକୁ ସମ୍ପୂର୍ଣ୍ଣ ଭାବେ ଖୋଳାଇ ରାଜତ୍ୱର ପଞ୍ଚମ ବର୍ଷରେ ତନସୂଲୀ ବାଟରେ ଅଣାଇଥିଲେ । (ଷଷ୍ଠ ଧାଡ଼ି)

ଶ୍ରୀ କେଦାରନାଥ ମହାପାତ୍ର ମହୋଦୟ ଓ ତାଙ୍କ ମତାବଲମ୍ବୀ ଅନ୍ୟାନ୍ୟ ଗବେଷକମାନଙ୍କ ମତାନୁସାରେ ଯଦି ଆମେ 'ତିବସସତ'କୁ ୩୦୦ ବର୍ଷ ବୋଲି ଧରି ନେବା ତେବେ ତେରଶ ବସ ସତ ୧୩୦୦ ବର୍ଷ ହୋଇଯିବ ଏବଂ ସପ୍ତଦଶ ଲେଣ ସତ ୧୭୦୦ ଗୁମ୍ଫା ହୋଇଯିବ ଏବଂ ଏଥିରେ ସୃଷ୍ଟି ହୋଇଯିବ ପ୍ରତିଷ୍ଠିତ ବିରାଟ ଐତିହାସିକ ବିଭ୍ରାଟ -

Prof. K.C. Panigrahi in his history of Orissa - 'The compound Sata-dasa-lena sata admits of only one interpretation viz. One hundred and seventeen caves but not seventeen hundred caves, because the later interpretation will land us in an absurd proposition that Kharavel and his relatives excavated 1700 caves in the Kumari Paravata which is identified with the tiny hillock of Udayagiri. Similarly the compound ti-vas-sata can admit only one interpretation, viz. 103 years but not 300 years.'

ମଗଧରେ ନନ୍ଦ ରାଜତ୍ୱ ପୂର୍ବରୁ କଳିଙ୍ଗରେ ଜୈନଧର୍ମର ପ୍ରଚାର ହୋଇଥିବା ଅନୁମାନ କରାଯାଏ । ଏଥିପାଇଁ ହାତୀଗୁମ୍ଫାର ଶିଳାଲେଖ ଓ ଅନ୍ୟାନ୍ୟ କୀର୍ତ୍ତିରାଜି ତା'ର ଜ୍ୱଳନ୍ତ ପ୍ରମାଣ । କେଉଁ ଜୈନତୀର୍ଥଙ୍କର ପ୍ରଥମେ ଆସି ଜୈନଧର୍ମ କଳିଙ୍ଗରେ ପ୍ରଚାର କରିଥିଲେ ତାହା କହିବା କଷ୍ଟ ।

ସୁନ୍ଦରପଦା ଗ୍ରାମର ଉପକଣ୍ଠରେ ଜଟଣୀ ଆଡ଼େ ଧାବିତ ସଡ଼କ କଡ଼ରେ ଯେଉଁ କାଳିୟାସନୀ ମନ୍ଦିର ଅଛି, ସେହି ମନ୍ଦିରରେ ପ୍ରତିଷ୍ଠିତ ପ୍ରାୟ ଛଅ ଫୁଟ ଉଚ୍ଚ ସର୍ପଲାଞ୍ଛିତ ପଥର ମୂର୍ତ୍ତିତ୍ରୟଙ୍କୁ ଦର୍ଶନ କଲେ ଜୈନଙ୍କ ତେଇଶ ତୀର୍ଥଙ୍କର ଶ୍ରୀ ପାର୍ଶ୍ୱନାଥଙ୍କୁ ସ୍ମରଣ

କରାଯାଇପାରେ । ମହାବୀର ଜୈନଙ୍କ ପ୍ରାୟ ଅଢେଇଶହ ବର୍ଷ ପୂର୍ବରୁ ଐତିହାସିକ ମହାପୁରୁଷ ଶ୍ରୀ ପାର୍ଶ୍ୱନାଥ ତତ୍କାଳୀନ କଳିଙ୍ଗକୁ ଆସି ସ୍ୱଧର୍ମ ପ୍ରଚାର କରିଥିବା କଥା କତିପୟ ଐତିହାସିକ ସ୍ୱୀକାର କରନ୍ତି । ତେଣୁ କଳିଙ୍ଗ ଜୀନ ତତ୍କାଳୀନ କଳିଙ୍ଗବାସୀଙ୍କର ଅତ୍ୟନ୍ତ ଆଦର ଓ ଗର୍ବର ବସ୍ତୁ ଥିଲା, ଏହା ହାତୀଗୁମ୍ଫା ଲେଖରୁ ସ୍ପଷ୍ଟ ଜଣାଯାଏ । ନନ୍ଦରାଜା ଅପହୃତ କଳିଙ୍ଗଜୀନକୁ ଶ୍ରୀ ଖାରବେଳ ମଗଧ ଜିଣି ମଗଧରୁ ବିଜୟ ଗୌରବରେ ଫେରାଇ ଆଣିଥିଲେ । ତେବେ ପ୍ରଶ୍ନ ଉଠେ - ଏହି ନନ୍ଦରାଜା କିଏ ?

ଏବର ଜଗନ୍ନାଥ ପୁରୀ ପ୍ରାଚୀନ ଯୁଗରେ ଏକ ସୁପ୍ରସିଦ୍ଧ ଜୈନ ତୀର୍ଥ ଥିବାର ଗବେଷକମାନେ ମତବ୍ୟକ୍ତ କରନ୍ତି । ହାତୀଗୁମ୍ଫା ଶିଳାଲେଖର ଏକାଦଶ ଧାଡ଼ି ଏହାର ସ୍ମୃତି ବହନ କରେ । କଳିଙ୍ଗ ପୂବରାଜ ନିବେଶିତ ପିଥୁଦକଦଭ-ନଗଲିନେ କାଡୟତି-ଜୀନପଦ-ଭବନଂ ଚ ତେରସ-ବସ-ସତ-କତଂ ଭିଦତି-ତିମିର-ଦହ-ସଂଘାତଂ- ଅନୁମାନ କରାଯାଏ ଯେ, ଏ ବାକ୍ୟଟି ଏବର ପୁରୀକୁ ଲକ୍ଷ୍ୟ କରି ଲେଖାଯାଇଛି । ନଗରର ବିଶେଷଣ ହେଉଛି ପିଥୁଦକ ଦଭ- ମଗଧ- ବିଜୟ-ଟ୍ରଫି ଜୀନାସନର ଯଥାସ୍ଥାନରେ ମହାସମାରୋହରେ ପୁନଃସ୍ଥାପନ ଜୈନ ଧର୍ମର ଇତିହାସରେ ଏ କଳ୍ପନାତୀତ ଘଟଣା । ଅପହୃତ ଜୀନାସନର ବଦ୍ଧମୂଳ ସ୍ମୃତି ଲକ୍ଷ ଲକ୍ଷ ଜୈନଙ୍କ ହୃଦୟରେ ସେତେବେଳେ ଉଦ୍ଭାସିତ ହୋଇଥିଲା । ଲକ୍ଷ ଲକ୍ଷ ଭକ୍ତ ଆନନ୍ଦାଶ୍ରୁ ବର୍ଷଣ କରିଥିଲେ ଜୈନପୀଠ ପୀଥୁଣ୍ଡରେ । ଜଣେ ଜାତୀୟ ଭାବାପନ୍ନ ଆଦର୍ଶ ସମ୍ରାଟ ଥିଲେ ମହାବୀର ଶ୍ରୀ ଖାରବେଳ । ସ୍ୱଦେଶ ବତ୍ସଳତା, ସ୍ୱଦେଶ ପ୍ରାଣତା ପ୍ରକାଶିତ ହେଉଥିଲା ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ । ତାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା ସ୍ୱବଂଶ, ସ୍ୱରାଜ୍ୟ, ସ୍ୱ-ପ୍ରଜାବର୍ଗର ଗୌରବ ଓ ଖ୍ୟାତି ବୃଦ୍ଧି । ଜାତୀୟ ଭାବାପନ୍ନ ଆଦର୍ଶ ସମ୍ରାଟ ଥିଲେ ମହାବୀର ଶ୍ରୀ ଖାରବେଳ । ତେଣୁ ହାତୀଗୁମ୍ଫା ଲେଖରେ ସେ ତାହା ଉଲ୍ଲେଖ କରିଛନ୍ତି ।

କିନ୍ତୁ ଚଣ୍ଡାଶୋକ କଳିଙ୍ଗ ଯୁଦ୍ଧ ପରେ କଳିଙ୍ଗରୁ ଶିକ୍ଷା ପାଇ ଅଶୋକରେ ପରିଣତ ହୋଇଗଲେ ମଧ ତାଙ୍କ ବଂଶର ନାମ କେଉଁଠି ମିଳେ ନାହିଁ କାରଣ ତାଙ୍କର ପିତାମହ ଚନ୍ଦ୍ରଗୁପ୍ତ ଓ ପିତା ବିନ୍ଦୁସାର ପ୍ରଚଳିତ ନନ୍ଦବଂଶର ନନ୍ଦରାଜା ରୂପେ ହିଁ ଶାସନ କରୁଥିଲେ ଗଡ୍ଡାଳିକା ପ୍ରବାହରେ, ଚଣ୍ଡାଶୋକ ମଧ ସେହି ପ୍ରବାହର ସ୍ରୋତରେ ହିଁ ପ୍ରବାହିତ ହୋଇଛନ୍ତି । ତେଣୁ ଯେଉଁ ନନ୍ଦରାଜା ଶବ୍ଦ ହାତୀଗୁମ୍ଫା ଶିଳାଲେଖରେ ଅଛି ତାହା ଚଣ୍ଡାଶୋକ ଛଡ଼ା ଆଉ କେହି ନୁହନ୍ତି କାରଣ ଆଉ କୌଣସି ନନ୍ଦରାଜା କଳିଙ୍ଗ ସହିତ ଯୁଦ୍ଧ କରିବା କଥା ତେଣିକି ଥାଉ ଆଖିଟେକି କଳିଙ୍ଗକୁ ଚାହିଁବା ପାଇଁ ମଧ ସେମାନଙ୍କର ସାହସ ନଥିଲା, କାରଣ ସେତେବେଳେ କଳିଙ୍ଗ ଥିଲା ବୀର ଭୂମି-କଳିଙ୍ଗାଃ-ସାହସିକାଃ- ଆଉ ପ୍ରତିପତ୍ତିଶାଳୀ । ସବୁ ବିଷୟରେ କଳିଙ୍ଗ ବୀରମାନେ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧ ଥିଲେ । ନନ୍ଦରାଜାମାନେ ଓ ଚନ୍ଦ୍ରଗୁପ୍ତ ପ୍ରଭୃତି ଭାରତର ସମସ୍ତ ରାଜ୍ୟ ଜୟ କରିଛନ୍ତି - କିନ୍ତୁ ଭୁଲ୍‌ରେ ସୁଦ୍ଧା କଳିଙ୍ଗ ମାଟିରେ ଗୋଡ଼ ମଡ଼େଇ ନାହାନ୍ତି ବୀରତ୍ୱ ଗର୍ବରେ ।

କୂଟନୀତିଜ୍ଞ ବିଜ୍ଞ ରାଜନୀତିଜ୍ଞ ଚାଣକ୍ୟଙ୍କ ପରାମର୍ଶ ଓ ଉପଦେଶରେ ନନ୍ଦବଂଶର ଶେଷ ରାଜାଙ୍କୁ ପରାସ୍ତ ଓ ବଧ କରି ଚନ୍ଦ୍ରଗୁପ୍ତ ମଗଧ ସିଂହାସନ ଆରୋହଣ କଲେ ଖ୍ରୀ:ପୂ:୩୨୪ରେ । ତାଙ୍କର ପୌତ୍ର ନିଷ୍ଠୁର ଚଣ୍ଡାଶୋକ ବୁଦ୍ଧଦେବଙ୍କ ପରେ ସର୍ବପ୍ରଥମେ କଳିଙ୍ଗ ଆକ୍ରମଣ ପାଇଁ ଆୟୋଜନ କରିଥିଲେ । xxx As observed by Dr. B.M. Barua, 'it is almost conclusive from the statements of Ashok's R.E. XIII that Ashok was the first among the Indian Kings reigning after Budha's demise, to conquer the there to fore unconquered land of the Kalinga (Avijitam, Viginitum) and annex the same to his own Kingdom.' xxx ଗ୍ରୀକ୍ ସେନାପତି ଓ ସୈନ୍ୟଙ୍କର ସାହାଯ୍ୟ ଓ ସହାନୁଭୂତି ଥିବାରୁ କଳିଙ୍ଗ ଜୟ କରିବା ଚଣ୍ଡାଶୋକଙ୍କ ପାଇଁ ସମ୍ଭବପର ହୋଇଥିଲା ବୋଲି କତିପୟ ଗବେଷକ ମତବ୍ୟକ୍ତ କରନ୍ତି । କୌଣସି ମାରାତ୍ମକ ଯୁଦ୍ଧ ନୀତି ହିଁ ମଗଧ ସୈନ୍ୟଙ୍କୁ ବିଜୟମଣ୍ଡିତ କରିଥିଲା । ଯେଉଁ ନିର୍ମମ ନରହତ୍ୟା ତଥା ଅମାନବୀୟ ଅତ୍ୟାଚାର କଳିଙ୍ଗ ଯୁଦ୍ଧରେ ହୋଇଥିଲା ଚଣ୍ଡାଶୋକ ପରି ଜଣେ ଅତି କଠୋର ହୃଦୟ ବ୍ୟକ୍ତିଙ୍କୁ ବି ବିଚଳିତ କରି ଦେଇଥିଲା । ତେଣୁ ସ୍ୱ-ପାପର ପ୍ରାୟଶ୍ଚିତ ପାଇଁ ଓ ନିଜର ଦୂରପନେୟ ହତ୍ୟା ପାଇଁ ଅନୁତପ୍ତ ଚଣ୍ଡାଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହେବା ପରେ ଅଶୋକ ହୋଇ ତା'ପରେ ଲୋକମୁଖରେ ଧର୍ମାଶୋକ ହୋଇଯାଇଥିଲେ ।

ବୁଦ୍ଧଙ୍କ ପୂର୍ବରୁ କାଶୀ ସମ୍ରାଟ ଓ ଦଣ୍ଡକ ସମ୍ରାଟ କଳିଙ୍ଗ ଜୟ କରି ଶାସନ କରୁଥିଲେ ବୋଲି କେତେକ ଗବେଷକଙ୍କ ମତ । ଭାରତୀୟ ରାଜାମାନେ ବୈଦିକ ଯୁଗରୁ ଦିଗ୍‌ବିଜୟ ପାଇଁ ବହିର୍ଗତ ହେବାର ପ୍ରଥା ପ୍ରଚଳିତ ଥିଲା । ସେଥିପାଇଁ ଅଶ୍ୱମେଧ, ରାଜସୂୟ, ବାଜପେୟ ଯଜ୍ଞାଦିର ସୃଷ୍ଟି । ଐତିହାସିକ ଯୁଗରେ ମଧ ଅଶୋକ, ଖାରବେଳ, ସମୁଦ୍ରଗୁପ୍ତ, ସ୍କନ୍ଦଗୁପ୍ତ ପ୍ରଭୃତି ଅନେକ ଦେଶ ଜୟ କରିଥିଲେ । ଅଶୋକଙ୍କ ପରେ ତାଙ୍କ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଯାଇଥିଲା । ତାଙ୍କ ବଂଶର ଶେଷ ରାଜା ବୃହଦ୍ରଥଙ୍କୁ ତାଙ୍କର ବ୍ରାହ୍ମଣ ସେନାପତି ପୁଷ୍ୟମିତ୍ର ସୁଙ୍ଗ ହତ୍ୟାକରି ସିଂହାସନାରୋହଣ କରିଥିଲେ ଖ୍ରୀ:ପୂ:୧୮୪ ଅବ୍ଦରେ ।

ଦୁର୍ଭାଗ୍ୟର କଥା ବହୁବର୍ଷ ପର୍ଯ୍ୟନ୍ତ ମୂକ ଓ ପ୍ରାଣହୀନ ହୋଇ ପଡ଼ିଥିଲା ଉଦୟଗିରିର ବିଖ୍ୟାତ ହାତୀଗୁମ୍ଫା । କଳିଙ୍ଗର ଗୌରବମୟ ଇତିହାସ ଉତ୍କଳୀୟମାନଙ୍କ ପ୍ରାଣରେ ସ୍ପନ୍ଦନ ଆଣୁ ନଥିଲା । ଚକ୍ରବର୍ତ୍ତୀ କଳିଙ୍ଗାଧିପତି ଶ୍ରୀ ଖାରବେଳ ଭାରତ ବିଜୟୀ ହେବା ସଂଗେସଂଗେ ଏବର ପାକିସ୍ଥାନ ଓ ଆଫଗାନିସ୍ଥାନକୁ ଜୟ କରି ବିଜୟ ପତାକା

ଉଡାଇଥିଲେ । ହାତୀଗୁମ୍ଫା ଶିଳାଲେଖରେ କଳିଙ୍ଗ ସମ୍ରାଟ ଖାରବେଳଙ୍କ ଯେଉଁ ଉପାଧି ସମୂହ ଅଛି ତାହା ବାସ୍ତବିକ୍ ଉଲ୍ଲେଖଯୋଗ୍ୟ । ତାଙ୍କ ରାଜତ୍ୱକାଳ ମଧ୍ୟରେ 'ଅପ୍ରତିହତ', 'ଚକ୍ରବାହନ', 'ଚକ୍ରଧର', 'ଗୁପ୍ତଚକ୍ର', 'ପ୍ରବର୍ତ୍ତଚକ୍ର', 'ମହାବିଜୟୀ' ଉପାଧିଭୂଷିତ ମହାପରାକ୍ରମଶାଳୀ ଶ୍ରୀ ଖାରବେଳ ପ୍ରବଳଶକ୍ତି ପ୍ରତିଷ୍ଠା ଦ୍ୱାରା ପ୍ରାଚୀନ ବୀରଭୂମି କଳିଙ୍ଗକୁ ଜୟଶ୍ରୀ ମଣ୍ଡିତ କରିବା ସଂଗେସଂଗେ ଗୌରବାନ୍ୱିତ କରି ତତ୍କାଳୀନ ସମଗ୍ର ଭାରତ ଭୂଖଣ୍ଡର ରାଜ୍ୟଗୋଷ୍ଠୀ ମଧ୍ୟରେ କଳିଙ୍ଗକୁ ଶୀର୍ଷସ୍ଥାନ ଦେବା ସହ ଆର୍ଯ୍ୟ ସଭ୍ୟତାର ସର୍ବଶ୍ରେଷ୍ଠ ସୋପାନରେ ପହଞ୍ଚିଥିଲେ । ଏହି ଶ୍ରେଷ୍ଠ ମହାବୀରଙ୍କ ପ୍ରଶସ୍ତି ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କରୁନଥିଲା ୧୮୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ପ୍ରାତଃ ସ୍ମରଣୀୟ ଷ୍ଟାର୍ଲିଂ ସାହେବ ୧୮୨୭ ଖ୍ରୀ:ରେ ହାତୀଗୁମ୍ଫାର ଶିଳାଲେଖ ପ୍ରକାଶ କଲେ ଏସିଆଟିକ୍ ସୋସାଇଟି ପତ୍ରିକାରେ । ସେହିଦିନୁ ଏହି ଶିଳାଲେଖ ଓଡ଼ିଶା, ଭାରତ ଓ ପୃଥିବୀର ବିଖ୍ୟାତ ପ୍ରବୀଣ ଗବେଷକ ଓ ପ୍ରତ୍ନତତ୍ତ୍ୱ ଅନ୍ୱେଷୀମାନଙ୍କର ଦୃଷ୍ଟି ଆକର୍ଷଣ କଲା । ଧୀରେ ଧୀରେ ଶ୍ରୀ ଖାରବେଳ ଜନଲୋଚନକୁ ଆସିଲେ । ଅଶୋକଙ୍କ ସମେତ ପୃଥିବୀର କୌଣସି ରାଜା ଏହିପରି ଉପାଧିରେ ଭୂଷିତ ହୋଇପାରିନାହାନ୍ତି । ଏକାଧାରରେ ଶ୍ରୀ ଖାରବେଳ ଥିଲେ ଯୋଦ୍ଧା, ପୁଣି ଅହିଂସା ପ୍ରତି ଅନୁରକ୍ତ ଧାର୍ମିକ, କଳାପ୍ରେମୀ, ସଂଗୀତ, ନୃତ୍ୟ, ନାଟକ, ଚାରୁକଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ବିଦ୍ୟାରେ ପ୍ରବୀଣ ଏବଂ କଳିଙ୍ଗରେ ଏହାର ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ତାଙ୍କର ସ୍ୱବଂଶବତ୍ସଳତାକୁ ମହାନ କରି ଦେଇଥିଲା ।

ତତ୍କାଳୀନ କଳିଙ୍ଗର ନୌ-ବାଣିଜ୍ୟ ଅତି ଉନ୍ନତି ଥିଲା । ଏ ଦେଶର ସାଧବମାନେ ମାଳୟ, ବ୍ରହ୍ମଦେଶ, ଜାଭା, ବାଲି, ସୁମାତ୍ରା ଓ ଲଙ୍କା ପ୍ରଭୃତି ଦେଶ ସହିତ ନୌବାଣିଜ୍ୟ କରି କଳିଙ୍ଗକୁ ସମୃଦ୍ଧିଶାଳୀ କରିଥିଲେ । କଳିଙ୍ଗର ଏକ ସୁଦୃଢ଼ ନୌସେନା ଥିଲା । ଏତେବଡ଼ ସମୃଦ୍ଧିଶାଳୀ ଦେଶର ଶ୍ରେଷ୍ଠ ନରପତି ହୋଇ ସୁଦ୍ଧା ବୀର ଶ୍ରୀ ଖାରବେଳ ଯୁଦ୍ଧଖୋର ନଥିଲେ । କ୍ଷମତାଲିପ୍ସା ଓ ରାଜ୍ୟଲିପ୍ସା ପାଇଁ ସେ କେବେ ଯୁଦ୍ଧ କରି ନାହାନ୍ତି । ସେ ବାଧ୍ୟ ହୋଇ ଯୁଦ୍ଧ କରୁଥିଲେ ନ୍ୟାୟ ପାଇଁ ଅପରିହାର୍ଯ୍ୟ ହେଲାବେଳେ । ସେ ସବୁବେଳେ ଯତ୍ପରୋନାସ୍ତି ଉଦ୍ୟମ କରୁଥିଲେ ଶାନ୍ତପନ୍ଥାର ଅନୁସନ୍ଧାନରେ ଯେକୌଣସି ସମୟରେ ଯୁଦ୍ଧ କରିବା ପୂର୍ବରୁ । ସେ ରାଜ୍ୟ ଜୟ କରିଛନ୍ତି - କିନ୍ତୁ କୌଣସି ରାଜ୍ୟର ସ୍ୱାଧୀନତାକୁ ଅପହରଣ କରିନାହାନ୍ତି - ଯାହା କରିଛନ୍ତି କଠୋର ହୃଦୟ ଚଣ୍ଡାଶୋକ । ଐତିହାସିକମାନେ ଖାରବେଳଙ୍କର ମହତ ଚରିତ୍ରର ଏହି ଦିଗଟି ଉପରେ ବିଶେଷ ବିଶ୍ଳେଷଣ କରିପାରିନାହାନ୍ତି ।

ଅତ୍ୟାଚାରୀ, ଲୁଣ୍ଠନକାରୀ, ଯୁଦ୍ଧଖୋର ଆଲେକ୍‌ଜାଣ୍ଡାରଙ୍କୁ ଆମେ ବିନା ବିଚାରରେ ପାଶ୍ଚାତ୍ୟ ଐତିହାସିକଙ୍କ ଲେଖାରେ ପ୍ରଭାବିତ ହୋଇ Alexandar the Great ବୋଲି ମାନିନେଲୁ-ଅଥଚ ଆମେ ଜାଣିଥିଲୁ ଯେ ଗୋଟିଏ ହେଲେ କାମ ସେ କରି ନାହାନ୍ତି, ଯାହା ମାନବିକ ମୂଲ୍ୟବୋଧର ଅନୁକୂଳ, ତଥାପି ଇତିହାସରେ ସେ ହୋଇଗଲେ The Great.

ଅଥଚ ଆମ କଳିଙ୍ଗରେ The Great ଖାରବେଳ ନ୍ୟାୟତଃ ସବୁ ବିଷୟରେ Great ଥିଲେ । କଳାରେ, ମାନବିକ ମୂଲ୍ୟବୋଧରେ, ଧର୍ମପାଳନରେ, ଅନ୍ୟାୟ ବିପକ୍ଷରେ ଯୁଦ୍ଧ କରିବାରେ ମହାପରାକ୍ରମଶାଳୀ ବୀର ଖାରବେଳ ବିଶ୍ୱ ଇତିହାସରେ The Great ହୋଇପାରିଲେ ନାହିଁ - ଯଦିଓ ଚଣ୍ଡାଶୋକଙ୍କଠାରୁ ସବୁ ବିଷୟରେ ସେ ମହତର ଥିଲେ । ଐରବୀର ଖାରବେଳଙ୍କ ବ୍ୟକ୍ତିତ୍ୱ ପାଇଁ ଇତିହାସ ଦେଇ ନାହିଁ ଉପଯୁକ୍ତ ନ୍ୟାୟ । ଏହା ସତେ କ'ଣ ବିଧିର ବିଧାନ ?

ପରିସ୍ଥିତିର ଘଟଣାଚକ୍ରରେ ପେଷି ହୋଇ ବୀର ଓଡ଼ିଆ ଜାତି ୧୫୬୮ ପରଠାରୁ ସ୍ୱାଭିମାନକୁ ଭୁଲିଗଲା ଏବଂ ତା'ରି ଜାଗା ମାଡ଼ି ବସିଲା ହୀନମନ୍ୟତା ଯାହା ଆଜି ଆମେ ଅଙ୍ଗେ ଅଙ୍ଗେ ଭୋଗ କରୁଛେ ।

ଐତିହାସିକ B.M. Barua ଶିଳାଲେଖର ନନ୍ଦରାଜାଙ୍କୁ ଅଶୋକ ବୋଲି ଚିହ୍ନଟ କରିଛନ୍ତି । ଏହାର ଏକାଧିକ କାରଣ ଅଛି । ପ୍ରଥମ କାରଣ-ଅଶୋକ ନିଜର R.E.-XIIIରେ ସ୍ପଷ୍ଟ ଭାବରେ ଲେଖିଛନ୍ତି ଯେ ବୁଦ୍ଧଙ୍କ ପରେ ସେ ହେଉଛନ୍ତି ପ୍ରଥମ ଭାରତୀୟ ରାଜା ଯେ କି ଅବିଜିତ କଳିଙ୍ଗକୁ ଜୟ କରିଥିଲେ ଏବଂ ତାକୁ ସ୍ୱ-ରାଜ୍ୟରେ ମିଶାଇଥିଲେ ।

ଦ୍ୱିତୀୟ କାରଣ - ଖ୍ରୀଷ୍ଟପୂର୍ବ ଭାରତୀୟ ରାଜାମାନଙ୍କ ମଧ୍ୟରେ ତାଙ୍କ ବଂଶର ରାଜାମାନେ ହିଁ ପ୍ରଣାଳୀ ଖୋଦନ ପ୍ରକ୍ରିୟା ଦେଶରେ ପ୍ରାରମ୍ଭ କରିଥିଲେ । ତାଙ୍କ ପିତାମହ ଚନ୍ଦ୍ରଗୁପ୍ତଙ୍କ ଗଭର୍ଣ୍ଣର (Governor) ପୁଷ୍ୟଗୁପ୍ତ ତତ୍କାଳୀନ ସୌରାଷ୍ଟ୍ରର ଗିର୍‌ନାର୍‌ରେ କେନାଲ ଖୋଳା ଆରମ୍ଭ କରିଥିଲେ ଯାହା ଅଶୋକ ସମ୍ପୂର୍ଣ୍ଣ କରିଥିଲେ । ଯଦି ସୁଦୂର ପଶ୍ଚିମ ଭାରତରେ ସେତେବେଳେ ଏସିଆ ମହାଦେଶର ବିଭିନ୍ନ ଦେଶରୁ ଅଣାଇଥିବା ବୁଦ୍ଧିମାନ ଯନ୍ତ୍ରୀଙ୍କ ଦ୍ୱାରା ଅଶୋକ ବୃହତ୍ ବୃହତ୍ ଜଳସେଚନ ପ୍ରଣାଳୀ ଖୋଳାଇ ପାରିଥିଲେ, ତେବେ ଆମେ କାହିଁକି ଅବିଶ୍ୱାସ କରିବା ଯେ ସେ ଜୟ କରିଥିବା କଳିଙ୍ଗରେ ତାହା କରିନଥିବେ ବୋଲି ।

ଏ ପରିପ୍ରେକ୍ଷୀରେ ଏତିକି କୁହାଯାଇପାରେ ଯେ ତଥାକଥିତ ନନ୍ଦବଂଶର ମହାପଦ୍ମନନ୍ଦ ତାଙ୍କ ରାଜ୍ୟରେ କେଉଁଠି ଜଳସେଚନ ପ୍ରଣାଳୀ ପାଇଁ କେନାଲ ଖୋଳାଇବାର ଦୃଷ୍ଟାନ୍ତ ନାହିଁ । ପୁଣି ପୁରାଣରୁ ଏବଂ ଗ୍ରୀକ୍ ସାହିତ୍ୟରୁ ଜଣାପଡ଼େ ଯେ ନନ୍ଦବଂଶର ରାଜାମାନେ ଥିଲେ ଲୋଭୀ, ଅତ୍ୟାଚାରୀ ଏବଂ ସେମାନେ ପ୍ରଜାମାନଙ୍କର ଆସ୍ଥାଭାଜନ ନଥିଲେ । ବ୍ରାହ୍ମଣମାନେ ସେମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ । ବୌଦ୍ଧ ଓ ଜୈନମାନେ ମଧ୍ୟ ନନ୍ଦ ରାଜାମାନଙ୍କ

ଆଚରଣରେ ସନ୍ତୁଷ୍ଟ ନଥିଲେ । ଲାଞ୍ଛିତ ରୌପ୍ୟମୁଦ୍ରା (Punch marked silver coin) ପ୍ରଚଳନର ଦ୍ୱାହି ଦେଇ କେତେକ ଗବେଷକ ଐତିହାସିକ ତତ୍କାଳୀନ କଳିଙ୍ଗରେ ତଥାକଥିତ ମହାପଦ୍ମ ନନ୍ଦ ରାଜତ୍ୱ ଚାଲିଥିଲା ବୋଲି ଯାହା କହୁଛନ୍ତି ତାହାର ଐତିହାସିକ ସତ୍ୟତା କିଛି ନାହିଁ । ତେଣୁ ଶିଳାଲେଖରେ ଯେଉଁ ନନ୍ଦରାଜା ଶବ୍ଦ ପ୍ରୟୋଗ ହୋଇଛି ସେ ଅଶୋକଙ୍କ ବ୍ୟତୀତ ଆଉ କେହି ନୁହନ୍ତି ।

ଐତିହାସିକମାନଙ୍କ ମତରେ ଖ୍ରୀ:ପୂ:୨୬୧ ଅବ୍ଦରେ କଳିଙ୍ଗ ଯୁଦ୍ଧ ହୋଇଥିଲା ଧଉଳି ଉପକଣ୍ଠରେ ଏବଂ ଖ୍ରୀ:ପୂ:୨୫୭ ଅବ୍ଦରେ ଦକ୍ଷିଣ କଳିଙ୍ଗ ରାଜଧାନୀ ସମାପା ନିକଟସ୍ଥ ଜଉଗଡ଼କୁ ଯାଇଥିଲେ ଅଶୋକ ।

ଆଧୁନିକ ଐତିହାସିକମାନଙ୍କ ମତରେ ଖ୍ରୀ:ପୂ:୩୨୪ ଅବ୍ଦରେ ଚଣ୍ଡାଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ସିଂହାସନ ଆରୋହଣ କରିଥିଲେ । ତାଙ୍କ ପୂର୍ବରୁ ନବନନ୍ଦ ବା ନଅ ଜଣ ନନ୍ଦ ରାଜା ପ୍ରାୟ ଏକ ଶହ ବର୍ଷ ଶାସନ କରିଥିଲେ । ତା' ଅର୍ଥ ପ୍ରାୟ ଖ୍ରୀ:ପୂ:୪୨୪ରେ ନନ୍ଦ ରାଜତ୍ୱର ପ୍ରାରମ୍ଭ । ପୁଷ୍ୟମିତ୍ର ସୁଂଗ ପରେ ମଗଧର ରାଜା ହେଲେ ବୃହସ୍ପତି ମିତ୍ର ଖ୍ରୀ:ପୂ:୧୪୮ରେ ଯାହାଙ୍କୁ ପଦାନତ କରି ଖାରବେଳ ମଗଧ ବିଜୟ କରିସାରି ଚଣ୍ଡାଶୋକ ଦ୍ୱାରା ଅପହୃତ ଜୀନାସନକୁ ମହା ଗୌରବରେ କଳିଙ୍ଗକୁ ଫେରାଇ ଆଣିଥିଲେ ପ୍ରାୟ ଖ୍ରୀ:ପୂ:୧୪୭ରେ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ।

ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ ବିଶାଖା ଦତ୍ତ ମୁଦ୍ରାରାକ୍ଷସ ନାଟକ ଲେଖିଥିଲେ, ଯେଉଁଥିରେ ମୌର୍ଯ୍ୟ ଶବ୍ଦର ବ୍ୟବହାର ହୋଇଛି ଯେହେତୁ ଚନ୍ଦ୍ରଗୁପ୍ତଙ୍କ ମା'ଙ୍କ ନାମ ଥିଲା ମୁରା । ଏହା ଚଣ୍ଡାଶୋକଙ୍କ ବହୁ ପରବର୍ତ୍ତୀ କାଳର କଥା । ଅଶୋକ ସମେତ ଏହି ତଥାକଥିତ ମୌର୍ଯ୍ୟବଂଶୀ ରାଜାମାନେ ଲୋକମୁଖରେ ନନ୍ଦରାଜା ରୂପେ ହିଁ ବିଦିତ ଥିଲେ ଖାରବେଳଙ୍କ ସମୟରେ -

History of Orissa by Prof. K.C. Panigrahi, Page- 28-29.

xxx 'If this identification is considered sound the epithet Nandaraja applied to Ashok need not frighten us, because there is no evidence yet discovered, which can prove that during the age of Kharavel Ashok was known as a Maurya King or that he was not known as a Nanda king. On the countrary, his grandfather Chandragupta has been represented as NANDANVAYA PURVANANDA-SUTA xxx

ଖ୍ରୀ:ପୂ:୨୬୧ଠାରୁ ଖ୍ରୀ:ପୂ:୨୫୭ ପର୍ଯ୍ୟନ୍ତ ଅତିକମ୍‌ରେ ଅଶୋକ ତଦାନିନ୍ତନ କଳିଙ୍ଗରେ ନିଶ୍ଚୟ ଥିଲେ । ଆହୁରି କିଛି ସମୟ ଅଧିକ ବି ଥାଇପାରନ୍ତି କାରଣ ଖ୍ରୀ:ପୂ:୨୫୭ରେ ସେ ଥିଲେ ଗଂଜାମର ଜଉଗଡ଼ରେ ଏବଂ ସେଠାରୁ ସେ ଉଡ଼ି କରି ଯାଇନାହାନ୍ତି ପାଟଳୀପୁତ୍ରକୁ । ତେଣୁ କେନାଲ ଖୋଳାକାମ ଓ ଧଉଳି ଜଉଗଡ଼ ଶିଳାଲେଖ କାମ ଖ୍ରୀ:ପୂ:୨୬୧ ଓ ୨୫୭ ମଧ୍ୟରେ ନିଶ୍ଚୟ ହୋଇଥିବ ।

'ତିବସସତ'କୁ ଆମେ ୧୦୩ ବର୍ଷ ବୋଲି ଧରି ନେଲେ ଶ୍ରୀ ଖାରବେଳଙ୍କ ପଞ୍ଚମବର୍ଷର ରାଜତ୍ୱ ପଡ଼ିବ (୨୫୭-୧୦୩) BC = ପ୍ରାୟ ୧୫୪ BCରେ । ତେବେ ସେ ସିଂହାସନ ଆରୋହଣ କରିଥିବେ ପ୍ରାୟ ଖ୍ରୀ:ପୂ:୧୫୯ (B.C.)ରେ । ତେଣୁ ଶ୍ରୀ ଖାରବେଳଙ୍କୁ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ ।

୮୪୭, କପିଳପ୍ରସାଦ
ସୁନ୍ଦରପଦା, ଭୁବନେଶ୍ୱର-୨

# ଓ.ଏସ୍.ଆର୍.ଟି.ସି. ପକ୍ଷରୁ ୨୦୦୫ ନଭେମ୍ବର ମାସରେ **୨୫୫.୧୭** ଲକ୍ଷ ଟଙ୍କା ଆୟ

ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ (ଓ.ଏସ୍.ଆର୍.ଟି.ସି.) ପକ୍ଷରୁ ୨୦୦୪ ମସିହା ନଭେମ୍ବର ମାସରେ ୨୩୭.୨୦ ଲକ୍ଷ ଟଙ୍କା ଆଦାୟ କରାଯାଇଥିବା ବେଳେ ୨୦୦୫ ମସିହା ନଭେମ୍ବର ମାସରେ ୨୫୫.୧୭ ଲକ୍ଷ ଟଙ୍କା ଆୟ କରାଯାଇପାରିଛି । ଏହାବ୍ୟତୀତ ଭୁବନେଶ୍ୱରର ବରମୁଣ୍ଡା ଓ କଟକର ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ରହଣି ମାହାସୁଲ ବାବଦରେ ୪ ଲକ୍ଷ ୬୬ ହଜାର ୭୭୦ ଟଙ୍କା ଆଦାୟ କରାଯାଇଛି ବୋଲି ବାଣିଜ୍ୟ ଓ ପରିବହନ ବିଭାଗ ସୂତ୍ରରୁ ଜଣାଯାଇଛି ।

# ଜାତୀୟ ଚେତନା ରଞ୍ଜିତ କାବ୍ୟ ଖାରବେଳ

ଡକ୍ଟର ସୋମା ଚାନ୍ଦ

ଖାରବେଳଙ୍କ ନାମ ସହିତ ଓଡ଼ିଶାବାସୀ ବିଶେଷଭାବେ ସଂପୃକ୍ତ ଓ ଗର୍ବିତ । ଖାରବେଳ ବୋଇଲେ ଆମେ ବୁଝୁ ଓଡ଼ିଶା ଇତିହାସର ଶ୍ରେଷ୍ଠ ନାୟକ ତଥା ବିଶିଷ୍ଟ ସମ୍ରାଟ ତୃତୀୟ ଚେଦିରାଜ ମହାମେଘବାହନ ଐର ଖାରବେଳଙ୍କୁ । ସେ ଥିଲେ ଓଡ଼ିଶାର ପ୍ରଖ୍ୟାତ ଚେଦୀ ରାଜବଂଶର ତୃତୀୟ ନରପତି ଯାହାଙ୍କ ଗାଥା ଗାରିମାରେ ଭୁବନେଶ୍ୱରସ୍ଥ ଖଣ୍ଡଗିରି, ଉଦୟଗିରିର ମୂକ ପ୍ରସ୍ତର ଝଙ୍କାର ମର୍ମରିତ । ତାଙ୍କର ସମସ୍ତ କୃତିତ୍ୱର ବର୍ଣ୍ଣାଢ଼୍ୟ ବର୍ଣ୍ଣନା ବର୍ଷାନୁକ୍ରମିକ ଭାବେ ଲିପିବଦ୍ଧ ହୋଇ ରହିଛି ହାତୀଗୁମ୍ଫା ଶିଳାଲେଖରେ । ନିଜର ଅନବଦ୍ୟ କୃତି ପାଇଁ ଏହି ସମ୍ରାଟ ଜାତୀୟସ୍ତରରେ ହାସଲ କରିଥିଲେ ସମୁଚିତ ଶ୍ରଦ୍ଧା ଓ ସମ୍ମାନ ।

ପ୍ରାଚୀନ ଭାରତବର୍ଷର ଇତିହାସରେ ଦୁଇଟି ରାଜବଂଶ ବିଶେଷ ପ୍ରାଧାନ୍ୟ ଲାଭ କରି ନିଜର କର୍ମସୂଚୀ ଓ ପରାକାଷ୍ଠା ବଳରେ ସୃଷ୍ଟି କରିଥିଲେ ସ୍ୱତନ୍ତ୍ର ଅଧ୍ୟାୟ । ଗୋଟିଏ ଥିଲା ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଉଦ୍ଭୂତ ମୌର୍ଯ୍ୟ ରାଜବଂଶ ଓ ଅନ୍ୟଟି ଥିଲା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ମୁଣ୍ଡ ଟେକିଥିବା ଗୁପ୍ତ ରାଜବଂଶ । ଏଇ ଦୁଇଟି ସାର୍ବଭୌମ ଶକ୍ତି ବ୍ୟତୀତ ଇତିହାସର ବିଭିନ୍ନ ସୟମରେ ବିଭିନ୍ନ ରାଜବଂଶର ଉଦୟ ହୋଇ ଭାରତ ଇତିହାସର ପ୍ରବାହଧାରାରେ ଆଣିଛି ବୈଚିତ୍ର୍ୟମୟ ବର୍ଣ୍ଣାଳୀ ।

ମୌର୍ଯ୍ୟ ରାଜବଂଶର ପତନ ଓ ଗୁପ୍ତ ରାଜବଂଶର ଉଦୟ - ଏଇ ସନ୍ଧିକ୍ଷଣ ସମୟକୁ ଐତିହାସିକମାନେ ସାଧାରଣତଃ ଅନ୍ଧକାରମୟ ଯୁଗ ହିସାବରେ ଅଭିହିତ କରିଥାନ୍ତି । କାରଣ ଏକ ସାର୍ବଭୌମ କେନ୍ଦ୍ରଶକ୍ତିର ଅନୁପସ୍ଥିତିର ସୁଯୋଗ ନେଇ ଭାରତର ବିଭିନ୍ନ ସ୍ଥାନରେ ଦେଖା ଦେଇଥିଲା ଅନୈକ୍ୟର ଧାରା ତଥା ବିଦେଶୀ ଅଭିଯାନ ଆଦି ଆନୁଷଙ୍ଗିକ ଘଟଣାରାଜି ।

କୃଷ୍ଣମେଘ ଦେହରେ ଦେଖାଯାଏ ଉଜ୍ଜ୍ୱଳ ଚପଳାର କ୍ରୀଡ଼ା । ସେହିପରି ଭାରତ ଇତିହାସର ଏହି ଅନ୍ଧକାରମୟ ଯୁଗରେ ମଧ୍ୟ ଦେଶର କେତେକ ଅଂଶରେ କିଛି କିଛି ଶକ୍ତିଶାଳୀ ନରପତିଙ୍କର ଆବିର୍ଭାବ ଇତିହାସର ଧାରାକୁ କିଛିକାଳ ପାଇଁ ଚମତ୍କୃତ କରିଥିଲା । ଏମାନଙ୍କ ମଧ୍ୟରୁ ସାତବାହନ ରାଜବଂଶର ଅଧିପତି ପ୍ରଥମ ସାତକର୍ଣ୍ଣୀ, କୁଶାଣ ବଂଶର ନରପତି କନିଷ୍କ ଏବଂ ଚେଦିବଂଶର ନୃପ ଖାରବେଳଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଯଦିଓ ସେମାନଙ୍କର ସମୟ କାଳ ପରସ୍ପରଠାରୁ ଭିନ୍ନ ତଥାପି ନିଜର କୃତିତ୍ୱ ଓ ପରାକାଷ୍ଠା ବଳରେ ସେମାନେ ପ୍ରାଚୀନ ଭାରତର ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଜାଜ୍ୱଲ୍ୟମାନ ।

ଉପରବର୍ଣ୍ଣିତ ନରପତି ଖାରବେଳ ତେଣୁ ଅତୀତ ଉତ୍କଳର କୀର୍ତ୍ତି ଗୌରବ, ଗାରିମା ଓ ମହିମା ସହିତ ବିଜଡ଼ିତ । ତାଙ୍କର ବଳିଷ୍ଠ ସାମରିକ କାର୍ଯ୍ୟାବଳୀ, ପ୍ରଜାନୁରଞ୍ଜକ ଶାସନ ତଥା ନିଷ୍ପାପର ଧର୍ମୀୟ ନୀତି ଯୋଗୁଁ ସେ ହୋଇଥିଲେ ଓଡ଼ିଆ ସାମରିକ ତଥା ସାଂସ୍କୃତିକ ଐତିହ୍ୟର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କରି ସମୟରେ ଓଡ଼ିଶାର ସୀମାରେଖା କେବଳ ବୃଦ୍ଧି ପାଇନଥିଲା, ଅଧିକନ୍ତୁ ବୈଦେଶିକ ଶତ୍ରୁଙ୍କୁ ପରାଜିତ କରି ସେ ବଜାଇଥିଲେ ଓଡ଼ିଶାର ବିଜୟ ଶୁଭଶଙ୍ଖ । ତେଣୁ ଖାରବେଳ ନାମ ଉଚ୍ଚାରଣରେ ହିଁ ମିଶି ରହିଛି ଏକ ସ୍ପର୍ଦ୍ଧିତ ଆବେଗ, ଏକ ଗାରିମାମୟ ଅନୁଭୂତି । ଆଉ ଏହି ଆବେଗ ଓ ଅନୁଭୂତି ସ୍ୱତଃସ୍ଫୂର୍ତ୍ତ ।

ଆଜିର ଆଲୋଚ୍ୟ 'ଖାରବେଳ' ଗୋଟିଏ କାବ୍ୟର ନାମ । ଏହାର ସ୍ରଷ୍ଟା ହେଉଛନ୍ତି ଓଡ଼ିଶାର ଅନ୍ୟତମ ପ୍ରବାଦପୁରୁଷ, ସତ୍ୟବାଦୀ ଯୁଗର ବିଶିଷ୍ଟ ପ୍ରତିନିଧି ପଣ୍ଡିତ ନୀଳକଣ୍ଠ ଦାସ । ଅବଶ୍ୟ କାବ୍ୟଟି ଆଲୋଚିତ ଚେଦି ସମ୍ରାଟ ଖାରବେଳଙ୍କ ଜୀବନ ଓ କୃତିତ୍ୱର ଏକ ନିର୍ଦ୍ଦିଷ୍ଟ ସମୟ ଉପରେ ଆଧାରିତ । ତେଣୁ ସ୍ୱାଭାବିକ ଭାବେ କାବ୍ୟଟିରେ ଭରି ରହିଛି ଉତ୍କଳୀୟ ଚେତନାର ପୃଷ୍ଠଭୂମିରେ ମହାଭାରତୀୟ ଜାତୀୟ ଚେତନାର ଉନ୍ମୁକ୍ତ ପରିପ୍ରକାଶ ।

କାବ୍ୟଟିର ଆତ୍ମପ୍ରକାଶ କାଳ ହେଲା ୧୯୨୦ ମସିହା । ଆମେ ଜାଣୁ ଯେ ଯୁଗକୁ ନେଇ ସାହିତ୍ୟ । ପ୍ରତ୍ୟେକ ଯୁଗର ରହିଛି ନିର୍ଦ୍ଦିଷ୍ଟ ଆଦର୍ଶ ଓ ସେହି ଆଦର୍ଶର ପ୍ରତିଫଳନ ଘଟିଥାଏ ସାହିତ୍ୟରେ । ସମୟକୁ ନେଇ ପ୍ରସ୍ଫୁଟିତ ହୋଇଥାଏ ସାହିତ୍ୟର ଚିନ୍ତାଧାରା ଓ ଭାବାଦର୍ଶ । ଆଲୋଚ୍ୟ ଖାରବେଳ କାବ୍ୟଟି ମଧ୍ୟ ଏହି ନିୟମର ବହିର୍ଭୂତ ନୁହଁ ।

ସମୟଟି ଥିଲା ଭାରତୀୟ ଜାତୀୟତାବାଦର ଚରମ ପରିପ୍ରକାଶ କାଳ । ୧୮୮୫ ମସିହାରେ ସୃଷ୍ଟି ହୋଇଥିଲା ଭାରତୀୟ ଜାତୀୟ କଂଗ୍ରେସ । ଏହାର ଆବିର୍ଭାବ ସହିତ ଭାରତୀୟ

ଜାତୀୟତାବାଦ ଏକ ନିର୍ଦ୍ଦିଷ୍ଟ ରୂପରେଖ ନେବାକୁ ଆରମ୍ଭ କରିଥିଲା । ୧୮୮୫ ମସିହାରୁ ୧୯୦୫ ମସିହା ପର୍ଯ୍ୟନ୍ତ ସମୟ ଥିଲା ଉଦାର ଜାତୀୟତାବାଦର ସମୟ ଅର୍ଥାତ୍ କଂଗ୍ରେସ ନେତୃବୃନ୍ଦ ଉଦାର ମନୋବୃତ୍ତି ନେଇ ପ୍ରାର୍ଥନାପତ୍ର, ଆବେଦନପତ୍ର ମାଧ୍ୟମରେ କର୍ତ୍ତୃପକ୍ଷଙ୍କ ପାଖରେ ଦାବୀ ଉପସ୍ଥାପନ କରୁଥିଲେ । କିନ୍ତୁ ସେମାନଙ୍କର ଏପ୍ରକାର ଭାବଧାରା କଂଗ୍ରେସର ଯୁବଗୋଷ୍ଠୀଙ୍କ ଦ୍ୱାରା ଗ୍ରହଣୀୟ ହୋଇନଥିଲା । ଲାଲା ଲାଜପତ୍ ରାୟ, ବାଲ ଗଙ୍ଗାଧର ତିଲକ ଓ ବିପିନ ଚନ୍ଦ୍ର ପାଲଙ୍କ ଆବିର୍ଭାବ ଭାରତୀୟ ଜାତୀୟତାବାଦରେ ଆଣିଥିଲା ଚରମପନ୍ଥୀ ମନୋଭାବ । ତେଣୁ ୧୯୦୫ ମସିହାରୁ ୧୯୧୯ ମସିହା ପର୍ଯ୍ୟନ୍ତ ପର୍ଯ୍ୟାୟକୁ ସ୍ୱାଧୀନତା ସଂଗ୍ରାମର ଚରମପନ୍ଥୀ ଯୁଗ ଭାବେ ଅଭିହିତ କରାଯାଏ ।

ଆଉ ଏହି ସମୟଟି ଓଡ଼ିଆ ସାରସ୍ୱତ ସାହିତ୍ୟରେ ସତ୍ୟବାଦୀ ଯୁଗ ନାମରେ ପରିଚିତ । ୧୯୦୯ ମସିହାରେ ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ ହେବା ପରଠାରୁ ୧୯୨୧ ମସିହା ପର୍ଯ୍ୟନ୍ତ ଏହି ବିଦ୍ୟାଳୟ ଜାତୀୟଚେତନା ଉଦ୍‌ଗୀରଣରେ ଏକ ପ୍ରମୁଖ ଭୂମିକା ନେଇଥିଲା । ତେଣୁ ସମୟଟିକୁ ସତ୍ୟବାଦୀ ଯୁଗ ବୋଲି କୁହାଯାଏ । କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀରମୋହନ ଓ ସ୍ୱଭାବକବି ଗଙ୍ଗାଧରଙ୍କ ଦ୍ୱାରା ଉଦ୍‌ଘାଟିତ ସାରସ୍ୱତ ଜାତୀୟଚେତନା ତୀବ୍ର ଆକାର ଧାରଣ କରିଥିଲା ସତ୍ୟବାଦୀ ଯୁଗର ସାଧକଙ୍କ ହାତରେ । ଆଉ ନୀଳକଣ୍ଠ ଦାସ ଥିଲେ ଏହି ଚେତନା ବିକିରଣର ଅନ୍ୟତମ ସୂତ୍ରଧର ।

ସାହିତ୍ୟ ଓ ସାଧନାରେ ମାନବ ସମାଜ ସହ ସମ୍ପର୍କ ପ୍ରତିଷ୍ଠା କରି ଜାତୀୟତା ଭାବଦ୍ୟୋତକ ସାହିତ୍ୟ ସୃଷ୍ଟି କରିବାରେ ନୀଳକଣ୍ଠ ଥିଲେ ଅନନ୍ୟ । ଜାତୀୟତାର ଭିତ୍ତିଭୂମି, ସତୀତ୍ୱ ଓ ନାରୀ, ପୃଥିବୀର ପ୍ରଧାନ ଚାରିଧର୍ମ, ଯୌବନର ପ୍ରଭାବ ଓ ପ୍ରତିଷ୍ଠା ଆଦି ଅସଂଖ୍ୟ ପ୍ରବନ୍ଧ, ସଂସ୍କୃତ ଓ ସଂସ୍କୃତି, ଓଡ଼ିଆ ଭାଷାର କ୍ରମ ପରିଣାମ, ଗୀତ ଭାଷ୍ୟ ପ୍ରଭୃତି ପୁସ୍ତକ ସହ ସେ ରଚନା କରିଛନ୍ତି ପ୍ରଣୟିନୀ, ଭକ୍ତିଗାଥା, କୋଣାର୍କେ, ଖାରବେଳ, ଦାସ ନାଏକ ଆଦି କାବ୍ୟମାନ । ଅପୂର୍ବ ସଂଯମ ଶୈଳୀ ଏବଂ ଓଜଗୁଣରେ ତାଙ୍କର ରଚନା ପରିପୂର୍ଣ୍ଣ ।

ବ୍ୟକ୍ତି ଭାବରେ ନୀଳକଣ୍ଠ ଥିଲେ ଅତ୍ୟନ୍ତ ସ୍ୱାଧୀନଚେତା । ତେଣୁ ଲେଖକ ଭାବରେ ସେ ଥିଲେ ନିର୍ଭୀକ ଓ ନିରଙ୍କୁଶ । ଜାତ୍ୟାଭିମାନ, ଆତ୍ମସମ୍ମାନବୋଧ ଓ ବିଶ୍ୱବୋଧ ଥିଲା ତାଙ୍କ ସର୍ଜନାର ବୈଶିଷ୍ଟ୍ୟ ।

କର୍ମର ଧୂସର ଭୂଇଁରେ ଉଗ୍ର ଜାତୀୟ ଚେତନାର ଅଗ୍ନିବୀଜ ବପନ କରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଓ ଐତିହ୍ୟକୁ ପ୍ରତିଷ୍ଠା କରିବା ଥିଲା ତାଙ୍କର ଲକ୍ଷ୍ୟ । ଯେଉଁ ସମୁନ୍ନତ ପୁରୋଦୃଷ୍ଟି ନେଇ ସତ୍ୟବାଦୀର ସାଧନା ପୀଠରେ ସେ କର୍ମମୁଖର ଥିଲେ ତାହା ଥିଲା ଦେଶବାସୀଙ୍କୁ ମଣିଷ ପରି ମଣିଷ କରି ଗଢ଼ି ତୋଳିବା । ସର୍ବୋପରି ଜାତୀୟ ମହାସ୍ରୋତ ସହିତ ସେମାନଙ୍କ ଜୀବନଧାରାକୁ ମିଶାଇ ସାର୍ବଜନୀନ ବିଶ୍ୱପ୍ରୀତିରେ ନିଜକୁ ଉତ୍ସର୍ଗ କରିବା ।

ଇଟାଲୀର ମହାନ୍ ସଂଗ୍ରାମୀ ନେତା ଜୋସେଫ୍ ମାଜିନୀ ଥରେ କହିଥିଲେ - 'We ought to worship the greatness of our fathers and seek in their toubs, a pledge of future.'

ଅର୍ଥାତ୍, ପୂର୍ବପୁରୁଷମାନଙ୍କର ମହତ୍ତ୍ୱ ଉପାସନା କରିବା ଓ ସେମାନଙ୍କ କବରରୁ ଭବିଷ୍ୟତ ଜାତୀୟତା ବନ୍ଧନ ସ୍ୱରୂପ ଉପକରଣ ଅନୁସନ୍ଧାନ କରିବା ଆମର ଏକାନ୍ତ ବିଧେୟ । ଆଉ ଏଇଥି ପାଇଁ ଦେଖାଯାଏ ଯେ ସବୁ ଯୁଗରେ ଓ ସବୁ ଦେଶରେ ଲୋକଜୀବନ ପ୍ରାଚୀନରୁ ପ୍ରେରଣା ପାଇ ଭବିଷ୍ୟତ ଗଠନ ନିମନ୍ତେ ପ୍ରୟାସୀ ହୁଏ ।

ନୀଳକଣ୍ଠ ଏହି ଚରମ ସତ୍ୟଟିକୁ ଅନ୍ତର ଦେଇ ଉପଲବ୍ଧି କରିଥିଲେ । ତେଣୁ ଓଡ଼ିଶାର ଇତିହାସ, ଓଡ଼ିଶାର ଗାଥାଗାରିମା, କିମ୍ବଦନ୍ତୀ ଓ ପ୍ରବାଦରୁ ସେ ସୃଷ୍ଟି କରିଥିଲେ ଜାତୀୟତାବୋଧକ ମହାକାବ୍ୟ । ସେ ଭଲ ଭାବରେ ଜାଣିଥିଲେ ଯେ ଭାରତ ଆମମାନଙ୍କର ଜନ୍ମକ୍ଷେତ୍ର ହେଲେ ହେଁ ତା'ର ସୁବିଶାଳ କଳେବରର ଅଂଶବିଶେଷ ହେଲା ଆମର ମାତୃଭୂମି ଉତ୍କଳ ପ୍ରଦେଶ । ଓଡ଼ିଆ ଆମର ମାତୃଭାଷା । ଏଇ ମାତୃଭାଷା ଦେଇ ସାହିତ୍ୟରେ ମାତୃଭୂମିର ସେବା କରିବା ଦ୍ୱାରା ଆମେମାନେ ମହାଭାରତୀୟ ସେବା ଓ ସେଇ ସୂତ୍ରରେ ବିଶ୍ୱସେବା କରିପାରିବା । ତେଣୁ ସେ ତାଙ୍କ ରଚନାରେ ପୂର୍ବସୂରୀମାନଙ୍କର ପାଶ୍ଚାତ୍ୟ ପ୍ରଭାବକୁ ଆଡ଼େଇ ଦେଇ ନିଜମାଟିର ସ୍ମୃତି, ଗାଥା, ପରମ୍ପରା ଓ ଇତିହାସକୁ କାବ୍ୟରୂପ ଦେଇ ଆମ ସାମ୍ନାରେ ଉପସ୍ଥାପିତ କରିଥିଲେ ।

'ଖାରବେଳ' କାବ୍ୟଟି ଏହି ପୃଷ୍ଠଭୂମିରେ ରଚିତ । ସମଗ୍ର କାବ୍ୟଟିରେ ରହିଛି ପଚାଶଟି ଛାନ୍ଦ । କାବ୍ୟ ବର୍ଣ୍ଣନାରେ ରହିଛି ଖାରବେଳଙ୍କର ଗୁରୁଗୃହରେ ଲେଖ, ରୂପ, ଗଣନା, ବ୍ୟବହାର, ବିଧି ଆଦି ପଞ୍ଚବିଦ୍ୟାରେ ଶିକ୍ଷାଲାଭ ଓ ସମସ୍ତ ରାଜନୈତିକ ତଥା ସାମାଜିକ ପ୍ରଣାଳୀରେ କୁଶଳତା ଅର୍ଜନ କରିବା କଥା ।

ଭୁବନେଶ୍ୱର ନିକଟସ୍ଥ ହାତୀଗୁମ୍ଫା ଶିଳାଲେଖରେ ପ୍ରବଳ ପରାକ୍ରମୀ କଳିଙ୍ଗ ନରପତି ଖାରବେଳଙ୍କର କୃତିତ୍ୱ ବର୍ଷାନୁକ୍ରମରେ ବର୍ଣ୍ଣିତ ହୋଇଛି, ଯେଉଁଥିରୁ ତାଙ୍କର ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି ବିଷୟରେ ସବିଶେଷ ଧାରଣା ମିଳିଥାଏ । ତାଙ୍କର ଆଭ୍ୟନ୍ତରୀଣ ଶାସନ ଥିଲା ଜନମଙ୍ଗଳ କର୍ମସୂଚୀ ଉପରେ ଆଧାରିତ ଏବଂ ବୈଦେଶିକ ନୀତି ଥିଲା ରାଜ୍ୟର ସୀମାବୃଦ୍ଧି ଓ ବୈଦେଶିକ ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବା ।

ରାଜତ୍ୱର ଅଷ୍ଟମ ବର୍ଷରେ ମଗଧର ରାଜଧାନୀ ପାଟଳୀପୁତ୍ର ପ୍ରତି ଅଭିଯାନ ଚଳାଇ ଗ୍ରୀକ୍ ସମ୍ରାଟ ଡିମେଟ୍ରିୟସ୍ (ତତ୍‌କାଳୀନ ମଧ୍ୟପ୍ରାଚୀର ଶ୍ରେଷ୍ଠ ନରପତି) ପଶ୍ଚିମାଞ୍ଚଳରୁ ଅଗ୍ରସର ହେଉଥିବା

ବେଳେ ଖାରବେଳଙ୍କ ସେନାବାହିନୀ ତାଙ୍କୁ ଅନୁଧାବନ କରି ମଥୁରା ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ଗ୍ରୀକ୍ ବାହିନୀକୁ ସିନ୍ଧୁନଦୀର ପଶ୍ଚିମ ପାଖରୁ ଅପସରି ଯିବାକୁ ପଡ଼ିଥିଲା । ଏହାଦ୍ୱାରା ଖାରବେଳ କଳିଙ୍ଗ ରାଜ୍ୟର ପ୍ରତିପତ୍ତି, ଶୌର୍ଯ୍ୟ ପ୍ରକାଶ କରିବା ସହିତ ସମଗ୍ର ଉତ୍ତର ଭାରତକୁ ଯବନଙ୍କ କବଳରୁ ରକ୍ଷା କରିଥିଲେ ।

ହାତୀଗୁମ୍ଫାରେ ବର୍ଣ୍ଣିତ ଏଇ ପ୍ରଶସ୍ତିକୁ ଐତିହାସିକ ସତ୍ୟାବଳୀରେ କଳ୍ପନାର ଅଞ୍ଜନ ଦେଇ କବି ନୀଳକଣ୍ଠ 'ଖାରବେଳ' କାବ୍ୟର ରୂପରେଖ ଦେଇଛନ୍ତି । ଏହି କାବ୍ୟରେ ଡିମେଟ୍ରିୟସ୍‌ଙ୍କୁ 'ଦତ୍ତିମ' ରୂପେ ନାମିତ କରାଯାଇଛି । କାବ୍ୟର ପ୍ରାରମ୍ଭରେ 'ନମସ୍କ୍ରିୟା' ଅଂଶଟି ଭାରି ପ୍ରାଣସ୍ପର୍ଶୀ । ଭକ୍ତକବି ମଧୁସୂଦନଙ୍କ ପରି ଏଠାରେ ବିଭୁ ପ୍ରାଣତା ପ୍ରତିପାଦନ କରି କବି 'ଖାରବେଳ' କାବ୍ୟ ଆରମ୍ଭ କରିଛନ୍ତି -

ପଡ଼ିଯାଉ ବିଶ୍ୱରନ୍ଧ୍ର କବିତାର ଧାରା
ଏ ଜୀବନ ଅନନ୍ତ ଉତ୍କ୍ଷେପେ,
ମିଶିଯାଉ କ୍ଷୀଣ ଏହି ମାନବ ସାଧନା
ସୃଷ୍ଟିର ସେ ଅନନ୍ତ ବିଳାସେ ।
ବିଷମ ଏ ସ୍ୱର୍ଗଲୀଳା ସମ କିଏ ତୁମ୍ଭେ
ରହସ୍ୟର ପୁଣ୍ୟ ଅନ୍ତରାଳେ ?
ସେ ରହସ୍ୟ ପୁଣ୍ୟପୁରେ କ୍ଷୁଦ୍ର ଏ କଳ୍ପନା
ମିଶିଯାଉ ଅନନ୍ତ ସାଗରେ ।

କଳିଙ୍ଗ ବଣିକମାନଙ୍କର ସ୍ୱାର୍ଥରକ୍ଷା କରିବା ପାଇଁ ଖାରବେଳ ସିନ୍ଧୁ ସାଗର ଆଡ଼କୁ ଯାତ୍ରା କରିଛନ୍ତି । ଏଇଠାରେ କବି ପୁଣି ମନେ ପକାଇଛନ୍ତି କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟ ପରମ୍ପରାକୁ, ତେଣୁ ତାଙ୍କ ରଚନାରେ ଫୁଟି ଉଠିଛି ଉତ୍କଳର ଗାଥା -

ସିନ୍ଧୁ ଅନନ୍ତ ବିତାନେ ଭାସଇ,
ଊର୍ମିଫେନ ଚୂଳେ ଦେଶ ହସାଇ ।
ବହେ ବାଣିଜ୍ୟ ପବନ ସରସେ,
ତହିଁ ନାବିକ ଭାସଇ ହରଷେ ।
ଦେଶ ବିସ୍ତାରେ ଭାସିଯାଏ ତରୀ,
ସେହି ବାଣିଜ୍ୟ ପବନ ଆଦରି ।

ସିନ୍ଧୁ ନଦୀର ପଶ୍ଚିମ ଦିଗରେ ଅବସ୍ଥିତ ଥିଲା ଦ୍ରାବିଡ଼ମାନଙ୍କ ଦ୍ୱାରା ଅଧ୍ୟୁଷିତ ଏକ କୃଷକ ରାଜ୍ୟ । ଏହି ରାଜ୍ୟର ବୃଦ୍ଧ ରାଜା ବର୍ତ୍ତମାନର ଆଫଗାନିସ୍ଥାନ ଓ ବେଲୁଚିସ୍ଥାନ ପୂର୍ବରେ ଥିବା ସେହି ସମୟର ବଜିର ରାଜ୍ୟର କନ୍ୟା 'ଧ୍ୱସି'ଙ୍କୁ ପାଳନ କରିଥିଲେ ।

ଖାରବେଳ ପ୍ରଥମେ ପଟଳରେ ଛାଉଣୀ କରି କୃଷକମାନଙ୍କୁ ଯୁଦ୍ଧରେ ସାଥି କରିବାକୁ ଲୋଡ଼ୁଥାନ୍ତି । ଏହିପରି ସମୟରେ ଦିନେ ସଞ୍ଜବେଳେ ଘୋଡ଼ାରେ ଚଢ଼ି ନଇ ପଶ୍ଚିମ ପାଖକୁ ବୁଲିବାକୁ ଯାଇ ଫେରିବା ବାଟ ଜାଣି ପାରିଲେ ନାହିଁ । ଦୂରରେ କେତେଗୁଡ଼ିଏ କୃଷକ ବାଳିକା ଖେଳୁଥିଲେ ଓ କୂଳରେ ପଥର ଉପରେ ବସିଥିଲେ ଧ୍ୱସି । ଖାରବେଳ ଧୃସିଙ୍କ ବାଟ ପଚାରି ଫେରି ଆସିଥିଲେ । ଏହି ଧୃସିଙ୍କ ସହିତ ପ୍ରଥମ ସାକ୍ଷାତରେ ହିଁ ଉଭୟଙ୍କର ପ୍ରଣୟର ସୂତ୍ରପାତ ହୋଇଥିଲା । ଏହି ଭାବକୁ ଧରି କାବ୍ୟର ପ୍ରଥମ ଛାନ୍ଦର ବର୍ଣ୍ଣନା ଆରମ୍ଭ ହୋଇଛି ।

ଏହାପରେ କୃଷକ ଜାତି ଖାରବେଳଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେବାପରେ କୃଷକ ରାଜାଙ୍କ ସୈନ୍ୟମାନଙ୍କୁ ନେଇ ଧୃସି ବଜିର ରାଜପୁତ୍ରର ଛଦ୍ମବେଶରେ ଖାରବେଳଙ୍କ ସେନାବାହିନୀରେ ଯୋଗ ଦେଇଥିଲେ । ଏହି ସମୟରେ ଦତ୍ତିମ ଚକ୍ରାନ୍ତ କରି ରାତିରେ ବଜିର ରାଜଧାନୀ ସିଂହପଥ ଆକ୍ରମଣ କରିଥିଲେ । ସେନାପତି ଧୃସି ଆଗରୁ ଏହା ଜାଣିପାରି କେତେକ କୃଷକ ଓ ଉତ୍କଳସେନା ନେଇ ବାହାରପଟୁ ଦତ୍ତିମଙ୍କୁ ଘେରି ରହିଲେ । ଦତ୍ତିମ ଉଭୟଆଡ଼ୁ ଆକ୍ରାନ୍ତ ହୋଇ ପରାସ୍ତ ହେଲେ, ଖାରବେଳ ମଧ୍ୟ ଯୁଦ୍ଧରେ ଆହତ ହୋଇଥିଲେ । ଏହାପରେ ସୁସ୍ଥ ହୋଇ ରାଜଧାନୀ 'ପଟଳ'କୁ ଫେରିବା ପରେ କୃଷକପୁରରେ ଖାରବେଳ ଧୃସିଙ୍କୁ ଚିହ୍ନିଲେ । ଏଇଠାରେ ହିଁ କାବ୍ୟର ମିଳନାତ୍ମକ ସମାପ୍ତି ଘଟିଛି ।

କାବ୍ୟଟି ଉପରୋକ୍ତ କଥାବସ୍ତୁ ଉପରେ ଆଧାରିତ । କିନ୍ତୁ ଏହାର ପ୍ରତିଟି ବର୍ଣ୍ଣନାରେ ଭରି ରହିଛି ଜାତୀୟତା ଭାବର ବଳିଷ୍ଠ ଚେତନା । ଓଡ଼ିଆ ସାହସିକତା ଓ ପରାକ୍ରମ ପଣିଆର ପ୍ରତୀକ ଖାରବେଳଙ୍କୁ କବି ଉପସ୍ଥାପିତ କରିଛନ୍ତି ନୂତନ ରୂପରେ ତଥା ନବ ଆବେଗରେ ପରାଧୀନ ଦାୟାଦମାନଙ୍କ ପାଖରେ । ତାହା ହେଲେ ସେମାନେ ପୂର୍ବପୁରୁଷଙ୍କ ପରାକ୍ରମରୁ ଆହରଣ କରିବେ ବିଦେଶୀ ଶକ୍ତି ବିରୁଦ୍ଧରେ ସଂଗ୍ରାମର ଆକାଂକ୍ଷା । ତେଣୁ କୃଷକରାଜା ମୁହଁରେ କବି କହିଛନ୍ତି -

ଦେଖିଛି ଆପଣେ କଳିଙ୍ଗ ରାଜନେ,
ଦେଖିଛି ଉତ୍କଳ କଳିଙ୍ଗ ସଇନେ ।
ଖାରବେଳ ମୁହିଁ କହିଅଛି କଥା,
ବିଜୟେ ତା'ର ମୁଁ କଳିଛି କ୍ଷମତା ।
ଗଣିଛି ତୁରଙ୍ଗେ ତା' କଦମ୍ବ ପାଦ,
କଉଶଳେ ତା'ରେ ରଚିଛି ମୁଁ ବାଦ ।
ଅନୁଭବେ ତା'ର ଜାଣେ ବାହୁବଳ,
ଆଖେଟେ ବୁଝିଛି ରଣ କଉଶଳ ।
ବିଶ୍ୱାସେ ରଖିଛି ଚିହ୍ନିବାର ଜନ,
ଶରବେ କଳିଛି ତୁଙ୍ଗ ସଭାଜନ ।
ନମଣ ତାହାରେ ସାମାନ୍ୟ ଯୁବା !

ଖାରବେଳଙ୍କ ଶୌର୍ଯ୍ୟ ବୀର୍ଯ୍ୟ ବର୍ଣ୍ଣନା କରୁ କରୁ କବି ଦେଖୁଛନ୍ତି ବର୍ତ୍ତମାନର ପରାଧୀନ ଅବସ୍ଥା । ଏକ ସାଧାରଣ ବାଣିଜ୍ୟ କମ୍ପାନୀରୁ ଇଂରେଜମାନେ ହୋଇଗଲେ ଏ ଦେଶର ସର୍ବମୟ କର୍ତ୍ତା । ହଜିଗଲା ସ୍ୱାଧୀନତା ରବି ବିଦେଶୀ ଶାସନର କରାଳ ଗ୍ରାସରେ ।

ଆଉ ଏହାର ଅଧିବାସୀଗଣ ଅତୀତର ସବୁ ଗୌରବକୁ ବିସ୍ମୃତ ହୋଇ ଶୋଇ ଯାଇଛନ୍ତି ମଧ୍ୟଯୁଗୀୟ ନିଦ୍ରାରେ । ଦଉିମଙ୍କ କୂଟ ଚକ୍ରାନ୍ତରେ କବି ଦେଖୁଛନ୍ତି ଇଂରେଜ ଶାସନର କୂଟ ପ୍ରତିବିମ୍ବ । ସେ ସେଥିପାଇଁ ଲୋକମାନଙ୍କୁ ଚେତେଇ ଦେଉଛନ୍ତି -

ପଶ୍ଚିମ ସଭ୍ୟତାର ଏସନ ରୀତି,
କାହୁଁ ବୁଝିବେ ସେହୁ ସୁଗତ ନୀତି ।
ଜୀବନେ ଜାଣନ୍ତି ସେ ଆପଣା ସୁଖ,
କଥା କହନ୍ତି ସତେ ବକ ଧାର୍ମିକ ।

ତଥାପି କିନ୍ତୁ କବି ନିରାଶାବାଦୀ ହୋଇନାହାନ୍ତି, ତାଙ୍କ ଭିତରେ ଧିକି ଧିକି ଜଳୁଛି ଆଶାର ଆଲୋକ । ଏ ଜାତି ଜାଗିବ, ଜାତି ଭିତର ଦେଇ ଜାତୀୟ ଜୀବନ ଉଦ୍‌ବୁଦ୍ଧ ହେଲେ ଦେଶରେ ଆସିବ ଜାଗରଣ । ବିଦେଶୀମାନେ ଏଠାରୁ ଚିର ବିଦାୟ ନେବେ । ପୁଣି ଫେରି ଆସିବ ଆମର ପୂର୍ବ ଗାରିମା । କବିଙ୍କର ସ୍ୱାଧୀନତା ପିପାସା ଯଥାର୍ଥରେ ସ୍ଥାନ ପାଇଛି କାବ୍ୟର ବିଭିନ୍ନ ଅଂଶରେ -

ଭାରତେ ସେ ସୁଦିନ ଫେରିବ କାହିଁ,
ବୁଦ୍ଧ ପରେଶ ଯେବେ ମୋହିଲେ ମହୀ
ଖଡଗେ ଦିଶୁଥିଲା ଅହିଂସା ଧାର,
ଇନ୍ଦ୍ରିୟ ଜିଣିଜନେ ହୋଇଲେ ବୀର ।
ଦିଗନ୍ତ ପୂରିଥିଲା ମୈତ୍ରୀ ବିଭବେ,
ରାଜତ୍ୱ ଥିଲା ସିନା ସଂଯମ ଭବେ ।
ଫାଟି ଉଠେ ପୁଣି କୃଷକ ହୃଦ ଆଶା ଉନ୍ମାଦେ,
ସ୍ୱାଧୀନତା ଆହା ସେ କବି ଅନୁମାନର ସ୍ୱାଦେ ।
ଦରୀ ଖୋଲେ ନାଦେ ପବନ, ଫିଟି ପଡ଼ିବ ବୋଲି
ଉଷା ମୁଖେ ଫୁଟେ କାଳିମା, ଦିନ ଆସଇ ମାଡ଼ି ।
ଭୀମ ବିଚି ସହି ବୋଇତ ଯାଏ ସିନ୍ଧୁ ଗରଭେ,
ସାଧବ ଇନ୍ଦ୍ରିୟ ତାଡ଼ନା ସହି ଉଠେ ଗରବେ ।
ଆଶାରେ ସିନା ଏ ବିଳାସ, ଭୋଗେ ଶାନ୍ତ ପରାଣ,
ଆଶାର ବିଦ୍ୟୁତ ଆରବେ ଉଠେ କୃଷକ ପ୍ରାଣେ ।

'ଖାରବେଳ' କାବ୍ୟର ଅନ୍ୟ ଏକ ମହନୀୟ ଚରିତ୍ର ହେଲା 'ଧୂସି' । ରାଧାନାଥଙ୍କ 'ଉଷା' ଅପେକ୍ଷା 'ଧୂସି' ଅଧିକ ମହିୟସୀ । 'ଉଷା' ପୌରୁଷପ୍ରବଣା । କିନ୍ତୁ ଯୁଦ୍ଧ କ୍ଷେତ୍ରରେ ସେ ତାହା ପ୍ରମାଣ ଦେବାର ସୁଯୋଗ ପାଇନାହିଁ । ଅନ୍ୟପକ୍ଷରେ ନୀଳକଣ୍ଠଙ୍କ ନାରୀ ଚରିତ୍ର ବୀରାଙ୍ଗନା, ପ୍ରଣୟିନୀ ନୁହଁ । ସ୍ୱଦେଶ ପ୍ରୀତିର ଅଳଙ୍କାରରେ ସେ ସଜ୍ଜିତା, ଯହିଁ ନାହିଁ ଯୌବନର ମଞ୍ଜୁଳ ଯୌବନଶ୍ରୀ । 'ଧୂସି' ଚରିତ୍ରର ତୁଙ୍ଗତା, ଅନ୍ତରର ଦେଶପ୍ରେମ ମଧ ଦେଇ ସେ ଆଙ୍କିଛନ୍ତି ଭାରତୀୟ ନାରୀତ୍ୱର ପ୍ରତିଚ୍ଛବି । କବି ଏଠାରେ ମନେ ପକାଇଛନ୍ତି ଫରାସୀ ବୀରାଙ୍ଗନା 'ଜୋଆନ ଅଫ୍ ଆର୍କ'କୁ । ତେଣୁ କବିଙ୍କର ଏହି ବର୍ଣ୍ଣନାରେ ଇନ୍ଦ୍ରିୟ ସର୍ବସ୍ୱତାର ସ୍ଥାନ ନାହିଁ । ବୀରଭୋଗ୍ୟା ବସୁନ୍ଧରା । ବୀରତା, ତ୍ୟାଗ, କର୍ତ୍ତବ୍ୟ ପରାୟଣତାରେ ସମୃଦ୍ଧ ଏହି କାବ୍ୟ ମଧ ଦେଇ କବି ଦେଇଛନ୍ତି ଜାଗୃତିର ମହାମନ୍ତ୍ର ପରାଧୀନ ଉତ୍କଳବାସୀଙ୍କୁ, ତାରୁଣ୍ୟର ତରଳତା ଅପେକ୍ଷା ବୀରର ମର୍ଯ୍ୟାଦାବୋଧ ଦୁର୍ଦ୍ଧର୍ଷତା, ଦୁର୍ଗମକୁ ସୁଗମ କରିବାର ଉଦ୍ଦାମତାରେ ନୀଳକଣ୍ଠୀୟ କାବ୍ୟର ପୃଷ୍ଠା ପରିପୂର୍ଣ୍ଣ । ତେଣୁ ଖାରବେଳ, ଧୂସି ଆଦି ମହାନ୍ ଚରିତ୍ରଙ୍କୁ ଉପସ୍ଥାପନ କରି ସେ ଆହ୍ୱାନ ଦେଇଛନ୍ତି ନବ୍ୟ ତରୁଣ ତରୁଣୀମାନଙ୍କୁ ସେମାନଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ।

ନୀଳକଣ୍ଠଙ୍କ କାବ୍ୟ ସୃଷ୍ଟି ଏକ ସଂସ୍କାର ପ୍ରୟାସରୁ ଉଦ୍ଭୁତ, ଯାହା ଜାତିର ପୌରୁଷ ପ୍ରଖ୍ୟାପକ, ମହତ୍ତ୍ୱଜ୍ଞାପକ ତାହାକୁ ହିଁ ସେ କବିତାର ଉପଜୀବ୍ୟ ହିସାବରେ ଗ୍ରହଣ କରିଛନ୍ତି । ତେଣୁ ସେ ନୂତନ ଭାବରେ ଉପସ୍ଥାପିତ କରିଛନ୍ତି ଐତିହାସିକ ଚେଦି ସମ୍ରାଟ ଖାରବେଳଙ୍କୁ ନୂଆ ଭାବାଦେଶର ନୂତନ ରୂପରେ ।

ରାଧାନାଥଙ୍କ ସମୟରୁ ଯେଉଁ ଜାତୀୟ ଭାବନା ଅସ୍ପଷ୍ଟ, ଅବରୁଦ୍ଧ, ଅଚଞ୍ଚଳ ଓ ଅକମ୍ପିତ ଅବସ୍ଥାରେ ଥିଲା ସତ୍ୟବାଦୀ କବିମାନଙ୍କ କାବ୍ୟରେ ତାହାର ପରିପ୍ରକାଶ ଥିଲା ଉଗ୍ର ଓ ତୀବ୍ର । ପ୍ରତ୍ୟକ୍ଷ ରାଜନୀତି ଓ ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ ଥିବାରୁ ଏହି କବିମାନଙ୍କର କବିତା ହୋଇଥିଲା ଦେଶ ସ୍ୱାଧୀନତା ପାଇଁ ବ୍ରିଟିଶମାନଙ୍କ ବିରୁଦ୍ଧରେ ପ୍ରଧାନ ଅସ୍ତ୍ର । ଆଉ ସ୍ୱାଭାବିକ ଭାବେ କବି ନୀଳକଣ୍ଠ ମଧ ଏଇ ମନ୍ତ୍ରରେ ଦୀକ୍ଷିତ ଥିଲେ ।

ଆଞ୍ଚଳିକ ଦେଶପ୍ରୀତିର ନିଦର୍ଶନ ଉପରେ ଖାରବେଳ କାବ୍ୟ ଆଧାରିତ ହେଲେ ହେଁ ମହାଭାରତୀୟ ଜାତି ଗଠନ ପୃଷ୍ଠଭୂମି ଥିଲା ଏହାର ଲକ୍ଷ୍ୟ । ଉତ୍କଳର ଶିଳାଖଣ୍ଡ, ଧୂଳି, ମାଟି, ନଦୀ, ସାଗର, ବୀର, ବଣିକ, ସୈନିକ, ଦୁର୍ଗ ଆଦି ସବୁକିଛି ମହାନ୍ ଦିଶୁଛି କବିଙ୍କ ଆଖିରେ । ଜାତୀୟ ଜାଗରଣର ପୃଷ୍ଠଭୂମିରେ ପାଶ୍ଚାତ୍ୟ ସାହିତ୍ୟର ଅନ୍ଧ ଅନୁକରଣ ଓ ପରମ୍ପରା ବିଚ୍ୟୁତି - ଜାତୀୟ ଜୀବନ ଗଠନରେ ପ୍ରତିବନ୍ଧକ ଅଟେ । ତେଣୁ ନୀଳକଣ୍ଠଙ୍କ ଦେଶପ୍ରୀତି ଓ ଜାତୀୟଭାବନା ଉତ୍କଳୀୟ ଜାତୀୟତାରୁ ଆନୀତ । ତାଙ୍କର ବିଶ୍ୱାସ ଥିଲା ଜାତୀୟ ସାହିତ୍ୟ ସାମୁହିକ ମଙ୍ଗଳ ପାଇଁ । ଆଉ ଏଇ ଆଞ୍ଚଳିକ ଜାତୀୟତା ଆଞ୍ଚଳିକ ସୀମାରେଖା ମଧ୍ୟରେ ସୀମିତ ନରହି ମହାଭାରତୀୟ ଚେତନାରେ ପରିଣତ ହୁଏ ।

ସାମଗ୍ରିକ ଭାବରେ ଦେଖିବାକୁ ଗଲେ ପ୍ରକୃତିର କମନୀୟ କାନ୍ତି, ଶୌର୍ଯ୍ୟ, ପ୍ରଣୟ, ସ୍ୱଦେଶ ପ୍ରୀତି ବର୍ଣ୍ଣନାରେ କାବ୍ୟଟି ମଞ୍ଜୁଳ । ମହାମେଘବାହନ ଖାରବେଳଙ୍କ ପରି ଜାତୀୟ ବୀରଙ୍କୁ ନେଇ ଏହା ରଚିତ ହୋଇଥିବାରୁ ଖାରବେଳ କାବ୍ୟଟି ଏକ ଜାତୀୟ କାବ୍ୟର ଆସନ ଅଳଙ୍କୃତ କରିପାରିଛି ।

ପ୍ରାଧ୍ୟାପିକା, ଇତିହାସ ବିଭାଗ
ରେଭେନ୍‌ସା କଲେଜ, କଟକ

# ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର

ଦୁଃଖିଶ୍ୟାମ ପଟ୍ଟନାୟକ



ମହାମହୋପାଧ୍ୟାୟ ପଣ୍ଡିତ ସାମନ୍ତ ଚନ୍ଦ୍ରଶେଖର ହରିଚନ୍ଦନ ମହାପାତ୍ର (ପଠାଣି ସାମନ୍ତ) ତାଙ୍କର ଅମରକୃତି 'ସିଦ୍ଧାନ୍ତଦର୍ପଣ' ଗ୍ରନ୍ଥ ପ୍ରଣୟନ କରି ଭାରତୀୟ ଜ୍ୟୋତିଷର 'ସୂର୍ଯ୍ୟସିଦ୍ଧାନ୍ତ' ଓ 'ସିଦ୍ଧାନ୍ତ-ଶିରୋମଣି' ପରି ପ୍ରୌଢ଼ ସଂସ୍କୃତ ଭାଷାରେ ଆର୍ଷଦୃଷ୍ଟିସଂପନ୍ନ ଯୁଗାନ୍ତକାରୀ ଗଣିତ-ଜ୍ୟୋତିଷ ରଚନା କରିବାରେ ସର୍ବଶେଷ ଓ ସର୍ବଶ୍ରେଷ୍ଠ ସିଦ୍ଧାନ୍ତକାର ଭାବରେ ପୃଥିବୀ-ପ୍ରସିଦ୍ଧ ଅଟନ୍ତି ।

### ଭାରତୀୟ ପ୍ରାଚୀନ 'ସିଦ୍ଧାନ୍ତ' ଗ୍ରନ୍ଥ

ଭାରତୀୟ ପ୍ରାଚୀନ 'ସିଦ୍ଧାନ୍ତ' ଶାସ୍ତ୍ରମାନଙ୍କ ମଧ୍ୟରେ ପ୍ରଚଳିତ (୧) ମୟ-ଉପାସିତ ସୂର୍ଯ୍ୟଙ୍କ ଉପଦିଷ୍ଟ 'ସୂର୍ଯ୍ୟସିଦ୍ଧାନ୍ତ', (୨) ବୃଦ୍ଧଗର୍ଗ କୃତ 'ପୈତାମହ-ସିଦ୍ଧାନ୍ତ', (୩) 'ବାଶିଷ୍ଠ-ସିଦ୍ଧାନ୍ତ', (୪) 'ରୋମକ-ସିଦ୍ଧାନ୍ତ' ଓ (୫) 'ପୌଲିଶ-ସିଦ୍ଧାନ୍ତ'କୁ 'ପଞ୍ଚସିଦ୍ଧାନ୍ତିକା' ନାମରେ ବରାହମିହିର ସଂଗ୍ରହ କରିଥିଲେ । ତାଙ୍କର ଏହି ସଂକଳନ ତା.୨୦ ମାର୍ଚ୍ଚ, ୫୦୫ ଖ୍ରୀ: (ବା ୪୨୭ ଶକାବ୍ଦ) ମେଷ-ସଂକ୍ରାନ୍ତି ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀ ରବିବାର ଦିନ ହୋଇଥିବା ତତ୍ର ପ୍ରଦତ୍ତ ତତ୍କାଳୀନ ଗ୍ରହସ୍ଥିତିରୁ ସ୍ପଷ୍ଟ ଜଣାଯାଏ । ଏହାଛଡ଼ା ସେ 'ବୃହସଂହିତା' ଓ ଫଳିତ-ଜ୍ୟୋତିଷରେ 'ବୃହଜ୍ଜାତକ' ପ୍ରଣୟନ କରି ତ୍ରିସ୍କନ୍ଧ (ଗଣିତ, ସଂହିତା ଓ ହୋରା) ଜ୍ୟୋତିଷରେ ତାଙ୍କର ପାରଦର୍ଶିତା ଲାଗି ବିକ୍ରମାଦିତ୍ୟଙ୍କ ନବରତ୍ନରୁ ଅନ୍ୟତମ ଭାବରେ ପ୍ରସିଦ୍ଧ ବରାହମିହିର (ଖ୍ରୀ:୪୮୭-୫୮୭) ଉଜ୍ଜୟିନୀ ନିକଟବର୍ତ୍ତୀ କପିତ୍ଥକ (ବା ବର୍ତ୍ତମାନର 'କୟଠା') ଗ୍ରାମରେ ଜନ୍ମଲାଭ କରିଥିଲେ । ସେ ତାଙ୍କର ମୌଳିକ ରଚନା ଅପେକ୍ଷା ପ୍ରାଚୀନ ତ୍ରିସ୍କନ୍ଧ ଜ୍ୟୋତିଷ ପରମ୍ପରାର ସଂକଳକ, ସଂରକ୍ଷକ ଓ ସଫଳ ଭବିଷ୍ୟତ ପ୍ରବକ୍ତା ଭାବରେ ପ୍ରସିଦ୍ଧିଲାଭ କରିଥିଲେ ।

ବରାହମିହିରଙ୍କ ପୂର୍ବରୁ ଆର୍ଯ୍ୟଭଟ୍ଟ (ପ୍ରଥମ) ଖ୍ରୀ:୪୭୬ରେ କେରଳର ଅଶ୍ମକ ନାମକ ଗ୍ରାମରେ ଜନ୍ମ ଗ୍ରହଣ କରି କୁସୁମପୁର (ପାଟଳିପୁତ୍ର ବା ଆଧୁନିକ ପାଟନା) ରେ ଆର୍ଯ୍ୟଭଟ୍ଟୀୟ ରଚନା କରିଥିଲେ । ସେ ତାଙ୍କ ପୂର୍ବବର୍ତ୍ତୀ 'ପଞ୍ଚସିଦ୍ଧାନ୍ତିକା'ର ଗାଣିତିକ ପ୍ରକ୍ରିୟା ଅନୁସାରେ ଗ୍ରହସ୍ଥିତି ନ ଥିବା ଲକ୍ଷ୍ୟ କରି (ଗୀତିକା, ଗଣିତ, କାଳକ୍ରିୟା ଓ ଗୋଳ ନାମକ ଚାରିପାଦ ବିଶିଷ୍ଟ) ଆର୍ଯ୍ୟଭଟ୍ଟୀୟରେ ସବୁ ମହାଯୁଗର ପରିମାଣକୁ ସମତୁଲ କରି ଗ୍ରହଗଣନାରେ ସଂସ୍କାର ଆଣିଥିଲେ ଏବଂ ନିଉଟନ୍ (ଖ୍ରୀ:୧୬୪୨-୧୭୨୭)ଙ୍କ ପ୍ରାୟ ୧୨୦୦ ବର୍ଷ ପୂର୍ବରୁ ସେ 'ଭୂ-ଭ୍ରମଣବାଦ'ର ଆଦ୍ୟପ୍ରବର୍ତ୍ତକ ଥିଲେ ।

ବରାହମିହିରଙ୍କ ପରେ ବ୍ରହ୍ମଗୁପ୍ତ (ଖ୍ରୀ:୫୯୮) ବ୍ରହ୍ମସ୍ଫୁଟସିଦ୍ଧାନ୍ତ (ଖ୍ରୀ:୬୨୮) ଓ 'ଖଣ୍ଡଖାଦ୍ୟକ' (ଖ୍ରୀ:୬୬୫) କରଣ ଗ୍ରନ୍ଥ ରଚନା କରି ଏଥିରେ ସେ ଆର୍ଯ୍ୟଭଟ୍ଟ (୧ମ)ଙ୍କ ଭୂ-ଭ୍ରମଣବାଦ ଓ ମହାଯୁଗମାନଙ୍କ ପରିମାଣର ସମତୁଲତାକୁ ସମର୍ଥନ ନକରି ଯୁଗମାନଙ୍କ ପରିମାଣକୁ ୪:୩:୨:୧ ଅନୁପାତ ବିଶିଷ୍ଟ ବୋଲି ପରମ୍ପରାକୁ ହିଁ ଗ୍ରହଣ କରିଥିଲେ । ଏହାଙ୍କ ପରେ ଭାସ୍କର-୧ମ (ଖ୍ରୀ:୬୦୦)ଙ୍କ ମହାଭାସ୍କରୀୟ, ଲଘୁଭାସ୍କରୀୟ ଓ ଆର୍ଯ୍ୟଭଟ୍ଟୀୟ-ଭାଷ୍ୟ, ବଟେଶ୍ୱର (ଖ୍ରୀ:୮୮୦)ଙ୍କ ବଟେଶ୍ୱର-ସିଦ୍ଧାନ୍ତ (ଖ୍ରୀ:୯୦୪), ମୁଞ୍ଜାଳ (ଖ୍ରୀ:୯୩୨)ଙ୍କ ଲଘୁମାନସ, ଆର୍ଯ୍ୟଭଟ୍ଟ (୨ୟ-ଖ୍ରୀ:୯୫୦)ଙ୍କ ଆର୍ଯ୍ୟ

ସିଦ୍ଧାନ୍ତ ବା ମହାସିଦ୍ଧାନ୍ତ, ଶ୍ରୀପତି (ଖ୍ରୀ:୯୯୯)ଙ୍କ ଧୀକୋଟି (କରଣଗ୍ରନ୍ଥ) ଓ ସିଦ୍ଧାନ୍ତଶେଖର, ଉତ୍କଳୀୟ ଶତାନନ୍ଦ (ଖ୍ରୀ:୧୦୯୯)ଙ୍କ ଭାସ୍ୱତୀ, ମହାରାଷ୍ଟ୍ରୀୟ ଭାସ୍କର - ୨ୟ (ଖ୍ରୀ:୧୧୧୪)ଙ୍କ ସିଦ୍ଧାନ୍ତ ଶିରୋମଣି (ଖ୍ରୀ:୧୧୫୦), ପରମେଶ୍ୱର (ଖ୍ରୀ:୧୩୬୦-୧୪୫୫)ଙ୍କ ଦୃଗ୍ଗଣିତ (ଖ୍ରୀ:୧୪୩୦), ଗୋଳଦୀପିକା (ଖ୍ରୀ:୧୪୪୩), ବାକ୍ୟକରଣ, ଗ୍ରହଣାଷ୍ଟକ ପ୍ରଭୃତି, ନୀଳକଣ୍ଠ ସୋମଯାଜୀ (ଖ୍ରୀ:୧୪୪୪-୧୫୪୫)ଙ୍କ ଗୋଳସାର, ସିଦ୍ଧାନ୍ତ ଦର୍ପଣ, ଚନ୍ଦ୍ରଚ୍ଛାୟାଗଣିତ, ତନ୍ତ୍ର ସଂଗ୍ରହ ପ୍ରଭୃତି, ଗଣେଶ ଦୈବଜ୍ଞ (ଖ୍ରୀ:୧୫୦୭)ଙ୍କ ଗ୍ରହଲାଘବ, ବୃହତ୍ତିଥି-ଚିନ୍ତାମଣି ଓ ସିଦ୍ଧାନ୍ତ ଶିରୋମଣି - ବ୍ୟାଖ୍ୟା, କମଳାକର ଭଟ୍ଟ (ଖ୍ରୀ:୧୬୧୬)ଙ୍କ ସିଦ୍ଧାନ୍ତ ତତ୍ତ୍ୱବିବେକ (ଖ୍ରୀ:୧୬୫୮)ରେ ସିଦ୍ଧାନ୍ତ ଶିରୋମଣି ମତର ଖଣ୍ଡନପୂର୍ବକ ସୂର୍ଯ୍ୟ ସିଦ୍ଧାନ୍ତ ମତର ସମର୍ଥନ, ଜଗନ୍ନାଥ ସମ୍ରାଟ ସବାଇ ଜୟସିଂହ-୨ୟ (ଖ୍ରୀ:୧୬୬୮-୧୭୩୪)ଙ୍କ ସମ୍ରାଟ-ସିଦ୍ଧାନ୍ତ ପରେ ସାମନ୍ତ ଚନ୍ଦ୍ରଶେଖରଙ୍କ ସିଦ୍ଧାନ୍ତ ଦର୍ପଣ (ଖ୍ରୀ:୧୮୬୯-୧୮୯୨) ଗ୍ରନ୍ଥ ଭାରତୀୟ ଆର୍ଷ ପରମ୍ପରାରେ ଅନ୍ତିମ ସର୍ବୋତ୍ତମ ସିଦ୍ଧାନ୍ତ ଗ୍ରନ୍ଥ ଅଟେ ।

## ପଠାଣି ସାମନ୍ତଙ୍କ ଜନ୍ମ

ସାମନ୍ତ ଚନ୍ଦ୍ରଶେଖର ହରିଚନ୍ଦନ ମହାପାତ୍ରଙ୍କ ଅପର୍ତ୍ତିଆଣି (ଅପ୍ରତ୍ୟାୟନୀ = ବଞ୍ଚିବେ ନାହିଁ ବୋଲି ବାପ-ମାଙ୍କ ପ୍ରତ୍ୟୟ ବା ବିଶ୍ୱାସ ଅଭାବରୁ) ଡାକ ନାଁ ଥିଲା ପଠାଣି ଏବଂ ସେ 'ପଠାଣି ସାମନ୍ତ' ନାମରେ ଲୋକରେ ପରିଚିତ ଥିଲେ । ଖଣ୍ଡପଡ଼ାରେ ସେ ଜନ୍ମ ହୋଇଥିଲେ ୧୭୫୭ ଶକାବ୍ଦ ପୌଷମାସ କୃଷ୍ଣ ଅଷ୍ଟମୀ ତିଥିରେ । 'ସାମନ୍ତ ଚନ୍ଦ୍ରଶେଖର ଜୀବନୀ'ର ଲେଖକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର (ଉକ୍ତ ଗ୍ରନ୍ଥର ୭ମ ସଂସ୍କରଣ, ପୃ.୨୪ରେ) ଲେଖିଛନ୍ତି - 'ତାହାଙ୍କ ରାଶି-ନକ୍ଷତ୍ର (୧୩/୬ ଅର୍ଥାତ୍) ହସ୍ତା କନ୍ୟା । ସାମନ୍ତଙ୍କ ଜାତକ ନଷ୍ଟ ହୋଇଯାଇଥିବାରୁ ଲିପିବଦ୍ଧ ହୋଇପାରିଲା ନାହିଁ ।' 'ଏହା ବିଶ୍ୱାସଯୋଗ୍ୟ ହେଉ ନାହିଁ, କାରଣ ଶକାବ୍ଦ ୧୭୫୭ର ପୌଷ କୃଷ୍ଣ ଅଷ୍ଟମୀ (ଖ୍ରୀ:୧୮୩୫ ଡିସେମ୍ବର ୧୨ ତାରିଖ) ବେଳକୁ ରାଶି-ନକ୍ଷତ୍ର ପ୍ରକୃତରେ ହସ୍ତା-କନ୍ୟା ନଥିଲା, ଥିଲା ୧୧/୫-ପୂର୍ବଫାଲ୍‌ଗୁନୀ-ସିଂହ । ପ୍ରକୃତ ଜନ୍ମ ତାରିଖ ନିରୂପଣ ଅଧିକ ଅନୁସନ୍ଧାନ ସାପେକ୍ଷ ବୋଲି ୧୯୭୫ ଡିସେମ୍ବର 'ଉତ୍କଳ ପ୍ରସଙ୍ଗ' (ପୃ-୨୩)ରେ ବନ୍ଧୁ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ମତ ଦେବା ପରେ ମୁଁ ତା.୨୬.୧୨.୭୫ର ଧରିତ୍ରୀ ଓ ସମାଜରେ 'ସାମନ୍ତ ଚନ୍ଦ୍ରଶେଖର ଜୀବନୀ'ର ପରିଶିଷ୍ଟରେ ସାମନ୍ତଙ୍କ ମଧ୍ୟମ ପୁତ୍ର ଗଦାଧରଙ୍କ 'ଶୋକଗୀତିକା'ରୁ ନିମ୍ନଲିଖିତ ୭୬ତମ ପଂକ୍ତି ଉଦ୍ଧାର କରିଥିଲି -

'ନିର୍ଯାଣ ଦିବସେ      ଡାକି ମୋର ପାଶେ
   କହିଲ ମୋ ମୁଖ ଚାହିଁ ।
ଚନ୍ଦ୍ର ଗଲା ତା'ର      ଜଗି ଅଛି ତା'ର
   ମୁଖରୁ ଉଦ୍ଧାର ନାହିଁ ।।'

ଏଥିରୁ ଜଣାଯାଉଛି ଯେ ସାମନ୍ତଙ୍କ ମହାପ୍ରୟାଣ ଅଷ୍ଟମ ଚନ୍ଦ୍ର ଓ ବଧ ନକ୍ଷତ୍ରରେ ଘଟିଥିଲା । ସାମନ୍ତଙ୍କ ମୃତ୍ୟୁ ୬୮ ବର୍ଷ ୪ ମାସରେ ହୋଇଥିବା କଥା ୧୫ ଜୁନ୍ ୧୯୦୪ର 'ଓଡ଼ିଆ ନବସଂବାଦ'ରେ ପ୍ରକାଶ ପାଇଥିଲା । ସାମନ୍ତଙ୍କ ମୃତ୍ୟୁ ତାରିଖ ହେଉଛି - ୧୧ ଜୁନ୍ ୧୯୦୪ ଶନିବାର । ଏହିଦିନ ୧୨ଶୀ ଗତ ୧୩ଶୀ ତିଥି ହୋଇଥିଲା ଏବଂ ଚନ୍ଦ୍ର ମେଷ ରାଶିରେ ଥିଲେ । ମେଷ ରାଶିସ୍ଥ ଚନ୍ଦ୍ର ହିଁ ଅଷ୍ଟମ ଚନ୍ଦ୍ର ହେବ କେବଳ କନ୍ୟା ରାଶିରେ ଜନ୍ମ ହୋଇଥିବା ଲୋକ ପାଇଁ । ଏଣୁ ସାମନ୍ତଙ୍କ ରାଶି-ନକ୍ଷତ୍ର = ହସ୍ତା-କନ୍ୟା ହୋଇଥିବା ସ୍ୱାଭାବିକ ।

'ସାମନ୍ତ ତାଙ୍କ ଜନ୍ମ ୪୯୩୬ କଳିଯୁଗାବ୍ଦ (୧୭୫୭ ଶକାବ୍ଦ ବା ୧୮୩୫-୩୬ ଖ୍ରୀଷ୍ଟାବ୍ଦ)ରେ ହୋଇଥିବା 'ସିଦ୍ଧାନ୍ତ ଦର୍ପଣ' (ପ୍ରକାଶ ୨୪।୧୪୯ ଶ୍ଳୋକ)ରେ ଲେଖିଛନ୍ତି । ସେ କେଉଁ ମାସ କେଉଁ ତିଥିରେ ଜନ୍ମ ହୋଇଥିଲେ ଲେଖିନାହାନ୍ତି ।

ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ୧୮୯୯ରେ ଲିଖିତ ତାଙ୍କର 'ସିଦ୍ଧାନ୍ତ ଦର୍ପଣ'ର ଇଂରାଜୀ ମୁଖବନ୍ଧରେ ଶକାବ୍ଦ ୧୭୫୭ରେ ୭୯ ନ ମିଶାଇ ୭୮ ମିଶାଇ ସାମନ୍ତଙ୍କ ଜନ୍ମ ଖ୍ରୀ:୧୮୩୫ ବୋଲି ଉଲ୍ଲେଖ କଲେ ସିନା ଜନ୍ମତିଥି ଉଲ୍ଲେଖ କଲେ ନାହିଁ ।

'ସାମନ୍ତ ଚନ୍ଦ୍ରଶେଖର ଜୀବନୀ' ଲେଖକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଚନ୍ଦ୍ରଶେଖରଙ୍କ ଜୀବନ-ଚରିତ ସମ୍ବନ୍ଧୀୟ ପ୍ରବନ୍ଧ ଲେଖି ପୁରସ୍କାର ପାଇଥିଲେ ଏବଂ ଖ୍ରୀ:୧୯୩୨ରେ ତା'ର ପ୍ରଥମ ସଂସ୍କରଣ ପ୍ରକାଶ ପାଇଥିଲା । ସେଥିରେ ସାମନ୍ତଙ୍କ ଜନ୍ମତିଥି ବିଷୟରେ ଉଲ୍ଲେଖ ନଥିଲା । ପରେ ପ୍ରଭାତୀ ପ୍ରେସ୍‌ରେ ମୁଦ୍ରିତ ଏବଂ ୧୯୫୫ରେ ଲେଖକଙ୍କ କର୍ତ୍ତୃକ ପ୍ରକାଶିତ ଏହି ପୁସ୍ତକର ୪ର୍ଥ ସଂସ୍କରଣ (ପୃ.୩୬)ରେ 'ଚନ୍ଦ୍ରଶେଖର ଶକାବ୍ଦ ୧୭୫୭ (ଇଂରାଜୀ ୧୮୩୫ ଖ୍ରୀଷ୍ଟାବ୍ଦ)ରେ ପୌଷ କୃଷ୍ଣାଷ୍ଟମୀ ଦିନ ପୃଥିବୀରେ ଆବିର୍ଭୂତ ହେଲେ' ବୋଲି ଉଲ୍ଲେଖ କଲେ । ତେଣୁ ୧୯୫୫ ପର୍ଯ୍ୟନ୍ତ ସାମନ୍ତଙ୍କ ରାଶି-ନକ୍ଷତ୍ର କ'ଣ ତାହା ସମସ୍ତଙ୍କୁ ଅଗୋଚର ଥିଲା । ପରେ ପୁଣି ସତ୍ୟବାଦୀ ପ୍ରେସ୍‌ରୁ ପ୍ରକାଶିତ ଏହାର ସପ୍ତମ ସଂସ୍କରଣ (ପୃ.୨୪)ରେ ଜୀବନୀ-ଲେଖକ ସଂଯୋଜନ କଲେ 'ତାହାଙ୍କ ରାଶି-ନକ୍ଷତ୍ର ୧୩/୬ ଅର୍ଥାତ୍ ହସ୍ତା-କନ୍ୟା । ସାମନ୍ତଙ୍କ ଜାତକ ନଷ୍ଟ ହୋଇ ଯାଇଥିବାରୁ ଲିପିବଦ୍ଧ ହୋଇପାରିଲା ନାହିଁ ।

ଜୀବନୀ-ଲେଖକ ପଣ୍ଡିତ ମିଶ୍ର ତାଙ୍କ ଚତୁର୍ଥ ସଂସ୍କରଣ (ଖ୍ରୀ:୧୯୫୫)ରେ ତିଥି-ନକ୍ଷତ୍ର ଉଲ୍ଲେଖ କରିବା ବହୁ ପୂର୍ବରୁ ଖ୍ରୀ:୧୯୩୬ (ବଙ୍ଗଳା ୧୩୪୩ ସାଲ)ରେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ସାମନ୍ତଙ୍କ ଜନ୍ମର ଶତବାର୍ଷିକୀ ସ୍ମରଣରେ ବଙ୍ଗଳା 'ଭାରତବର୍ଷ'ରେ ପ୍ରଥମ କରି ଲେଖିଥିଲେ - 'ଶହେ ବର୍ଷ ହୋଇଗଲା । ୧୭୫୭ ଶକାବ୍ଦ ପୌଷ କୃଷ୍ଣପକ୍ଷ ଅଷ୍ଟମୀ ତିଥି (ଇଂ୧୮୩୬ ଜାନୁଆରୀ ୧୧ ତାରିଖ)ରେ ଶ୍ରୀମତ ଚନ୍ଦ୍ରଶେଖର ସିଂହ ସାମନ୍ତ ଓଡ଼ିଶାର ଖଣ୍ଡପଡ଼ା ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ ।' ଅଧ୍ୟାପକ

ଯୋଗେଶ ବାବୁ ସାମନ୍ତଙ୍କ ଗୁଣଗ୍ରାହୀ ଅନ୍ତରଙ୍ଗ ସହାୟକ ବିଦ୍ୱାନ୍ ବନ୍ଧୁ ଥିଲେ । ଏଣୁ କେହି ଓଡ଼ିଆ ସାମନ୍ତଙ୍କ ଜନ୍ମ ଶତବାର୍ଷିକୀ ପାଳନ ପାଇଁ ବାହାରି ନଥିବାବେଳେ ତାଙ୍କର ଗୁଣଗ୍ରାହୀ ଯୋଗେଶବାବୁ ବଙ୍ଗଳା 'ଭାରତବର୍ଷ'ରେ ସ୍ମୃତିଚାରଣ କରିବା ପ୍ରସଙ୍ଗରେ ସାମନ୍ତଙ୍କ ଜନ୍ମତାରିଖର ପ୍ରଥମ ଥର ପାଇଁ ସ୍ୱେଚ୍ଛାକୃତ ଭାବରେ ଉଲ୍ଲେଖ କଲେ ।

୧୮୯୯ ଖ୍ରୀଷ୍ଟାବ୍ଦରେ ଲେଖିଥିବା ତାଙ୍କ ମୁଖବନ୍ଧରେ ୪୯୩୬ କଳି ଯୁଗାବ୍ଦ ବା ୧୭୫୭ ଶକାବ୍ଦକୁ ଖ୍ରୀ:୧୮୩୫ କରିବା ଦ୍ୱାରା ସେ ଯେଉଁ ଭୁଲ୍ କରିଥିଲେ ତାକୁ ସଂଶୋଧନ କରିବା ପାଇଁ ଯଥାସମ୍ଭବ ସାମନ୍ତଙ୍କଠାରୁ ପରେ ବୁଝିଥିବାରୁ ସେ ସାମନ୍ତଙ୍କ ଜନ୍ମ ତା.୧୧ ଜାନୁଆରୀ ୧୮୩୬ ବୋଲି ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ କରିଗଲେ ଏବଂ ବଙ୍ଗଳା-ପତ୍ରିକାରେ ଲେଖିଥିବାରୁ (ଏବଂ ନିଜେ ଜଣେ ଜ୍ୟୋତିର୍ବିଜ୍ଞାନୀ ଓ ବଙ୍ଗୀୟ ହୋଇଥିବାରୁ) ବଙ୍ଗଳା ପ୍ରଚଳିତ ପ୍ରଥାରେ ମୁଖ୍ୟ ଅମାନ୍ତ ମାନରେ ପୌଷ କୃଷ୍ଣ ଅଷ୍ଟମୀ ବୋଲି ଉଲ୍ଲେଖ କରିଥିଲେ । ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କ ଖ୍ରୀ:୧୯୩୬ରେ ଏହି ତିଥି ଉଲ୍ଲେଖକୁ ଜୀବନୀ-ଲେଖକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର ତାଙ୍କ ଚତୁର୍ଥ ସଂସ୍କରଣ (ଖ୍ରୀ:୧୯୫୫)ରେ ଗ୍ରହଣ କରିଛନ୍ତି ଏବଂ ତାହାକୁ ଆମ ଓଡ଼ିଆ ଲୋକେ ଭୁଲ୍‌ରେ ପୂର୍ଣ୍ଣିମାନ୍ତ ବୋଲି ମନେ କରିଛନ୍ତି ।

ସାମନ୍ତ କେଉଁ ତିଥି ଓ ତାରିଖରେ ଜନ୍ମ ହେଲେ ସେ କଥା କହିବାକୁ ଅଧିକାରୀ ଅଟନ୍ତି - (୧) ସାମନ୍ତଙ୍କ ପିତା/ମାତା, (୨) ସାମନ୍ତ ନିଜେ, (୩) ସାମନ୍ତଙ୍କଠାରୁ ଶୁଣିବା ସୌଭାଗ୍ୟ ଥିବା ତାଙ୍କର ଜ୍ୟୋତିର୍ବିଦ୍ ପୁଅ ବା ଆଗ୍ରହୀ ବନ୍ଧୁ । ଏହି ତୃତୀୟ ପର୍ଯ୍ୟାୟରେ ଆସୁଛନ୍ତି ସାମନ୍ତଙ୍କ ମଧମ ପୁତ୍ର ଗଦାଧର ଏବଂ ଗୁଣଗ୍ରାହୀ ବନ୍ଧୁ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ । ଗଦାଧରଙ୍କ ଜୀବଦ୍ଦଶାରେ ଖ୍ରୀ:୧୯୩୬ରେ ଯୋଗେଶ ବାବୁ ସାମନ୍ତଙ୍କ ଜନ୍ମତିଥି ପୌଷ କୃଷ୍ଣ ଅଷ୍ଟମୀ ଅର୍ଥାତ୍ ଖ୍ରୀ:୧୮୩୬ ଜାନୁଆରୀ ୧୧ ତାରିଖ ବୋଲି ଉଲ୍ଲେଖ କରିଥିଲେ । ଏହି ତିଥି ଓ ତାରିଖ ଆବିଷ୍କାରର ଶ୍ରେୟ ବା ଗୌରବର ଏକମାତ୍ର ଅଧିକାରୀ ହେଉଛନ୍ତି ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ । ସେ 'ଭାରତବର୍ଷ'ରେ ବଙ୍ଗଳାଭାଷାରେ ବଙ୍ଗାଳୀ ପାଠକମାନଙ୍କ ଉଦ୍ଦେଶ୍ୟରେ ଲେଖିଥିବାରୁ ଅମାନ୍ତ ମାନର ମାସ ଓ ତିଥିର ଉଲ୍ଲେଖ କରିଥିବା ତାଙ୍କ ପ୍ରଦତ୍ତ ତା.୧୧.୧.୧୮୩୬ରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ । ଏଣୁ ଆମ ପାଞ୍ଜିରେ ଆବଶ୍ୟକ ସଂଶୋଧନ କରି ସରସ୍ୱତୀଙ୍କ ବରପୁତ୍ର ସାମନ୍ତଙ୍କ ମୁଖ୍ୟ ଅମାନ୍ତ ଜନ୍ମତିଥି ପୌଷ କୃଷ୍ଣ ଅଷ୍ଟମୀକୁ ଓଡ଼ିଆ ପୂର୍ଣ୍ଣିମାନ୍ତ ପଦ୍ଧତିରେ ମାଘ କୃଷ୍ଣ ଅଷ୍ଟମୀ ବୋଲି ଗ୍ରହଣ କରିବାକୁ ହେବ ।

**ସିଦ୍ଧାନ୍ତ -** ସାମନ୍ତଙ୍କ ଜନ୍ମ ତା.୧୧ ଜାନୁଆରୀ ୧୮୩୬ ଓ ଜନ୍ମତିଥି ପୌଷ କୃଷ୍ଣ ଅଷ୍ଟମୀର ପ୍ରଥମ ପ୍ରବକ୍ତା ଓ ଆବିଷ୍କାରକ ପ୍ରମାଣ ପୁରୁଷ ତଥା ସାମନ୍ତଙ୍କ ଜ୍ଞାନ ଓ ବ୍ୟକ୍ତିତ୍ୱର ନିବିଡ଼ ସମ୍ପର୍କରେ ଆସିଥିବା ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ହୋଇଥିବାରୁ ଏବଂ ଉକ୍ତ ତିଥିର ଉଲ୍ଲେଖ ସେ ବଙ୍ଗାଳୀ ପାଠକଙ୍କ ଉଦ୍ଦେଶ୍ୟରେ ବଙ୍ଗଳା ପତ୍ରିକାରେ କରି ତାହାର ସମତୁଲ ଇଂରାଜୀ ତାରିଖ ଦେଇଥିବାରୁ ବର୍ତ୍ତମାନ ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ, ସାମନ୍ତଙ୍କ ଜନ୍ମ ତାରିଖ ୧୧ ଜାନୁଆରୀ ୧୮୩୬ ଏବଂ ଏହାର ସମାନ ଭାରତୀୟ ଜନ୍ମତିଥି ଅମାନ୍ତ ମାନରେ ପୌଷ କୃଷ୍ଣ ଅଷ୍ଟମୀ ଏବଂ ପୂର୍ଣ୍ଣିମାନ୍ତ ମାନରେ ମାଘ କୃଷ୍ଣ ଅଷ୍ଟମୀ ୧୭୫୭ ଶକାବ୍ଦ ।' ଏସବୁ କଥା ସମାଜ (ତା.୮.୧୧.୧୯୯୨)ରେ ପ୍ରକାଶିତ 'ପଠାଣି ସାମନ୍ତଙ୍କ ଜନ୍ମ ତାରିଖ' ପ୍ରବନ୍ଧରେ ଉଲ୍ଲେଖ କରିଥିଲି । 'ପଠାଣି ସାମନ୍ତଙ୍କ ଜାତକ ଓ ଜୀବନ' ଉତ୍କଳ ପ୍ରସଙ୍ଗ, ଜାନୁଆରୀ' ୮୬ ଓ ନିୟତି-ଫେବୃଆରୀ' ୮୬ରେ ଏବଂ ମୋ' ସମ୍ପାଦିତ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ପ୍ରକାଶିତ 'Mm Samanta Chandrasekhar Commemoration Volume'ରେ ଏ ବିଷୟରେ ବିସ୍ତୃତ ଆଲୋଚନା କରିଛି । ନିକଟରେ ଓଡ଼ିଶା ବିଜ୍ଞାନ ଏକାଡେମୀର 'ବିଜ୍ଞାନ ଦିଗନ୍ତ' (ମେ-ଜୁନ୍-୨୦୦୪) ସାମନ୍ତଙ୍କ ଶ୍ରାଦ୍ଧ ଶତବାର୍ଷିକୀ ସ୍ମାରକୀ ସଂଖ୍ୟାରେ ସଂସ୍କୃତ-ସିଦ୍ଧାନ୍ତ-ଜ୍ଞାନହୀନ କେତେକଙ୍କ ପ୍ରବନ୍ଧ ପ୍ରକାଶ ପାଇଛି । ସେମାନଙ୍କ ଆଲୋଚନାରେ ସ୍ଥାନ ପାଇନଥିବାରୁ ଉପଯୁକ୍ତ 'Mm Samanta Chandrasekhar Commemoration Volume' କେହି ଦେଖିଥିବା ପରି ମନେ ହେଉନାହିଁ, ଯଦିଓ ତା'ର ସଭାପତି ଡଃ ବାସୁଦେବ କର ମୋ' ପାଖକୁ ଆସି ସବୁ ବୁଝିଥିଲେ । ଏଥିରେ ଡକ୍ଟର କର କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରି ନଥିବାବେଳେ ଡକ୍ଟର ପ୍ରହ୍ଲାଦ ଚନ୍ଦ୍ର ନାୟକ ମୋ' ନାମୋଲ୍ଲେଖ ନକରି 'ଅମାନ୍ତ ଧାରା ନେଲେ ଏହି ତିଥି ପ୍ରାୟ ମାସକ ପରେ ଅର୍ଥାତ୍ ୧୮୩୬ ମସିହା ଜାନୁଆରୀ ୧୧ ହେବ' ବୋଲି ସମର୍ଥନ କରିଥିଲାବେଳେ (ନାମୋଲ୍ଲେଖ ନକରି ରଘୁନାଥ ସିଂହଙ୍କ ମତରେ ପୌଷ କୃଷ୍ଣ ଅଷ୍ଟମୀ ଜନ୍ମ ତାରିଖକୁ) ଖଣ୍ଡନ କରି ଲେଖିଛନ୍ତି 'ଜନ୍ମ ଯଦି ୧୮୩୫ ପରିବର୍ତ୍ତେ ୧୮୩୪ ମସିହା (୧୭୫୬ ଶକାବ୍ଦ) ହୁଅନ୍ତା, ତେବେ ଏ ତାରିଖ ଡିସେମ୍ବର ୨୪ ହୁଅନ୍ତା ।' ପୁଣି ସେ ୧୮୩୫ର ପୂର୍ଣ୍ଣିମାନ୍ତ ପୌଷ କୃଷ୍ଣ ଅଷ୍ଟମୀଟି 'ନିର୍ଦ୍ଧାରିତ ତାରିଖ ଡିସେମ୍ବର ୧୩' ବୋଲି ଯାହା ଲେଖିଛନ୍ତି, ତାହା ଡିସେମ୍ବର ୧୪ ତାରିଖ ହେବ । କାରଣ ୧୪ ଡିସେମ୍ବର ସୋମବାର ସକାଳ ଘ.୬.୧୫ମିନଟ୍‌କୁ ହିଁ ହସ୍ତା ନକ୍ଷତ୍ର ଆସୁଛି ଏବଂ ପୌଷ କୃଷ୍ଣ ଅଷ୍ଟମୀ ରହୁଛି । ସେତେବେଳକୁ ସାମନ୍ତଙ୍କ ଜାତକ କଲେ ବୃଷରେ ଲଗ୍ନ-୨୮°୪୫', ରାହୁ ୬°୨୩', ମିଥୁନରେ ବୃହସ୍ପତି ୨୯°୪୩', କନ୍ୟାରେ ଚନ୍ଦ୍ର ୫°୧୦'୦୭'', ତୁଳାରେ ଶନି ୧୦°୪୭', ବିଛାରେ କେତୁ ୬°୨୩', ବୁଧ ୧୭°, ରବି ୨୯°୪୯' ଓ ଧନୁରେ ମଙ୍ଗଳ ୧°୩୦' ଶୁକ୍ର ୧୭°୧୦' ଥାଇ ଜନ୍ମ ବେଳକୁ ଚନ୍ଦ୍ର ମହାଦଶା ଭୋଗ୍ୟ ବ୦।୧।୬ ଦିନ ରହିବ ।

### ସିଦ୍ଧାନ୍ତ ଦର୍ପଣ - ରଚନାରମ୍ଭ

ସଂସ୍କୃତ-ସିଦ୍ଧାନ୍ତାନଭିଜ୍ଞ ତଥାକଥିତ ବିଜ୍ଞାନବିଦ୍‌ଗଣ ସିଦ୍ଧାନ୍ତ ଦର୍ପଣ -ରଚନାରମ୍ଭକୁ ନେଇ ମଧ ବୁଝି ନପାରି ଅଡୁଆରେ ପଡ଼ିଛନ୍ତି । ଏ ବିଷୟରେ ସାମନ୍ତ ଚନ୍ଦ୍ରଶେଖର ନିଜେ ସ୍ୱ-'ସିଦ୍ଧାନ୍ତ ଦର୍ପଣ'ର ଚତୁର୍ବିଂଶ ପ୍ରକାଶ ୧୪୯ ଶ୍ଳୋକରେ ଲେଖିଛନ୍ତି -

'ଯାତାଙ୍ଗତ୍ରିନବାବ୍ଧି (୪୯୩୬) ବତ୍ସରକଳୌ ଜନ୍ମାଭବନ୍ମାମକଂ ବେଦୋଷର୍ବୁଧ (୩୪) ବର୍ଷକେଣ ଚ ମୟା ଗ୍ରନ୍ଥୋଽୟମାବିଷ୍କୃତଃ ।'

ଅର୍ଥାତ୍, କଳିଗତାବ୍ଦ ୪୯୩୬ ବା (-୩୧୦୧) ୧୮୩୫ ଖ୍ରୀଷ୍ଟାବ୍ଦରେ ମୋର ଜନ୍ମ ହୋଇଥିଲା । ମୋତେ ୩୪ ବର୍ଷ ହୋଇଥିଲାବେଳେ (ଅର୍ଥାତ୍ କଳିଗତାବ୍ଦ ୪୯୩୬+୩୪=୪୯୭୦ ବା ଖ୍ରୀ:୧୮୩୫+୩୪=୧୮୬୯ରେ) ମୁଁ ଏହି ଗ୍ରନ୍ଥ ବା ଗାଣିତିକ ବିଷୟକ-ଗ୍ରଥନ-ଭାବ ('ପ୍ରାକାଶ୍ୟେ ପ୍ରାଦୁର୍-ଆବିଃ'=) ପ୍ରକାଶ ('ଯୁଗ ପର୍ଯ୍ୟାପ୍ତୟୋଃ କୃତଂ=) ପର୍ଯ୍ୟାପ୍ତ ବା ବିଶେଷ ଭାବରେ କଲି ।

ପୁଣି ପ୍ରଥମ ପ୍ରକାଶର ୪୨ ଶ୍ଳୋକରେ ସେ ସ୍ପଷ୍ଟ ଲେଖିଛନ୍ତି -

'ଅସ୍ୟାନ୍ତରେ ଯାତବତୀ ଯୁଗାନାଂ ସପ୍ତାଧିକା ବିଂଶତି (୨୭) ରନ୍ୟତଶ୍ଚ ।
ଯୁଗାଦ୍ଗତାଃ ସତ୍ୟମୁଖତ୍ରିପାଦାଃ କଳେଃ ଖସପ୍ତାଙ୍କ ମହାର୍ଣବାବ୍ଦାଃ (୪୯୭୦) ॥'

ଅର୍ଥାତ୍, ବର୍ତ୍ତମାନ ଗ୍ରନ୍ଥାରମ୍ଭ ବେଳକୁ ୨୭ ଯୁଗ (ରୁ୨୪ ଯୁଗରେ ଯଥାକ୍ରମେ ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ ଓ ଚାକ୍ଷୁଷ ନାମକ ୬ ମନ୍ୱନ୍ତର ଭୋଗ ଯାଇ ୭ମ ବୈବସ୍ୱତ ମନ୍ୱନ୍ତରରୁ ସତ୍ୟ, ତ୍ରେତା ଓ ଦ୍ୱାପର - ଏହି ତିନି ଯୁଗ) ଯାଇ ବର୍ତ୍ତମାନ (ମୋତେ ୩୪ ବର୍ଷ ହେଲାବେଳକୁ) କଳିଯୁଗରୁ ବିତି ଗଲାଣି ୪୯୭୦ ବର୍ଷ (ବା ଏବେ ହେଲା ୧୮୬୯ ଖ୍ରୀଷ୍ଟାବ୍ଦ) ।

ଏଣୁ ସାମନ୍ତ ତାଙ୍କୁ ୩୪ ବର୍ଷ ହୋଇଥିଲାବେଳେ 'ସିଦ୍ଧାନ୍ତ ଦର୍ପଣ'ର ଆରମ୍ଭ ଖ୍ରୀ:୧୮୬୯ରେ କରିଥିଲେ । ସେଦିନ ସୋମବାର ଚୈତ୍ର ଶୁକ୍ଳ ପ୍ରତିପଦା (ଅର୍ଥାତ୍ ତା.୧୨ ଏପ୍ରିଲ୍ ୧୮୬୯ ଖ୍ରୀଷ୍ଟାବ୍ଦ) ହୋଇଥିଲା ଏବଂ ପୂର୍ବରାତିରୁ ସୂର୍ଯ୍ୟ ମେଷ ରାଶିରେ ପ୍ରବେଶ କରିଥିଲେ । ଏହାକୁ ହିଁ ଗ୍ରନ୍ଥାରମ୍ଭର କରଣାବ୍ଦ-କାଳ ବୋଲି ସ୍ୱୀକାର କରି ଉକ୍ତ ସମୟର ସ୍ଫୁଟ ଗ୍ରହସ୍ଥିତି ପଠାଣି ସାମନ୍ତେ ଦେଇଛନ୍ତି ଏବଂ ତା' ଆଗରୁ ଲେଖିଛନ୍ତି -

'ଗ୍ଳୌବାରେ ପ୍ରତିପଦ୍-ପ୍ରଗେ ଗତନିଶାଶେଷେ ତୁ ମେଷେଽବିଶତ୍ ।
ସୂର୍ଯ୍ୟୋଽର୍କସ୍ତଦିହ ଧ୍ରୁବୋଽରଚି ଦିନେ ମଧ୍ୟାର୍କବର୍ଷାନ୍ତକେ ॥
(ସି.ଦ.୩।୫୭)

ଅର୍ଥାତ୍, (ଗ୍ଳୌ=) ସୋମ-ବାରେ ପ୍ରତିପଦ୍ (ପ୍ରଗେ=) ପ୍ରାତଃ ଗତରାତି ଶେଷ ବେଳକୁ ମେଷରେ ସୂର୍ଯ୍ୟ ପ୍ରବେଶ କରିସାରିଥିଲେ ।

### ସିଦ୍ଧାନ୍ତ, ତନ୍ତ୍ର ଓ କରଣ

ସିଦ୍ଧାନ୍ତ ଦର୍ପଣରେ (ସୃଷ୍ଟି ବା) କଳ୍ପାରମ୍ଭ, ଯୁଗାରମ୍ଭ ଓ ଏକ ନିର୍ଦ୍ଦିଷ୍ଟ ଦିନର ଗ୍ରହସ୍ଥିତିରୁ ଗଣନାରମ୍ଭ ଯଥାକ୍ରମେ କରାଯାଇଥିବାରୁ ଏହା ଏକାଧାରରେ ସିଦ୍ଧାନ୍ତ, ତନ୍ତ୍ର ଓ କରଣ ଅଟେ ଏବଂ ତଦନୁସାରେ ଯାହା ସବୁ ଆବଶ୍ୟକ ତାହା ଏଥିରେ ଅଛି ବୋଲି ସେ ୧୫ଶ ପ୍ରକାଶର ୬୭ ଶ୍ଳୋକରେ ଲେଖିଛନ୍ତି -

'ଯସ୍ମିନ୍ ଖେଟା ନୟନମୁଦିତଂ ସୃଷ୍ଟିଜାହର୍ଗଣେଭ୍ୟଃ
ସିଦ୍ଧାନ୍ତୋଽସୌ ଯୁଗଦିନଗଣାଦ୍ ଯତ୍ର ତନ୍ତ୍ରଂ ତଦେବ ।
ଯସ୍ମିନ୍ ଶାକାଦ୍ୟଭିମତ-ସମାବାସରେଭ୍ୟସ୍ତଦୁକ୍ତଂ
ଶାସ୍ତ୍ରଂ ପ୍ରାଜ୍ଞୈଃ କରଣମିତି ତତ୍କାର୍ଯ୍ୟମତ୍ରାସ୍ତି ସର୍ବମ୍ ॥'

ଏଣୁ ସେ ସୋମବାର ଚୈତ୍ର ଶୁକ୍ଳ ପ୍ରତିପଦା (ଅର୍ଥାତ୍ ତା.୧୨ ଏପ୍ରିଲ୍ ୧୮୬୯ ଖ୍ରୀଷ୍ଟାବ୍ଦ)କୁ ମୂଳ କରି ସେ ଦିନଠାରୁ ଧ୍ରୁବ ପ୍ରତ୍ୟକ୍ଷ ଗ୍ରହସ୍ଫୁଟକୁ ଦୃକ୍‌ସିଦ୍ଧ କରି ତଦନୁସାରେ ବିଲୋମ ଗତିରେ ଭ-ଗଣ ନିର୍ଣ୍ଣୟ ଦ୍ୱାରା 'ସୂର୍ଯ୍ୟ ସିଦ୍ଧାନ୍ତ' ଓ 'ସିଦ୍ଧାନ୍ତ ଶିରୋମଣି' ପରି ପ୍ରାଚୀନ ସିଦ୍ଧ ପରମ୍ପରାନୁସରଣରେ 'ସିଦ୍ଧାନ୍ତ ଦର୍ପଣ' ରଚନା କରିଥିଲେ । ଆମର ଅନେକ ସିଦ୍ଧାନ୍ତ, ତନ୍ତ୍ର ଓ କରଣ ଗ୍ରନ୍ଥ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ ହୋଇଛି କିନ୍ତୁ ଗୋଟିଏ ଗ୍ରନ୍ଥରେ ତିନୋଟି ଯାକ ରଖି ପ୍ରସ୍ତୁତ 'ସିଦ୍ଧାନ୍ତ ଦର୍ପଣ' ପଠାଣି ସାମନ୍ତଙ୍କ ଅନନ୍ୟ ଆର୍ଷପ୍ରତିଭା ଓ ବୈଶିଷ୍ଟ୍ୟ ପ୍ରତିପାଦନ କରେ ।

### ସିଦ୍ଧାନ୍ତ ଦର୍ପଣ-ରଚନାର ଶେଷ ସମୟ

ସିଦ୍ଧାନ୍ତ ଦର୍ପଣ ଶେଷରେ ସାମନ୍ତେ ସ୍ପଷ୍ଟ ଲେଖିଛନ୍ତି -

'ମୁକୁନ୍ଦ ଦେବସ୍ୟ ଚତୁର୍ଦ୍ଦଶାଙ୍କେ କାଳେ ବୃଷାକ୍ଷେନ୍ଦୁ (୧୮୧୪) ସମେ ଚ ଶାକେ ।
ବାରେ ଶନେର୍ମାର୍ଗପୁରୋ ନବମ୍ୟାମିଦଂ ମୟା ପୁସ୍ତକମାସ୍ତ ପୂର୍ଣ୍ଣମ୍ ॥
(ସିଦ ୨୪।୧୬୦)

ଅର୍ଥାତ୍, ମୁକୁନ୍ଦ ଦେବଙ୍କ ୧୪ ଅଙ୍କ ୧୮୧୪ ଶକାବ୍ଦ ମାର୍ଗଶିର ମାସ କୃଷ୍ଣପକ୍ଷ ନବମୀ ତିଥି ଶନିବାର (ତା.୧୨.୧୧.୧୮୯୨)ରେ ମୋ' ଦ୍ୱାରା ଏହି ପୁସ୍ତକ 'ସିଦ୍ଧାନ୍ତ ଦର୍ପଣ' ପୂର୍ଣ୍ଣ ହେଲା । ଏଣୁ ଏହି ଗ୍ରନ୍ଥ ଶେଷ ହେବାକୁ ୨୩ ବର୍ଷ ୭ ମାସ ଲାଗିଲା ସତ, କିନ୍ତୁ ଗ୍ରନ୍ଥ ସମାପ୍ତିଠାରୁ ପ୍ରକାଶ ପାଇଁ ପ୍ରେସ୍‌କୁ ଯିବା ଓ ପ୍ରଥମ ପ୍ରକାଶ ପରେ ମଧ ଅନେକ ଶ୍ଳୋକ ଗ୍ରନ୍ଥକାରଙ୍କ ଦ୍ୱାରା ପରେ ସଂଯୋଜିତ ହୋଇ ସ୍ଥାନିତ ହୋଇଛି ।

## ସିଦ୍ଧାନ୍ତ ଦର୍ପଣର ବିଷୟସୂଚୀ

ଦର୍ପଣ ଯାହା ଦେଖେ ତାହା ପ୍ରକାଶ କରେ । ଜ୍ୟୋତିର୍ଗଣିତର ମଧ୍ୟମ-ସ୍ଫୁଟ-ତ୍ରିପ୍ରଶ୍ନ-ଗୋଳ-କାଳାଖ୍ୟ ପାଞ୍ଚଟି ମୁଖ୍ୟ ବିଷୟକୁ ଆଧାର କରି ପଠାଣି ସାମନ୍ତ ଯାହା ନିଜର ଅଧ୍ୟୟନ ଓ ପ୍ରତିଭା ବଳରେ ଅଧିକାରର ସହିତ ଦୃକ୍‌ସିଦ୍ଧ କଲେ ସେହି ପଞ୍ଚ ଅଧିକାରକୁ ସିଦ୍ଧାନ୍ତ ଦର୍ପଣର ୨୪ ଅଧ୍ୟାୟରେ ପ୍ରକାଶ କରି ପ୍ରତି ଅଧ୍ୟାୟକୁ ପ୍ରକାଶ ନାମ ଦେଇ ସାର୍ଥକ କରିଛନ୍ତି । ସିଦ୍ଧାନ୍ତ ଦର୍ପଣରେ ଆଲୋଚିତ ବିଷୟାବଳିର ଅବଗତି ସକାଶେ ନିମ୍ନଲିଖିତ ପ୍ରକାରେ ସୂଚିତ କରାଯାଇପାରେ -

| ବିଭାଗ | ପ୍ରକାଶ<br>କ୍ର.ସଂ. ବିଷୟ | ଶ୍ଳୋକ ସଂଖ୍ୟା | |
|---|---|---|---|
| ପୂର୍ବାର୍ଦ୍ଧ :<br>ମଧ୍ୟମାଧିକାର | ୧. କାଳବର୍ଣ୍ଣନା | ୫୫ | +୧ |
| | ୨. ଭଗଣାଦି ବର୍ଣ୍ଣନା | ୨୫ | +୧ |
| | ୩. ଗ୍ରହାନୟନ | ୭୭ | +୧ |
| | ୪. ନାନାବିଧ ସଂସ୍କାର | ୫୭ | +୧ |
| ସ୍ଫୁଟାଧିକାର | ୫. ଗ୍ରହସ୍ଫୁଟୀକରଣ | ୨୧୧ | +୧ |
| | ୬. ସୂକ୍ଷ୍ମପଞ୍ଜିକା କ୍ରାନ୍ତ୍ୟାଦୟ | ୧୬୧ | +୧ |
| ତ୍ରିପ୍ରଶ୍ନାଧିକାର | ୭. ଶଙ୍କୁଛାୟାଦିବର୍ଣ୍ଣନ | ୯୫ | +୧ |
| | ୮. ଚନ୍ଦ୍ରଗ୍ରହଣ | ୮୭ | +୧ |
| | ୯. ସୂର୍ଯ୍ୟଗ୍ରହଣ | ୭୮+୧୦ | +୧ |
| | ୧୦. ପରିଲେଖ | ୩୭ | +୧ |
| | ୧୧. ଗ୍ରହଯୁତି | ୧୧୧ | +୧ |
| | ୧୨. ଭଗ୍ରହଯୋଗ | ୯୩ | +୧ |
| | ୧୩. ଗ୍ରହନକ୍ଷତ୍ର ଉଦୟାସ୍ତ | ୮୫ | +୧ |
| | ୧୪. ଚନ୍ଦ୍ରଶୃଙ୍ଗୋନ୍ନତି | ୬୮ | +୧ |
| | ୧୫. ମହାପାତବର୍ଣ୍ଣନ | ୬୧ | +୨ |
| ଉତ୍ତରାର୍ଦ୍ଧ :<br>ଗୋଳାଧିକାର | ୧୬. ପ୍ରଶ୍ନୋତ୍ତର | ୮୦ | +୧ |
| | ୧୭. ଭୂଗୋଳସ୍ଥିତି ବର୍ଣ୍ଣନା | ୧୬୦ | +୧ |
| | ୧୮. ଭୂଗୋଳ ବିବରଣ | ୧୭୬ | +୧ |
| | ୧୯. ଭୂଗୋଳ ଖଗୋଳ ବର୍ଣ୍ଣନା | ୧୨୪ | +୧ |
| | ୨୦. ଗୋଳାଦି ଯନ୍ତ୍ର ବର୍ଣ୍ଣନା | ୧୧୨ | +୧ |
| | ୨୧. ବାସନା ଶେଷ ରହସ୍ୟ ବର୍ଣ୍ଣନା | ୨୫୧ | +୧ |
| କାଳାଧିକାର | ୨୨. ସଂବତ୍ସରାଦିବର୍ଣ୍ଣନା | ୬୭ | +୧ |
| | ୨୩. ପୁରୁଷୋତ୍ତମସ୍ତବ | ୫୬ | +୧ |
| | ୨୪. କୌତୁକପଞ୍ଜିକା ଓ ଉପସଂହାର | ୧୫୩+୧ | +୧ |

**ମୋଟ ଶ୍ଳୋକ ସଂଖ୍ୟା - ୨୫୦୦+୩୬=୨୫୩୬**

ସିଦ୍ଧାନ୍ତ ଦର୍ପଣର ଉପଯୁକ୍ତ ଚବିଶି ପ୍ରକାଶରେ ମୋଟ ୨୫୩୬ଟି ଶ୍ଳୋକ ଥିବା ଦେଖାଯାଏ । ଏଥିରୁ ସ୍ୱପରିଚୟାତ୍ମକ ଭଣିତା ଶ୍ଳୋକଟିର ଚତୁର୍ଥ ପାଦଟି ସାମାନ୍ୟ ଆଂଶିକ ପରିବର୍ତ୍ତନ ସହ ପ୍ରତି ପ୍ରକାଶ ବା ଅଧ୍ୟାୟର ବିଷୟ ନିର୍ଦ୍ଦେଶ ପୂର୍ବକ ଶେଷରେ ଦିଆଯାଇଛି, ଯଥା-

୧ମ ପ୍ରକାଶ ଶେଷରେ ଅଛି -

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳ ପ୍ରସୂତ-<br>
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେ□ସିଦ୍ଧେ ।<br>
ସିଦ୍ଧାନ୍ତ ଦର୍ପଣ ଉପାହିତବାଳବୋଧେ<br>
ଶୁଦ୍ଧୋ□ମସମୟଭାକ୍ ପ୍ରଥମଃ ପ୍ରକାଶଃ ॥

(ସି.ଦ. ୧।୫୬)

୨୪ଶ ପ୍ରକାଶ ଶେଷରେ ଅଛି -

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳ ପ୍ରସୂତ-<br>
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେ□ସିଦ୍ଧେ ।<br>
ସିଦ୍ଧାନ୍ତ ଦର୍ପଣ ଉପାହିତବାଳବୋଧେ<br>
ସାନୁକ୍ରମୋ ବ୍ୟରଚି ସିଦ୍ଧ (୨୪) ମିତଃ ପ୍ରକାଶଃ ॥

(ସି.ଦ. ୨୪।୧୫୫)

ଏହିପରି ୨୪ ପ୍ରକାଶର ଶେଷ ଶ୍ଳୋକକୁ ବାଦ୍ ଦେଇ ଗ୍ରନ୍ଥର ମୋଟ ଶ୍ଳୋକ ସଂଖ୍ୟାରୁ ତାଙ୍କ ସ୍ୱରଚିତ ଶ୍ଳୋକ କେତେ ଓ ଅନ୍ୟ ସିଦ୍ଧାନ୍ତରୁ ଆହୃତ ଶ୍ଳୋକ ସଂଖ୍ୟା କେତେ ପାଠକଙ୍କୁ ଜଣାଇଦେବା ଲାଗି ଶେଷ ପ୍ରକାଶର ଉପର୍ଯ୍ୟୁଦ୍ଧୃତ ଭଣିତା ଶ୍ଳୋକ ପରେ ଲେଖିଛନ୍ତି -

'ଶ୍ଳୋକାଃ ସ୍ୱକ୍ଳୃପ୍ତା ଇହ ବେଦନାଗ-ପକ୍ଷାକ୍ଷି (୨୨୮୪) ସଂଖ୍ୟା ଅଥ ଭୂପପକ୍ଷାଃ (୨୧୬)

ଗ୍ରନ୍ଥାନ୍ତରୋଦ୍ଧାଃ ଖଖବାଣପକ୍ଷାଃ (୨୫୦୦) ସମୂୟ ଭବ୍ୟାୟ ଭବନ୍ତୁ ଦକ୍ଷାଃ ॥

(ସି.ଦ. ୨୪।୧୫୬)

ଏହି ଗ୍ରନ୍ଥରେ ମୋର ସ୍ୱକୃତ ଶ୍ଳୋକ ସଂଖ୍ୟା - ୨୨୮୪<br>
ଅନ୍ୟ ଗ୍ରନ୍ଥମାନଙ୍କରୁ ଉଦ୍ଧୃତ ଶ୍ଳୋକ ସଂଖ୍ୟା - ୨୧୬

**ମୋଟ ଶ୍ଳୋକ ସଂଖ୍ୟା - ୨୫୦୦**

କିନ୍ତୁ ସିଦ୍ଧାନ୍ତ ଦର୍ପଣରେ ଆମେ ଦେଖିବାକୁ ପାଉ ମୋଟ ୨୫୩୬ ଶ୍ଳୋକ । ଏଥିରୁ ପୂର୍ବୋଦାହୃତ ପ୍ରତି ପ୍ରକାଶ ଶେଷ ଭଣିତା ୨୪ଟି ଶ୍ଳୋକ ସହ ପୂର୍ବାର୍ଦ୍ଧଶେଷ (ସି.ଦ.୧୫।୭୩) ଭଣିତାଟି ହେଉଛି -

ଇତି ମୁଦିତସୁଧୀରେ ଶୁଦ୍ଧ ସିଦ୍ଧାନ୍ତ ପୂର୍ବେ ନୟନ ବିଷୟ
ସିଦ୍ଧବ୍ୟୋମରେ ଦର୍ପଣେସ୍ମିନ୍ ।

ତ୍ରି(୩) ଭିରିଦମଧିକାରୈଃ ପଞ୍ଚଭୂ (୧୫)ଭିଃ ପ୍ରକାଶୈର୍ଗହଗଣିତ
ସମାଖ୍ୟଂ ପୂର୍ବମର୍ଦ୍ଧ୍ୟଂ ସମାପ୍ତମ୍ ॥

ଏବଂ ସେହିପରି ଉତ୍ତରାର୍ଦ୍ଧଶେଷ ଭଣିତା (ସି.ଦ. ୨୪।୧୫୧) ସହ ନବମ ପ୍ରକାଶରେ ପରେ ଯୋଡ଼ା ଯାଇଥିବା (୯।୭୩-୮୨) ୧୦ଟି ଶ୍ଳୋକକୁ ମିଶାଇ ୩୬ ଶ୍ଳୋକକୁ ସାମନ୍ତେ ହିସାବକୁ ନ ନେଇ ମୋଟ ଅଢ଼େଇଶହ ଶ୍ଳୋକର ହିସାବ ଦେଇଛନ୍ତି ।

ଶ୍ରଦ୍ଧେୟ ଡଃ ପ୍ରହ୍ଲାଦ ନାୟକ ଖ୍ରୀ:୧୮୭୪ରେ ଘଟିତ ଶୁକ୍ରକୃତ ସୂର୍ଯ୍ୟପରାଗ ସମ୍ବନ୍ଧୀୟ ୧୧ଶ ପ୍ରକାଶର ୧୧୦ ସଂଖ୍ୟକ ଶ୍ଳୋକକୁ ସାମନ୍ତେ ହିସାବ ଲେଖିବାବେଳେ ଭୁଲି ଯାଇ ଥାଇପାରନ୍ତି ବୋଲି ସାମନ୍ତଙ୍କ ସ୍ମୃତିଶକ୍ତିକୁ ଯେପରି ନିଜ ସହ ମାପି ବାଳସୁଲଭ ମତ 'ବିଜ୍ଞାନ ଦିଗନ୍ତ (ମେ-ଜୁନ୍, ୨୦୦୪, ପୃ.୪୩)'ରେ ଦେଇଛନ୍ତି, ତାହା ଗ୍ରହଣୀୟ ନୁହେଁ । ସେଥିରେ 'ସିଦ୍ଧାନ୍ତ ଦର୍ପଣ' ୧୮୬୯ରେ ଶେଷ ହେଲା ସତ ବୋଲି ଯାହା ଲେଖିଛନ୍ତି ତାହା ମିଥ୍ୟା, କାରଣ ଆରମ୍ଭକୁ ଶେଷ ବୋଲି ବୁଝିବା ତାଙ୍କର ଭୁଲ୍ । ୧୮୯୨ରେ ସମାପ୍ତ ସିଦ୍ଧାନ୍ତ ଦର୍ପଣରେ ସାମନ୍ତେ ଖ୍ରୀ:୧୮୭୪ରେ ଘଟିତ ଶୁକ୍ରହେତୁକ ବିଶିଷ୍ଟ ସୂର୍ଯ୍ୟପରାଗକୁ ମାପି ସମୟ-ନିର୍ଦ୍ଦେଶପୂର୍ବକ ଯେଉଁ ଶ୍ଳୋକ (୧୧।୧୧୦) ଲେଖିଲେ ତାକୁ ଭୁଲିଗଲେ କହିବା ମଧ୍ୟ ଗବେଷକର ଅଜ୍ଞତା ସିନା ବିଜ୍ଞତା ନୁହେଁ ।

**ସିଦ୍ଧାନ୍ତ ଦର୍ପଣର ବୈଶିଷ୍ଟ୍ୟ**

(କ) ରବି ଓ ଚନ୍ଦ୍ରଙ୍କର ଭ-ଗଣ, ଦିନ, ମାସ ଓ ବର୍ଷର ସଂଖ୍ୟା (ଗୋଟିଏ କଳ୍ପରେ) ତଥା ପୃଥିବୀ, ତା'ର ବ୍ୟାସ, ଜ୍ୟା ଓ କୋଟି ଜ୍ୟା ଆଦି ପଦାର୍ଥ ପ୍ରାୟ ସମାନ ଥାଏ । ଏସବୁ ପ୍ରାଚୀନ ସିଦ୍ଧାନ୍ତମାନଙ୍କରେ ଯାହା ସିଦ୍ଧାନ୍ତ ଦର୍ପଣରେ ମଧ ତାହା ହିଁ ଅଛି । ମାତ୍ର ଅନ୍ୟ ଗ୍ରହମାନଙ୍କର ଭ-ଗଣ ସଂଖ୍ୟା (Planetary Cycles), ଉଚ୍ଚ (Mean), ପାତ (Node of an orbit), ଶର (Celestial Latitude), କକ୍ଷା ଓ ବିମ୍ବ ଆଦିର ପରିମାଣ ପ୍ରଭୃତି ସମୟ ଭେଦରେ ଭିନ୍ନ ଭିନ୍ନ ହେଉଥିବାରୁ ନୂତନ ଗ୍ରନ୍ଥ ରଚନା ଆବଶ୍ୟକ ହୋଇଥାଏ । ଏପରିକି ସିଦ୍ଧାନ୍ତ ଶିରୋମଣିରେ ଚନ୍ଦ୍ରଭଗଣ-୫୭୭୫୩୩୦୦୦୦୦ ହୋଇଥିବା ସ୍ଥଳେ ସାମନ୍ତେ ତାଙ୍କ ସିଦ୍ଧାନ୍ତ ଦର୍ପଣରେ ଚନ୍ଦ୍ରଭଗଣ- ୫୭୭୫୩୩୩୬୦୦୦ ବୋଲି ଉଲ୍ଲେଖ କରିଛନ୍ତି । (ସି.ଦ. ୧।୭)

(ଖ) ପୂର୍ବଗ୍ରନ୍ଥମାନଙ୍କରେ ଗ୍ରହଣାଦି ଦେଖିବାରେ କାଳକଳନାରେ ପ୍ରଭେଦ ପରିଲକ୍ଷିତ ହେବାରୁ ଦୃକ୍‌ସିଦ୍ଧ ଏହି ସିଦ୍ଧାନ୍ତ ଦର୍ପଣର ଗଣନା ବହୁକାଳ ପାଇଁ ଉପଯୋଗୀ ହେବ ।

(ଗ) ପୂର୍ବରୁ କୁହାଯାଇଛି ଯେ ସିଦ୍ଧାନ୍ତ ଦର୍ପଣ ହେଉଛି ଏକାଧାରରେ ସିଦ୍ଧାନ୍ତ, ତନ୍ତ୍ର ଓ କରଣଗ୍ରନ୍ଥ । ମୂଳ କଠିନ ସିଦ୍ଧାନ୍ତମାନଙ୍କର ସରଳ ଅବବୋଧ ସକାଶେ ରଚିତ କରଣଗ୍ରନ୍ଥ ଏକ ପ୍ରକାର ବ୍ୟବହାରୋପଯୋଗୀ (ହାତ) ମୁଠାପୋଥି ବା practical hand-book ଅଟେ ।

(ଘ) ମନ୍ଦଫଳ ଓ ଭୁଜଫଳ ସଂସ୍କାର ଲାଗି ଭାସ୍କରାଚାର୍ଯ୍ୟ (୨ୟ)ଙ୍କ 'ସିଦ୍ଧାନ୍ତ ଶିରୋମଣି' (ଖ୍ରୀ:୧୧୫୦) ପର୍ଯ୍ୟନ୍ତ କକ୍ଷାବୃତ୍ତ ଓ ପ୍ରତିବୃତ୍ତକୁ ନେଇ ଗଣନା କରିଛନ୍ତି । ସାମନ୍ତେ କିନ୍ତୁ ଉଭୟ ବୃତ୍ତକୁ ଏକ ଦୀର୍ଘବୃତ୍ତରେ ପରିଣତ କରି ଗଣନାକୁ ସୂକ୍ଷ୍ମ ଓ ସରଳ କରିଛନ୍ତି ।

(ଙ) ତିଥିସାଧନ ଓ ଅଧିମାସ ତଥା କ୍ଷୟମାସ ଗଣନାରେ ସେ ସଂସ୍କାର ଆଣି ଅନେକ ନୂତନ ତଥ୍ୟ ଦେଇଛନ୍ତି । ଅନ୍ୟ ସିଦ୍ଧାନ୍ତକାରଙ୍କ ମତରେ ଚୈତ୍ରାଦି ସାତମାସ ମଳମାସ ହେଉଥିଲାବେଳେ ସାମନ୍ତଙ୍କ ମତରେ ଫାଲ୍‌ଗୁନାଦି କାର୍ତ୍ତିକ ପର୍ଯ୍ୟନ୍ତ ନଅ ମାସ ମଳମାସ ହୋଇପାରେ ବୋଲି 'ସିଦ୍ଧାନ୍ତଦର୍ପଣ'ରେ ସ୍ୱତନ୍ତ୍ର ମତବ୍ୟକ୍ତ କରିଛନ୍ତି ।

(ଚ) ଚନ୍ଦ୍ର ପରି ଏକ ଚଞ୍ଚଳ ବା କ୍ଷିପ୍ର ଗ୍ରହର ସୂକ୍ଷ୍ମ-ଗଣନା ଲାଗି ସେ ତୁଙ୍ଗାନ୍ତର (Evection), ପାକ୍ଷିକ (Variation) ଓ ଦିଗଂଶ (Annual Equation) ପରି ଅଧିକ ସଂସ୍କାରର ବ୍ୟବସ୍ଥା କରିଛନ୍ତି ।

(ଛ) ଦୁରୂହ ପଞ୍ଜିକା-ଗଣନାକୁ ସହଜସାଧ୍ୟ କରିବା ପାଇଁ ସେ ଯେଉଁ ସାରଣୀ ପ୍ରସ୍ତୁତ କରିଯାଇଛନ୍ତି, ତାହା ପାରମ୍ପରିକ ଧାର୍ମିକକୃତ୍ୟ ପାଇଁ ଆବଶ୍ୟକ ହେଉଥିବା ବିଶ୍ୱସନୀୟ ପଞ୍ଚାଙ୍ଗ ପ୍ରସ୍ତୁତିରେ ଅତ୍ୟନ୍ତ ସହାୟକ ହୋଇ ବହୁଜନ ହିତାୟ ହୋଇଛି ।

(ଛ) କପର୍‌ନିକସ-ଆଦି ସବୁ ପାଶ୍ଚାତ୍ୟ ଜ୍ୟୋତିଷୀଙ୍କ ମତରେ ସୂର୍ଯ୍ୟଙ୍କୁ କେନ୍ଦ୍ର କରି ସବୁ ଗ୍ରହ ଘୂରୁଛନ୍ତି । ଆମର ଭାରତୀୟ ପରମ୍ପରାରେ ବିଶ୍ୱାସୀ ପ୍ରତ୍ୟକ୍ଷଦର୍ଶୀ ପ୍ରାଚୀନ ଆଚାର୍ଯ୍ୟମାନଙ୍କ ମତରେ ପୃଥିବୀକୁ କେନ୍ଦ୍ର କରି ସବୁ ଗ୍ରହ ଘୂରୁଥିବା ଆମର ପ୍ରତ୍ୟକ୍ଷସିଦ୍ଧ ହୋଇଥିବାରୁ ତଦନୁସାରେ ଆମର ସିଦ୍ଧାନ୍ତ ଓ ଆପେକ୍ଷିକ ଗଣନା । ସାମନ୍ତେ କିନ୍ତୁ ପୃଥିବୀକୁ କେନ୍ଦ୍ର କରି ସୂର୍ଯ୍ୟ ଓ ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କୁ କେନ୍ଦ୍ର କରି ମଙ୍ଗଳାଦି ପଞ୍ଚ ଗ୍ରହ ଘୂରୁଥିବା ସିଦ୍ଧାନ୍ତକୁ ଗ୍ରହଣ କରି ତଦନୁସାରେ ତାଙ୍କର ଦୃକ୍‌ସିଦ୍ଧ ଗଣନା କରିଛନ୍ତି ।

ତାଙ୍କର ଭୂ-ସ୍ଥିରବାଦକୁ ସେ ପ୍ରବଳଯୁକ୍ତି ବଳରେ ଉପସ୍ଥାପିତ କରି ଦୃଢ଼ତାର ସହ କହିଥିଲେ -

'ବ୍ରହ୍ମାଣ୍ଡାଖଣ୍ଡଭାଣ୍ଡ-ସ୍ଥିରତରଧରଣୀମଣ୍ଡଳଭ୍ରାନ୍ତିଶୌଣ୍ଡ
ପ୍ରୋଦ୍ଦଣ୍ଡୈଂଲଣ୍ଡଦନ୍ତାବଳବଳଦଳନାକୁଣ୍ଠକଣ୍ଠୀରବଶ୍ରୀଃ ।
ସୋ□ଝଂ ନୀଳାଦ୍ରିସିଂହାନ୍ୱୟବଦନଦରୀନିର୍ଗତଃ ପ୍ରାପ୍ତଦୁର୍ଗଃ
ସ୍ଫୀତସ୍ୱଖ୍ୟାତିରସ୍ତୁ ପ୍ରଥମ ବିଗଣିତସ୍କନ୍ଧସାରଃ ପ୍ରବନ୍ଧଃ ।।'
(ସି.ଦ. ୨୪।୧୫୮)

ଅର୍ଥାତ୍, ଏହି ବିଶ୍ୱବ୍ରହ୍ମାଣ୍ଡ ଏକ ଅଖଣ୍ଡଭାଣ୍ଡ । ଏଥିରେ ସ୍ଥିରା ପୃଥିବୀ ସମସ୍ତଙ୍କୁ ଧରି ରଖିଛି । ଏହା ଅନୁଭବ ବେଦ୍ୟ ଓ ଦୃକ୍‌ସିଦ୍ଧ । କିନ୍ତୁ ଏହି ସ୍ଥିରା ପୃଥିବୀ ଘୁରୁଛି ବୋଲି ଘୋଷଣା କରୁଥିବା ଇଂରାଜୀ ପଢୁଆ ଦନ୍ତାହାତୀ ପରି ବଡ଼ ବଡ଼ ପଣ୍ଡିତମାନଙ୍କ ମତକୁ ନୀଳାଦ୍ରିସିଂହଙ୍କ ବଂଶୀୟମୁଖଦୁର୍ଗରୁ ଜାତ ମତ ସିଂହ ପରି କୁଣ୍ଠାହୀନ ଭାବରେ ଦଳନ କରୁ ଏବଂ ଜ୍ୟୋତିଷର ତ୍ରିସ୍କନ୍ଧ ମଧ୍ୟରୁ ପ୍ରଥମସ୍କନ୍ଧ ଗଣିତର ସାରସର୍ବସ୍ୱ ଏହି ସିଦ୍ଧାନ୍ତ ଦର୍ପଣ ପ୍ରବନ୍ଧ ଗ୍ରନ୍ଥ ପ୍ରସାର ଲାଭ କରି ଉତ୍ତରୋତ୍ତର ଖ୍ୟାତି ଅର୍ଜନ କରୁ ।

ଏପରି ଏକ ଆର୍ଷପ୍ରତିଭା ନେଇ ଓଡ଼ିଶାର ଖଣ୍ଡପଡ଼ାର ଜନ୍ମଗ୍ରହଣ କରି ଶ୍ରୀଜଗନ୍ନାଥଙ୍କଠାରେ ଅଟଳ ବିଶ୍ୱାସୀ ପ୍ରତି ଅଧ୍ୟାୟର ସ୍ତରେ ସ୍ତରେ ଯେପରି ଜଗନ୍ନାଥଙ୍କଠାରେ ନିଜର ସମର୍ପଣ ଭାବ ପ୍ରକାଶ କରିବା ସଂଗେସଂଗେ ସଂପୂର୍ଣ୍ଣ ତ୍ରୟୋବିଂଶ ପ୍ରକାଶର ଶ୍ରୀଜଗନ୍ନାଥ ତତ୍ତ୍ୱ ସଂବଳିତ ଶ୍ରୀପୁରୁଷୋତ୍ତମସ୍ତବ ତାଙ୍କର ଅନବଦ୍ୟ କାବ୍ୟିକ କୃତି । ଏହା ସିଦ୍ଧାନ୍ତ ଦର୍ପଣରେ ସ୍ଥାନ ପାଇ ଏ ଭୌତିକ ବିଶ୍ୱର ଗତିକୁ ନିୟନ୍ତ୍ରଣ କରୁଥିବା ନିୟନ୍ତା ଶ୍ରୀଜଗନ୍ନାଥ ମହାପ୍ରଭୁ ହିଁ ସକଳ ଜଡ଼ବସ୍ତୁତତ୍ତ୍ୱାନ୍ୱେଷୀ ଜନତାଙ୍କୁ ଆଧାତ୍ମିକ ଚେତାରେ ଉଦ୍‌ବୁଦ୍ଧ କରି ସମସ୍ତଙ୍କ ହୃଦୟରେ ଶାନ୍ତି, ସମତା ଓ ମୈତ୍ରୀର ଭାବ ସଂଚାର କରି ଆତ୍ମୀୟତାରେ ବାନ୍ଧି ରଖି ମଣିଷ ମନରୁ ସବୁ ଜଡ଼ତାକୁ ଦୂର କରି ଏକୀଭୂତ କରନ୍ତୁ । ତାଙ୍କର ଅମର କୃତି 'ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ' ସତ, କିନ୍ତୁ ତାଙ୍କର ଲୟ ଥିଲା ଶ୍ରୀଜଗନ୍ନାଥଙ୍କ ପାଦାରବିନ୍ଦରେ । ତେଣୁ ସେ କହିଥିଲେ -

'ଯସ୍ୟେଚ୍ଛା ମେ ନିଜଭଜନତୋ ଦୂରମୁତ୍ସାର୍ଯ୍ୟ ବୁଦ୍ଧିଂ
ଦୈବାଧୀନାଂ ଗଣିତବିପଣୌ ପାତୟତ୍ୟାତତାୟାମ୍ ।
ସଂଖ୍ୟାତୀତାନୁଗତପତିତୋଦ୍ଧାର କାରୁଣ୍ୟସିନ୍ଧୁଃ
ସ ସ୍ୟାଚ୍ଛେତଃ ଶରଣଚରଣଃ ସିନ୍ଧୁଜାପ୍ରାଣବନ୍ଧୁଃ ।
(ସି.ଦ. ୧୫।୭୧)

ଅର୍ଥାତ୍, ଭଜନ କରିବାକୁ ମୋର ମନ । ଯାହାର ଇଚ୍ଛାରେ ସେଥିରୁ ଦୂରେଇ ଯାଇ ମୁଁ ଏହି ଗଣିତ ବଜାରରେ ଜବରଦସ୍ତ ପଡ଼ି ଗଡୁଛି, ସେଥିରୁ ଜାଣୁଛି ମୋର ଏ ବୁଦ୍ଧି ଦୈବାଧୀନ ହୋଇ କାମ କରୁଛି ସିନା ମୋ' କଥା ମାନୁ ନାହିଁ । ମୋର ସେହି ଅମାନିଆ ଚିତ୍ତ ଅସଂଖ୍ୟ ପତିତ ଅନୁଗତ ଭକ୍ତଙ୍କ ଉଦ୍ଧାରକାରୀ କରୁଣାସିନ୍ଧୁ ଲକ୍ଷ୍ମୀବନ୍ଧୁ ଶ୍ରୀଜଗନ୍ନାଥଙ୍କ ଚରଣରେ ଶରଣ ନେଉ ।

ଏଥିରେ ସାମନ୍ତେ ଓଡ଼ିଶାକୁ ଓ ଶ୍ରୀଜଗନ୍ନାଥଙ୍କୁ ଯେପରି ଆତ୍ମୀୟତାର ସହ ଦେଖିଛନ୍ତି, ସେଥିରୁ ତାଙ୍କର ଦେଶପ୍ରୀତି ଓ ଭକ୍ତିଭାବନା ସହ ପାରମ୍ପରିକ ଧର୍ମରକ୍ଷା ପାଇଁ ବିପୁଳ ଶ୍ରଦ୍ଧା ପରିଲକ୍ଷିତ ହୁଏ । ସିଦ୍ଧାନ୍ତ ଦର୍ପଣ ଏହି ଜାତିର ଏକ ଗୌରବାବହ ପ୍ରାଚୀନ ଆର୍ଷ ପରମ୍ପରା ଓ ପାଣ୍ଡିତ୍ୟର ମହାର୍ଘ ପ୍ରତୀକ । ସିଦ୍ଧାନ୍ତ ଦର୍ପଣ କେତେକ ନିର୍ଦ୍ଦିଷ୍ଟ ଜ୍ୟୋତିର୍ଗଣିତଜ୍ଞ ପାଠକଙ୍କ ପାଇଁ ଉଦ୍ଦିଷ୍ଟ ହେଲେ ମଧ୍ୟ ଏହାର ଫଳ ଧର୍ମକୃତ୍ୟ ପାଳନକାରୀ ସର୍ବସାଧାରଣଙ୍କ ପ୍ରାପ୍ୟ । କିନ୍ତୁ ଏଥିରେ ଥିବା ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନାତ୍ମକ ତ୍ରୟୋବିଂଶ ପ୍ରକାଶ ସହ ପ୍ରତି ପ୍ରକାଶରେ ଥିବା ଜଗନ୍ନାଥବର୍ଣ୍ଣନା ସର୍ବସାଧାରଣଙ୍କ ସାକ୍ଷାତ୍ ସର୍ବସ୍ୱ ହେବା ଭଳି ଏକ ସ୍ୱତନ୍ତ୍ର ଗ୍ରନ୍ଥ । ସିଦ୍ଧାନ୍ତ ଦର୍ପଣ ବିନା ବି ଏହା ସାମନ୍ତଙ୍କୁ ଅମର କରି ରଖନ୍ତା । ସାମନ୍ତଙ୍କ କାବ୍ୟ, ବ୍ୟାକରଣ, ଅଳଙ୍କାର, ଜ୍ୟୋତିଷ ତଥା ଧର୍ମଶାସ୍ତ୍ରୀୟ ଜ୍ଞାନର ଆକରଗ୍ରନ୍ଥ 'ସିଦ୍ଧାନ୍ତଦର୍ପଣ' ତଦୀୟ ଅସାଧାରଣ ପାଣ୍ଡିତ୍ୟ ଓ ପ୍ରତିଭାର ଦ୍ୟୋତକ ହେବା ସଂଗେସଂଗେ ସମଗ୍ର ଓଡ଼ିଆ ଜାତିର ମନୀଷା ସଂବଳିତ ଗର୍ବ ଓ ଗୌରବର ଦ୍ୟୋତକ ମହାନ୍ ସାରସ୍ୱତ ସଂପଦ । ଏହାର ପ୍ରଚାର ପ୍ରସାର ଓ ରକ୍ଷଣ ଏକ ଜାତୀୟ କର୍ତ୍ତବ୍ୟ । ଏହାର ଅନୁଶୀଳନ ଏ ଜାତିକୁ ବାହାରେ ସମ୍ମାନ ଦେବ ଓ ଉଦ୍‌ବୁଦ୍ଧ କରିବ । ଏଣୁ ଏହାର ସଂସ୍କୃତ ଟୀକା ସହ ହିନ୍ଦୀ ଓ ଇଂରାଜୀ ଅନୁବାଦ ଶୀଘ୍ର ପ୍ରକାଶ କରିବା ଏ ଜାତିର କର୍ତ୍ତବ୍ୟ ଓ ସଂକଳ୍ପ ହେବା ଉଚିତ ।

ପ୍ରେସିଡେଣ୍ଟ
ଶ୍ରୀବିଦ୍ୟା ସଂସ୍କୃତି ସଂସ୍ଥାନ, ଭୁବନେଶ୍ୱର

# ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନ ଓ ଶିଳ୍ପର ଭବିଷ୍ୟତ - ଏକ ଅନୁଧାନ

ଇନ୍ଦୁଭୂଷଣ କର

ଏକବିଂଶ ଶତାବ୍ଦୀରେ ସୂଚନା ପ୍ରଯୁକ୍ତି - ବିଜ୍ଞାନ ଭଳି ଜୈବ ପ୍ରଯୁକ୍ତି ବିଜ୍ଞାନ ମଧ୍ୟ ଅତ୍ୟାଧୁନିକ ବୈଜ୍ଞାନିକ ବିଦ୍ୟା, ଯାହାଦ୍ୱାରା ଓଡ଼ିଶାର ସାମାଜିକ ତଥା ଅର୍ଥନୈତିକ ପ୍ରଗତିର ଧାରାକୁ ତ୍ୱରାନ୍ୱିତ କରିହେବ । ଜୈବ-ପ୍ରଯୁକ୍ତି ବିଜ୍ଞାନ (Science of Boitechnology) କ୍ଷେତ୍ରରେ, ଯେଉଁ ଅଭୁତପୂର୍ବ ଗବେଷଣା ପାଶ୍ଚାତ୍ୟ ଦେଶରେ ଚାଲିଛି, ତାହାର ପ୍ରଭାବ ମଧ୍ୟ ଉନ୍ନୟନଶୀଳ ଏସିଆ ମହାଦେଶରେ ପଡ଼ିଛି । ଏହି ଜୈବ ପ୍ରଯୁକ୍ତି ବିଜ୍ଞାନରେ ଶିକ୍ଷାଦେବା ପାଇଁ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଜୈବ ପ୍ରଯୁକ୍ତି ବିଜ୍ଞାନରେ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମ ପ୍ରଚଳିତ ହେଲାଣି । ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନରେ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମ, ଉତ୍କଳ ବିଶ୍ୱବିଦ୍ୟାଳୟ, ଉତ୍ତର ଓଡ଼ିଶା, ଫକୀରମୋହନ, ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ସମ୍ବଲପୁର, ଓଡ଼ିଶା କୃଷି ମହାବିଦ୍ୟାଳୟ, ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟରେ ପ୍ରବର୍ତ୍ତିତ ହୋଇଅଛି । ଏହାଛଡ଼ା ଓଡ଼ିଶାରେ ଅନ୍ୟାନ୍ୟ କେତେକ ବେସରକାରୀ ଶିକ୍ଷା ଅନୁଷ୍ଠାନରେ ମଧ୍ୟ ଏହି ଜୈବ ପ୍ରଯୁକ୍ତି ବିଦ୍ୟାର ଶିକ୍ଷା-ପାଠ୍ୟକ୍ରମ ପ୍ରବର୍ତ୍ତନ ହେବା ଦ୍ୱାରା ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନରେ ବହୁ ଯୁବ ବୈଜ୍ଞାନିକ, ସୁଦକ୍ଷ ଗବେଷକ ଓ ଜୈବ ପ୍ରଯୁକ୍ତି ଶିଳ୍ପୋଦ୍ୟୋଗୀମାନେ ଜୈବ ପ୍ରଯୁକ୍ତି ବିଜ୍ଞାନଭିତ୍ତିକ ଜୈବ ପ୍ରଯୁକ୍ତି ଶିଳ୍ପର ପ୍ରସାରର ନୂତନ ସମ୍ଭାବନା ସୃଷ୍ଟି କରିପାରିବେ । ଓଡ଼ିଶା ସରକାର ମଧ୍ୟ ଅନେକ ପ୍ରଗତିଶୀଳ ରଚନାତ୍ମକ ପ୍ରକଳ୍ପ ହାତକୁ ନେଇଛନ୍ତି । ଓଡ଼ିଶା ସରକାରଙ୍କ ବିଜ୍ଞାନ ଓ କାରିଗରି ବିଭାଗ (Science and Technology Deptt.) ଅଧୀନରେ ୨୦୦୪ ମସିହାରେ ଏକ 'ଜୈବ ପ୍ରଯୁକ୍ତି ବିଜ୍ଞାନର ସ୍ୱତନ୍ତ୍ର ସେଲ୍' ଗଠିତ ହୋଇଛି ।

ଏହି ବିଭାଗ ତରଫରୁ ଦଶମ ପଞ୍ଚବାର୍ଷିକ ଯୋଜନା ଅନ୍ତର୍ଗତ ଏକ ଉତ୍ସାହଜନକ ପ୍ରକଳ୍ପ ଚିଠାର ପ୍ରସ୍ତୁତ ହୋଇଅଛି । ତାହାର ନାମ ରଖାଯାଇଛି - Biotechnology Vision for the State of Orissa for the Tenth Five year plant - ଏହି ଚିଠା ପ୍ରସ୍ତାବରେ ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରରେ ବିକାଶ ଓ ଜୈବ ପ୍ରଯୁକ୍ତି ଭିତ୍ତିକ ଶିଳ୍ପର ପ୍ରସାର ସମ୍ପର୍କରେ ବିସ୍ତୃତ ଭବିଷ୍ୟତ ବିବରଣୀ (Road Map) ରହିଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ - ଏହି Biotechnolgy Vision Documentରେ ତାଙ୍କର ବାର୍ତ୍ତାରେ ଅଭିମତ ପ୍ରକାଶ କରି କହିଛନ୍ତି ଯେ, 'The information contained in the document will be of great value of research and development agencies as well as potential investors in the State.'



ଭୁବନେଶ୍ୱରଠାରେ ଇମଜେନେକ୍ସ, ଇଣ୍ଡିଆର ଅତ୍ୟାଧୁନିକ ଜୈବ ପ୍ରଯୁକ୍ତି ବିଜ୍ଞାନକୁ ଭାରତର ମହାମହିମ ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କାଲାମ ଉଦ୍‌ଘାଟନ କରୁଛନ୍ତି । ୨୭.୧୨.୦୫

ଏହି ଭିଜନ - ଡକ୍ୟୁମେଣ୍ଟରେ ଓଡ଼ିଶାର ଜୈବ ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରରେ ଅଧିକ ଗବେଷଣା ଓ ଶିଳ୍ପୋଦ୍ୟୋଗର ରୂପରେଖ ଲିପିବଦ୍ଧ ହୋଇଛି । ଏହି ଚିଠା କୃଷି, ସ୍ୱାସ୍ଥ୍ୟ, ପରିବେଶ, ବୈଜ୍ଞାନିକ ଶିକ୍ଷା ଓ ଗବେଷଣା ଓ ଜୈବ ପ୍ରଯୁକ୍ତି ଶିଳ୍ପର ବିକାଶ ପାଇଁ ଅତୀବ ମୂଲ୍ୟବାନ । ଏହି ଚିଠାରେ ଥିବା ପ୍ରକଳ୍ପଗୁଡ଼ିକ ଯଦି ଯଥାଯଥ କାର୍ଯ୍ୟକାରୀ ହୁଏ, ତେବେ ଓଡ଼ିଶାର ଅର୍ଥନୈତିକ ପ୍ରଗତି ସମ୍ଭବ ହେବ ବୋଲି ବହୁ ଶିକ୍ଷାବିତ୍ ଓ ଜୈବ ପ୍ରଯୁକ୍ତି ବିଦ୍ୟାର ବୈଜ୍ଞାନିକମାନଙ୍କର ଅଭିମତ । କାରଣ ଏହି Vision Documentରେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି

ପାଇଁ ନିମ୍ନଲିଖିତ ଦଶଟି ବିଭାଗର କାର୍ଯ୍ୟ ପନ୍ଥା ଉପରେ ଗୁରୁତ୍ୱ ଦିଆଯାଇଛି ।

***Thrust Areas :***

1. Inventorization, Conservation and Characterization of Bio-resource
2. Plant and Forest Biotechnology.
3. Environmental Biotechnology and Biodiversity conservation.
4. Food and Nutrition Security.
5. Fisheries and Aquaculture.
6. Medical Research and Application.
7. Disaster Management with Biotechnological Interventaion.
8. Human Resource Development.
9. Biotechnological Industries.
10. Institutional Framework and Networking.

ଉପରୋକ୍ତ ୧୦ଟି ବିଷୟରେ କେତେକ ସକାରାତ୍ମକ କାର୍ଯ୍ୟପନ୍ଥା ଗ୍ରହଣ କରିବା ପାଇଁ ଓଡ଼ିଶା ସରକାର, ଭୁବନେଶ୍ୱର ନିକଟସ୍ଥ ଅନ୍ଧାରୁଆ ଗ୍ରାମରେ ୬୨ ଏକର ପରିମିତ ସ୍ଥାନରେ ଏକ ଅତ୍ୟାଧୁନିକ ଜୈବ ପ୍ରଯୁକ୍ତି ଶିଳ୍ପ ଉଦ୍ୟାନ (Biotechnology Park) ପ୍ରତିଷ୍ଠା କରିବା ପାଇଁ ପ୍ରସ୍ତାବ ଗ୍ରହଣ କରିଛନ୍ତି । ଆନନ୍ଦର କଥା ଓଡ଼ିଶା ବାହାରୁ ବହୁ ଜୈବ ପ୍ରଯୁକ୍ତି - ବିଜ୍ଞାନର ଗବେଷକମାନେ ଓ ଶିଳ୍ପୋଦ୍ୟୋଗୀମାନେ ଓଡ଼ିଶାରେ ପୁଞ୍ଜି ବିନିଯୋଗ କରି ଜୈବ ପ୍ରଯୁକ୍ତି ଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । କାରଣ ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରରେ ପ୍ରଚୁର ସମ୍ଭାବନା ଅଛି । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେଉଛି ଯେ ଜୈବ ପ୍ରଯୁକ୍ତି ବିଜ୍ଞାନ ଭିତ୍ତିକ (Medical Biotechnology) କ୍ଷେତ୍ରରେ Imgenex India ନାମକ ଅତ୍ୟାଧୁନିକ ଗବେଷଣାଗାର ସହ ଜୈବ ପ୍ରଯୁକ୍ତି ଶିଳ୍ପ, ଭୁବନେଶ୍ୱରର ଇନ୍‌ଫୋସିଟି (Infocity) ପରିସର ମଧ୍ୟରେ ପ୍ରତିଷ୍ଠା କରିଛନ୍ତି ଆମେରିକାର କାଲିଫର୍ଣ୍ଣିଆର Sandiagoସ୍ଥିତ ଓଡ଼ିଆ ବୈଜ୍ଞାନିକ ଡଃ ସୁଜୟ ସିଂହ । ଏହା ଓଡ଼ିଶାବାସୀଙ୍କ ପକ୍ଷରେ ଗର୍ବ ଗୌରବର କଥା ଯେ, ଏହି ଅତ୍ୟାଧୁନିକ Imgenex Biotech Industryର ନୂତନ ଗୃହ ଓ ଏହାର ଅତ୍ୟାଧୁନିକ ଗବେଷଣାଗାରକୁ ଭାରତର ମହାମହିମ ରାଷ୍ଟ୍ରପତି,




ଭୁବନେଶ୍ୱରସ୍ଥିତ ଇନ୍‌ଫୋସିଟିରେ ପ୍ରତିଷ୍ଠିତ ଅତ୍ୟାଧୁନିକ ଇମଜେନେକ୍ସ, ଇଣ୍ଡିଆର ନବନିର୍ମିତ ଜୈବ ପ୍ରଯୁକ୍ତି ଶିଳ୍ପ-ସୌଧ

ଏ.ପି.ଜେ. ଅବଦୁଲ କାଲାମ ଗତ ଡିସେମ୍ବର ୨୭ ତାରିଖ ୨୦୦୫ ଅପରାହ୍ନ ୪ଟାରେ ଉଦ୍‌ଘାଟନ କରିଥିଲେ । ଓଡ଼ିଶାର ମାନ୍ୟବର ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ରାମେଶ୍ୱର ଠାକୁର ଓ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ମହାମହିମ ରାଷ୍ଟ୍ରପତିଙ୍କ ସହ ଏହି ଉଦ୍‌ଘାଟନୀ ଉତ୍ସବରେ ଉପସ୍ଥିତ ଥିଲେ । ଏହି ଉଦ୍‌ଘାଟନୀ ଉତ୍ସବରେ ଭାରତର ଓ ଭାରତ ବାହାରୁ ଆସିଥିବା ବିଶିଷ୍ଟ ବୈଜ୍ଞାନିକମାନେ ମହାମହିମ ଭାରତର ରାଷ୍ଟ୍ରପତିଙ୍କ ଉଦ୍‌ବୋଧନୀ ଭାଷଣ ଶୁଣି ବିମୁଗ୍ଧ ହୋଇଯାଇଥିଲେ । କାରଣ ରାଷ୍ଟ୍ରପତିଙ୍କ ଭାଷଣ ଜ୍ଞାନୋଦ୍ଦୀପକ ଓ ପ୍ରେରଣାଦାୟକ ଥିଲା । ରାଷ୍ଟ୍ରପତିଙ୍କ ଏହି ମନୋଜ୍ଞ ଭାଷଣ ଉପସ୍ଥିତ Imgenex Biotech Industry ଦ୍ୱାରା ଆୟୋଜକ Stem-Cell ଉପରେ ଆନ୍ତର୍ଜାତିକ ଦୁଇଦିନିଆ କର୍ମଶାଳାକୁ ଆସିଥିବା ଜୈବ ପ୍ରଯୁକ୍ତି ବିଜ୍ଞାନର ବୈଜ୍ଞାନିକମାନଙ୍କୁ ଅଭିଭୂତ କରିଥିଲା । ସେଦିନ ମହାମହିମ ରାଷ୍ଟ୍ରପତିଙ୍କ ଭାଷଣରେ କହିଥିଲେ -

'I am delighted to participate in the inauguration of the Biotech Laboratory of Imgenex India Pvt. Ltd. in Bhubaneswar. I greet the organizers, doctors, medical scientists and technologists, pharmacologists and other participants in this function. I understand that Imgenex India develops and commercializes novel reagents for the scientific study of human biology and disease and for production of new diagnostic assays which includes reagents like antibodies, gene and protein expression systems for studies in functional genomics.'



ଭୁବନେଶ୍ୱରଠାରେ ଭାରତର ମହାମହିମ ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କାଲାମ, ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଓ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସହ ଜୈବ ପ୍ରଯୁକ୍ତି ବିଦ୍ୟାର ଯୁବ ବୈଜ୍ଞାନିକ ଡଃ ସୁଜୟ ସିଂହ

ସେଦିନ ଉପରୋକ୍ତ Imgenex, Biotech Industryର ଅତ୍ୟାଧୁନିକ ବୈଜ୍ଞାନିକ ଗବେଷଣାଗାର ଦେଖି ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ମଧ୍ୟ ଗଭୀର ସନ୍ତୋଷ ପ୍ରକାଶ କରିଥିଲେ ଓ ଏହାର ପ୍ରତିଷ୍ଠାତା ବୈଜ୍ଞାନିକ ଡଃ ସୁଜୟ ସିଂହଙ୍କର ଏହି ପ୍ରକାର ସାହସିକ ଶିଳ୍ପୋଦ୍ୟୋଗର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ ।

ସେଦିନ ଏହି ଓଡ଼ିଶା ପ୍ରବାସୀ ଯୁବ ବୈଜ୍ଞାନିକ ଡଃ ସୁଜୟ ସିଂହଙ୍କର ଜଣେ ସୁହୃଦ ଭାବରେ ଏବଂ ଆନ୍ତର୍ଜାତିକ କର୍ମଶାଳାର ଜଣେ ଆୟୋଜକ ଭାବରେ ମୁଁ ସେଠାରେ ଉପସ୍ଥିତ ଥାଇ ଅନୁଭବ କରିଥିଲି ଯେ ଓଡ଼ିଶାରେ ସୂଚନା ଓ ପ୍ରଯୁକ୍ତି ଶିଳ୍ପର ବିକାଶ ଛଡ଼ା ଜୈବ ପ୍ରଯୁକ୍ତି ଭିତ୍ତିକ ଶିଳ୍ପ ଓ ଗବେଷଣା ମାଧ୍ୟମରେ ହିଁ ଓଡ଼ିଶାରେ କର୍ମନିଯୁକ୍ତି କ୍ଷେତ୍ରର ପରିସର ବୃଦ୍ଧି ହୋଇପାରିବ । ଏହାଦ୍ୱାରା ଓଡ଼ିଶାର ସାମାଜିକ ଓ ଅର୍ଥନୈତିକ ସମୃଦ୍ଧିକୁ ଦ୍ରୁତରୁ ଦ୍ରୁତତର କରାଯାଇପାରିବ । ଭାରତରେ ଏକଦା ସୁପରିଚିତ ଉନ୍ନତ କଳାର ଦେଶ ଏହି ଓଡ଼ିଶା ପ୍ରଦେଶ ଏକ ସମୃଦ୍ଧିଶାଳୀ ଉନ୍ନତ ବିତ୍ତଶାଳୀ ପ୍ରଦେଶ ଭାବରେ ତାହାର ସ୍ୱତନ୍ତ୍ର ପରିଚିତି ପୁନର୍ଲାଭ କରିପାରିବ ଓ ଆଗାମୀ ଦିନରେ ଓଡ଼ିଶାରେ ଜୈବ ପ୍ରଯୁକ୍ତି ବିଜ୍ଞାନ ଓ ଶିଳ୍ପର ବିକାଶ ଖୁବ୍ ଉଜ୍ଜ୍ୱଳ ହେବ ବୋଲି ସେଦିନ ମୋର ହୃଦବୋଧ ହୋଇଥିଲା ।

ପୂର୍ବତନ ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ
ଶ୍ରଦ୍ଧାନିବାସ, ୧୫୯୫
ଭକ୍ତମଧୁ ନଗର, ଭୁବନେଶ୍ୱର - ୭୫୧୦୩୦



ଇମଜେନେକ୍ସ, ଇଣ୍ଡିଆ ବାୟୋଟେକ୍ ଶିଳ୍ପର ଉଦ୍‌ଘାଟନୀ ଉତ୍ସବରେ ଭାରତର ମହାମହିମ ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କାଲାମ, ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଓ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ

# ମକର ପର୍ବ

ପ୍ରଫୁଲ୍ଲ ପଟ୍ଟନାୟକ

**ସୌ**ରମାନ ବର୍ଷର ମକର ମାସର ପ୍ରଥମ ଦିନ ମକର ସଂକ୍ରାନ୍ତି ନାମରେ ଅଭିହିତ । ପ୍ରାୟ ସର୍ବାଧିକ ଭୂଭାଗ ବିଶିଷ୍ଟ ଉତ୍ତର ଗୋଲାର୍ଦ୍ଧରେ ଏହି ଦିବସରୁ ଦିନ ବୃଦ୍ଧି ପାଏ । ସଭ୍ୟତା ଓ ସୃଷ୍ଟିର ପ୍ରାକ୍କାଳରେ ଉତ୍ତର ମେରୁ ଅଞ୍ଚଳରେ କେବଳ ମନୁଷ୍ୟ ବାସ କରୁଥିଲେ ଏବଂ ସେ କାଳରେ ଏହି ଦିବସରେ ଷଟ୍‌ମାସ ବ୍ୟାପୀ ରାତ୍ରି ପରେ ଦିବାରମ୍ଭ ହେଉଥିଲା । ପୁନଶ୍ଚ ଏହା ଦେବତାମାନଙ୍କ ଦିବାରମ୍ଭ ତିଥି । ସର୍ବୋତଭାବେ ଏହା ସର୍ବବାଦୀ ସମ୍ମତ ସାର୍ବଜନୀନ ଉତ୍ସବ । କେବଳ ଭାରତରେ ଏହା ଜାତୀୟ ପର୍ବ ନୁହେଁ, ସମଗ୍ର ପୃଥିବୀରେ ପ୍ରମୁଖ ଉତ୍ସବ ରୂପେ ପାଳିତ ହୁଏ ।

ସମସ୍ତ ପର୍ବ ଏବଂ ଉତ୍ସବର ମୂଳାଧାର ହେଉଛନ୍ତି ପରମାତ୍ମାଙ୍କ ଭୌତିକ ପ୍ରତିନିଧି ସୂର୍ଯ୍ୟ । ତାଙ୍କୁ କେନ୍ଦ୍ର କରି ପର୍ବମାନଙ୍କର ସୃଷ୍ଟି ହୋଇଛି । ସୂର୍ଯ୍ୟଙ୍କର ପ୍ରତୀୟମାନ ଉତ୍ତରାୟଣ ଓ ଦକ୍ଷିଣାୟନ ଗତି ବିଷୁବ ରେଖାରୁ ଆରମ୍ଭ ହୋଇ ଉତ୍ତରସ୍ଥ କର୍କଟ ଓ ଦକ୍ଷିଣସ୍ଥ ମକରକ୍ରାନ୍ତି ପର୍ଯ୍ୟନ୍ତ ହୋଇଥାଏ । ଏହି ଗତି ପର୍ଯ୍ୟାୟରେ ତାଙ୍କର ବିଷୁବ, କର୍କଟ ଓ ମକର ଅବସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ - ଏହି ଅବସ୍ଥାନଗୁଡ଼ିକୁ ଭିତ୍ତିକରି ପ୍ରମୁଖ ଉତ୍ସବମାନ ପାଳିତ ହୋଇଥାଏ । ବିଷୁବରେ ସୂର୍ଯ୍ୟଙ୍କର ଦ୍ୱିବାର ଅବସ୍ଥାନ ମେଷ ଓ ତୁଳା ସଂକ୍ରାନ୍ତିରେ ହୋଇଥାଏ । ପୁନଶ୍ଚ କର୍କଟ ଓ ମକର ସଂକ୍ରାନ୍ତିରେ ସେ ଅବସ୍ଥାନ କରିଥାନ୍ତି । ଘଟିକା ଯନ୍ତ୍ରର ଦୋଳକ ସଦୃଶ ତାଙ୍କର ପ୍ରତୀୟମାନ ଗତି ସଂଘଟିତ ହେଉଥିବାରୁ ଉକ୍ତ ଗତି ଦୋଳନ ଗତି ନାମରେ ବିଦିତ । ତେଣୁ ବିଷୁବ ତଥା କର୍କଟ ଓ ମକର ଅବସ୍ଥାନକାଳୀନ ଉତ୍ସବ ଦୋଳୋତ୍ସବ ନାମରେ ନାମିତ । ଏହି ପରିପ୍ରେକ୍ଷୀରେ ଦୋଳ ଓ ଦୋଳାକୃତି ରଥ ଭିତ୍ତିକ ଯାତ୍ରାମାନ ଦୋଳୋତ୍ସବ ଭାବେ ମାନ୍ୟତା ଲାଭ କରେ । ମେଷ ଓ ତୁଳା ସଂକ୍ରାନ୍ତିରେ ବିଷୁବ ଅବସ୍ଥାନ କାଳରେ ଯଥାକ୍ରମେ ବାସନ୍ତିକ ପୁଷ୍ପଦୋଳ ଓ ଶାରଦୀୟ ଦୋଳନ ବା ଝୁଲଣ ଉତ୍ସବ ଅନୁଷ୍ଠିତ ହୋଇଥାଏ । କର୍କଟ ଓ ମକର ଅବସ୍ଥାନ ସମୟରେ ଗୁପ୍ତିଚାଖ୍ୟ ଓ ମାଘ ସପ୍ତମୀ ସୂର୍ଯ୍ୟ ରଥୋତ୍ସବ ଯଥାକ୍ରମେ ପାଳିତ ହୁଏ । ସୂର୍ଯ୍ୟ ଦେବତାଙ୍କର କ୍ରମିକ ରୂପାନ୍ତର ବିଷ୍ଣୁ ଓ କୃଷ୍ଣ ହୋଇଥିବାରୁ ବିଶେଷତଃ ବିଷ୍ଣୁ ଏବଂ କୃଷ୍ଣଙ୍କର ସର୍ବବାଦୀ ସମ୍ମତ ସର୍ବଶେଷ ପରିପ୍ରକାଶ ଦାରୁବ୍ରହ୍ମ ସ୍ୱରୂପୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଏହି ଦୋଳୋତ୍ସବମାନ ଆଚରିତ ହୋଇଥାଏ । ମାଘ ସପ୍ତମୀରେ ଶ୍ରୀମନ୍ଦିର ପରିସରରେ ସୌର ରଥୋତ୍ସବ ପାଳିତ ହୁଏ ।

ସୂର୍ଯ୍ୟଙ୍କର ବିଷୁବ ଅବସ୍ଥାନକାଳୀନ ରଥୋତ୍ସବ ବା ଦୋଳଯାତ୍ରା ମୁଖ୍ୟ ହେଲେ ହେଁ ମକର ଅବସ୍ଥାନ କାଳୀନ ଦୋଳ ବା ରଥୋତ୍ସବ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ମହିମାନ୍ୱିତ । ପୃଥିବୀର ସର୍ବାଧିକ ଭୂଭାଗ ବିଶିଷ୍ଟ ଉତ୍ତର ଗୋଲାର୍ଦ୍ଧରେ ଦିବା ବୃଦ୍ଧି ଘଟୁଥିବାରୁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତେଣୁ ଏହା କେବଳ ଭାରତର ପ୍ରମୁଖ ଉତ୍ସବ ନୁହେଁ, ବରଂ ଏହା ଏକ ଆନ୍ତର୍ଜାତୀୟ ମହିମାମଣ୍ଡିତ ଉତ୍ସବ । କୃଷି ପ୍ରଧାନ ଭାରତରେ ଏହା ଶାଲ୍ୟୋଦନ ବା ନବାନ୍ନ ଉତ୍ସବ । ଶରତ ଋତୁରେ ଆଶୁ ଧାନ୍ୟ, ବସନ୍ତରେ ଆମ୍ର ଆଦିରେ ନବାନ୍ନ ଉତ୍ସବ ଅନୁଷ୍ଠିତ ହୋଇଥାଏ, ମାତ୍ର ଏହି ସଂକ୍ରାନ୍ତିରେ ଶାଳିଧାନ୍ୟର ସମାରୋହରେ ନବାନ୍ନ ପାଳିତ ହେଉଥିବାରୁ ଶାଲ୍ୟୋଦନ ସଂକ୍ରାନ୍ତି ନାମରେ ଏହା ଯଥାର୍ଥ ଭାବରେ ନାମିତ । ଶାଳିଧାନ୍ୟ ସହ ତିଳମଧ ନୂତନ ଭାବରେ ଭକ୍ଷିତ ହେଉଥିବାରୁ ଏହାକୁ ତିଳସଂକ୍ରାନ୍ତି ବୋଲି କୁହାଯାଏ । ଏହି ଉତ୍ସବ ସାଧାରଣତଃ ଜାନୁଆରୀ ମାସର ୧୩/୧୪ ତାରିଖରେ ପାଳିତ ହୁଏ । ଜନଶ୍ରୁତି ଅନୁଯାୟୀ ମକର ଦିନ ହୁଏ ବକର । ଅର୍ଥାତ୍ ଉକ୍ତ ସଂକ୍ରାନ୍ତିଠାରୁ ସୂର୍ଯ୍ୟଙ୍କର ବକ୍ର ଗତି ଆରମ୍ଭ ହୁଏ ।

ଚାନ୍ଦମାନ ତଥା ସୌରମାନ ପର୍ବ ନିର୍ବିଶେଷରେ ମକର ସଂକ୍ରାନ୍ତି ଉତ୍କଳର ଆରାଧ୍ୟ ଦେବତା ଜଗନ୍ନାଥ ଓ ଲିଙ୍ଗରାଜଙ୍କର ପର୍ବ ରୂପେ ମାନ୍ୟତା ପୂର୍ବକ, ସମଗ୍ର ପୁରପଲ୍ଲୀରେ ସାର୍ବଜନୀନ ଉତ୍ସବ ଭାବରେ ପାଳିତ ହୁଏ । ଉଭୟ ଦେବମନ୍ଦିରରେ ଦେବାର୍ଚ୍ଚନ ମଧ୍ୟରେ ଏହା ଅନୁଷ୍ଠିତ ହୋଇଥାଏ । ଲିଙ୍ଗରାଜ ମନ୍ଦିରରେ ଏହା 'ଘୃତକମ୍ବଳ' ଉତ୍ସବ ନାମରେ ନାମିତ ବା ଖ୍ୟାତ । ଜଳ ସହ ଘୃତର ମିଶ୍ରଣକୁ ଘୃତକମ୍ବଳ କୁହାଯାଏ । ଶୀତକାଳରେ ଘୃତକମ୍ବଳର ଅପରିହାର୍ଯ୍ୟ ଆବଶ୍ୟକତା ଦୃଷ୍ଟିରୁ 'ଯଥା ଦେହେ, ତଥା ଦେବେ' ନୀତିରେ ଏହା ଦେବାର୍ଚ୍ଚନ ବିଧିର ଅନ୍ତର୍ଭୁକ୍ତ । ଏହି ପର୍ବପାଳନ ପ୍ରସଙ୍ଗରେ ଦେବ ଦେବ ସଦାଶିବ ଜଗତ୍‌ଜନନୀ ଦେବୀ ପାର୍ବତୀଙ୍କୁ କହିଛନ୍ତି -

'ଶୃତାଦେବି ! ମହାପୂର୍ଣ୍ୟଂ
ଦେବସ୍ୟ ଘୃତକମ୍ବଳମ୍ ।
ତତ୍ର କୁର୍ଯ୍ୟାତ୍ ବିଭୋଲିଙ୍ଗେ
ମହୋତ୍ସବ ସମନ୍ୱିତମ୍ ।'

ଏହି ପର୍ବରେ ଯଥାବିଧି ଦେବାର୍ଚ୍ଚନ ପରେ ନୂଆ ଶାରଦ ଧାନର ଅରୁଆ ଚାଉଳ, ନୂଆଗୁଡ଼ ମାଘିରାଶି, ପାଚିଲା କଦଳୀ, ଛେନା, ନଡ଼ିଆ ଆଦିର ସଂଯୋଗରେ ପ୍ରସ୍ତୁତ ମକର ଚାଉଳର ନୈବେଦ୍ୟ ଠାକୁରଙ୍କୁ ଅର୍ପିତ ହୁଏ ।

ମକର ସଂକ୍ରାନ୍ତିରେ ଶ୍ରୀଜଗନ୍ନାଥଙ୍କ ସକାଳଧୂପ ଶେଷରେ ମକର ଉତ୍ସବ ପାଳିତ ହୁଏ । ବାରଦେବତାଙ୍କର ଏହି ପର୍ବ ଉପଲକ୍ଷେ ପର୍ବ ପାଳନର ଆରମ୍ଭରେ ଯାତ୍ରାଙ୍ଗୀ ମହାସ୍ନାନ କରାଯାଏ । ସ୍ନାନ ପରେ ଠାକୁରଙ୍କୁ ଫୁଲଚନ୍ଦନ ଓ ବସ୍ତ୍ରଲାଗି ହୁଅନ୍ତି । ଏହାକୁ ମକର ବେଶ କୁହାଯାଏ - ଏହି ବେଶରେ ତିନିଠାକୁର ପୁଷ୍ପଚୂଳ ପିନ୍ଧିଥାନ୍ତି । ନୀଳାଦ୍ରୀ ମହୋଦୟରେ ବର୍ଣ୍ଣିତ ଅଛି ଯେ -

ମହାସ୍ନାନଂ ହରେଃ କାର୍ଯ୍ୟଂ
ଲେପୟେ ଚନ୍ଦନାଦିନା
ନବାଂ ଶୁକ୍ଲୈରତଂ କାରୈର୍ଭୂଷୟେତ୍
ପରମେଶ୍ୱରମ୍ ।

ଏହି ଉତ୍ସବ ପର୍ଯ୍ୟାୟରେ ମକର ବେଢ଼ା ମହାସମାରୋହରେ ଅନୁଷ୍ଠିତ ହୁଏ । ଠାକୁରଙ୍କ ସିଂହାସନ ପରିକ୍ରମା ବିଧି ମଧ୍ୟ ନୀଳାଦ୍ରୀ ମହୋଦୟ ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି । ନୂଆ ପିଙ୍ଗନୀରେ ନୂଆ ଚାଉଳ, କ୍ଷୀର, ଗୁଡ଼, ଆଖୁ, କଦଳୀ, ନଡ଼ିଆ, ଗୋଲମରିଚ, କର୍ପୂରାଦିରେ ପ୍ରସ୍ତୁତ ମକର ଚାଉଳ ଠାକୁରଙ୍କଠାରେ ଭୋଗ କରାଯାଏ ।

ଏହି ରୀତିରେ ଉତ୍କଳର ପୁରପଲ୍ଲୀରେ ସର୍ବତ୍ର ମକର ଚାଉଳ ପ୍ରସ୍ତୁତ କରି ଲୋକେ ଇଷ୍ଟ ଦେବତା ଓ ଦେବଦେବୀଙ୍କୁ ନୈବେଦ୍ୟ ଅର୍ପଣ କରନ୍ତି ।

ଏତଦ୍‌ବ୍ୟତୀତ ମୟୂରଭଂଜ ଓ ସିଂହଭୂମିର ଓଡ଼ିଆମାନେ ମକର ସଂକ୍ରାନ୍ତିକୁ ଶ୍ରେଷ୍ଠ ପର୍ବ ରୂପେ ପାଳନ କରନ୍ତି ଏବଂ ଆନୁଷଙ୍ଗିକ ଭାବେ ଅଗ୍ନି ଉତ୍ସବ ଅନୁଷ୍ଠିତ ହୋଇଥାଏ - ଆମ ରାଜ୍ୟ ଖୋରଧା ନିକଟସ୍ଥ ହଟିକେଶ୍ୱର ମହାଦେବଙ୍କ ନିକଟରେ ବିରାଟ ମେଳାର ଆୟୋଜନ କରାଯାଇ ମକର ପର୍ବ ମହାସମାରୋହରେ ପାଳିତ ହୁଏ ।

ଏହି ମକର ପର୍ବ ଆର୍ଯ୍ୟ ପର୍ବର ବିଶେଷ ମାନ୍ୟତା ଲାଭ କରିଥିଲେ ହେଁ ଆଦିବାସୀ ସଂପ୍ରଦାୟର ଏହା ଏକ ମୁଖ୍ୟ ପର୍ବ ରୂପେ ପାଳିତ ହୋଇଥାଏ । ମୟୂରଭଂଜର କୋହ୍ଲମାନେ ଏହାକୁ ମାଘେ ପର୍ବ ନାମରେ ଷଟ୍ ଦିବସ ବ୍ୟାପୀ ଉତ୍ସବ ରୂପେ ଗୀତ ବାଦ୍ୟର ସମାରୋହ ମଧ୍ୟରେ ପାଳନ କରନ୍ତି । ଏଥିରେ ଅବିବାହିତ ଯୁବକ ଯୁବତୀଙ୍କ ନୃତ୍ୟଗୀତର ଆସର ମଧ୍ୟରେ ନିଜକୁ ହଜାଇ ଦିଅନ୍ତି । ପର୍ବର ପ୍ରଥମଦିନ ଗାଉମାହାରା ବା ଗାଉଲେରେ କୋହ୍ଲ ନରନାରୀମାନେ ଘରଦ୍ୱାର ନିର୍ମଳ କରି, ନୂଆ ଲୁଗା ପିନ୍ଧି ଠାକୁରାଣୀଙ୍କୁ ପୂଜା କରି ନୃତ୍ୟ ଗୀତରେ ମାତନ୍ତି । ଦ୍ୱିତୀୟ ଦିନ 'ଅତେହିଲି'ରେ ଘରଦ୍ୱାର ଲିପି, ଧୂଆ ବିରି ଚାଉଳ ଓ ପାନୀୟ ନୈବେଦ୍ୟ ଦେଇ ନୃତ୍ୟ କରନ୍ତି । ତୃତୀୟ ଦିନ ମାଘେଗୁରି ବା ମାଘେ ବଙ୍ଗାରେ ଅବିବାହିତ ଯୁବକ ଯୁବତୀ ନୃତ୍ୟର ଛଳରେ ହାସ୍ୟ ପରିହାସ ବିନିମୟ କରିଥାନ୍ତି । ଚତୁର୍ଥ ଦିବସର ସାପାକିରେ ଠାକୁରାଣୀଙ୍କ ନିକଟରେ କୁକୁଡ଼ା ବଳି ଦିଆଯାଏ । ପଞ୍ଚମ ଦିନର ରିଡ଼ରାଓ୍ୱାଁରେ ଧୂଆ ଫାଳ ବିରି ଠାକୁରାଣୀଙ୍କଠାରେ ଭୋଗ ଲାଗେ । ଶେଷ ବା ଷଷ୍ଠ ଦିନର ଉତ୍ସବ ହରବାଘେୟାରେ ପ୍ରତିଘରୁ ସଂଗୃହିତ ଚାଉଳ ପନିପରିବାରେ ବଣଭୋଜି ହୁଏ । ରନ୍ଧା ହୋଇଥିବା ଭାତ ମାଂସ ତରକାରୀ ବାଘେଇ ଦେବତାଙ୍କୁ ନୈବେଦ୍ୟ ଦିଆଯାଏ । ସେମାନଙ୍କର ବିଶ୍ୱାସ ବାଘେଇ ଦେବତାଙ୍କୁ ସନ୍ତୁଷ୍ଟ କଲେ ଗୃହପାଳିତ ପଶୁଙ୍କୁ ବାଘ ଆକ୍ରମଣ କରିବ ନାହିଁ ।

ଉତ୍ତର ଭାରତରେ ଏହି ମକର ପର୍ବ ଦଧି ମନ୍ଥନ ବ୍ରତ ରୂପେ ଆଚରିତ ହୁଏ । ଏହି ପରିପ୍ରେକ୍ଷୀରେ ଏହି ସଂକ୍ରାନ୍ତିର ନାମ ମଧ୍ୟ 'ଦଧି ସଂକ୍ରାନ୍ତି' । ବ୍ରହ୍ମାଣ୍ଡ ପୁରାଣ ଅନୁଯାୟୀ ଦ୍ରୋଣାଚାର୍ଯ୍ୟଙ୍କର ସହଧର୍ମିଣୀ 'କୃପୀ' ସନ୍ତାନ କାମନା ଦୃଷ୍ଟିରୁ ଗୋ-ସେବା କରୁଥିବା ସମୟରେ 'ଦୁର୍ବାସା' ଋଷିଙ୍କର ସେବା ସୂଚାରୁ ରୂପେ ସଂପାଦନ କରିଥିବାରୁ ତାଙ୍କୁ ଦଧିମନ୍ଥନ ବ୍ରତ ପାଳନ ପାଇଁ ଉପଦେଶ ପ୍ରଦାନ କରିଥିଲେ । କାରଣ ଏହି ବ୍ରତ ପାଳନର ଫଳସ୍ୱରୂପ ଯଶୋଦା ଭଗବାନ କୃଷ୍ଣଙ୍କୁ ପୁତ୍ର ରୂପେ ଲାଭ କରିଥିଲେ, ଏଣୁ ଏହି ବ୍ରତର ପାଳନ ନିମନ୍ତେ ପୁଷ୍ପ ଚନ୍ଦନ ସିନ୍ଦୂର ଶୋଭିତ ଦଧିଭାଣ୍ଡ ସହ କୃଷ୍ଣ, ଯଶୋଦାଙ୍କ ମୂର୍ତ୍ତି ପୂଜା କରାଯାଇ କୃଷ୍ଣଲୀଳାମାନ କରାଯାଏ ।

ବଙ୍ଗଳାରେ ଏହି ପର୍ବରେ ସ୍ତ୍ରୀଲୋକମାନେ ହସ୍ତରେ ଦୁର୍ବାଧାରଣ ଓ 'ବାଦନ ପୋରି' ଉଚ୍ଚାରଣ ପୂର୍ବକ ବାଉନଗୁଣ ଧନ ବୃଦ୍ଧିକାମନାରେ ଭଣ୍ଡାର ପରିକ୍ରମା କରନ୍ତି । ଗଙ୍ଗାସାଗରରେ ଏହି ଦିବସରେ ପୁଣ୍ୟାର୍ଜନ ପାଇଁ ତୀର୍ଥସ୍ଥାନ ଓ ମେଳା ହୁଏ । ରାଜସ୍ଥାନ, ଉତ୍ତରପ୍ରଦେଶ, ମଧ୍ୟଭାରତରେ ମଧ୍ୟ ଅନ୍ନ, ବସ୍ତ୍ର, ତିଳ ମିଷ୍ଟାନ୍ନ ଆଦି ବଣ୍ଟନ କରାଯାଏ ।

ଦକ୍ଷିଣ ଭାରତରେ ଏହି ପର୍ବପାଳନର ଗୁରୁତ୍ୱ ଅଧିକ ଏବଂ ଏହା ପୋଙ୍ଗଲ ପର୍ବ ନାମରେ ପରିଚିତ । ତ୍ରିଦିବସ ବ୍ୟାପୀ ଏହି ଉତ୍ସବ ନବବସ୍ତ୍ର ପରିଧାନପୂର୍ବକ ମହାସମାରୋହରେ ପାଳିତ ହୋଇଥାଏ । କାରଣ ଦକ୍ଷିଣ ଭାରତରବାସୀଙ୍କର ଏହା ନବବର୍ଷ ଉତ୍ସବ ।

କେବଳ ଭାରତରେ ନୁହେଁ ପୃଥିବୀର ଅନ୍ୟାନ୍ୟ ଦେଶରେ ମଧ୍ୟ ସୂର୍ଯ୍ୟଙ୍କର ଏହି ଉତ୍ତରାୟଣ ପର୍ବପାଳିତ ହୋଇଥାଏ । ରୋମାନମାନେ ଏହି ପର୍ବରେ ଖଜୁରି ଆଦି ସୁମିଷ୍ଟ ଫଳ ବିତରଣ

କରନ୍ତି ଏବଂ ଇହୁଦୀମାନେ ଅଙ୍ଗୁର ମନାକା ଆଦି ଫଳ ପ୍ରଦାନ ପୂର୍ବକ ବନ୍ଧୁ ସମ୍ଭାଷଣ କରିଥାନ୍ତି । ଏହି ପରିପ୍ରେକ୍ଷୀରେ ବିଚାର କଲେ ମକର ସଂକ୍ରାନ୍ତି ଏକ ସାର୍ବଜନୀନ ପ୍ରମୁଖ ପର୍ବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ମାତ୍ର ଉତ୍କଳୀୟ ଧର୍ମଧାରାରେ ଏହି ପର୍ବର ବୈଶିଷ୍ଟ୍ୟ ସମ୍ପୂର୍ଣ୍ଣ ଭିନ୍ନ - କାରଣ ଉତ୍କଳୀୟ ସଂସ୍କୃତି ଓ ଧର୍ମଧାରାର କେନ୍ଦ୍ରବିନ୍ଦୁ ହେଉଛନ୍ତି ପରମ କାରୁଣିକ ପ୍ରଭୁ ଜଗନ୍ନାଥ - ସମସ୍ତ ହିନ୍ଦୁ ପର୍ବପର୍ବାଣୀର ଉତ୍ସ ହେଉଛନ୍ତି - ସେହି ଜଗନ୍ନାଥ- ତେଣୁ ଜଗନ୍ନାଥ ଧର୍ମ ଓ ସଂସ୍କୃତି ବିଶ୍ୱର ସକଳ ଧର୍ମ ମତବାଦକୁ ଉଦାର ହୃଦୟରେ ଗ୍ରହଣ କରିଆସିଛି - ଏଣୁ ସକଳ ଶକ୍ତିର ଆଧାର ସୂର୍ଯ୍ୟ ହିଁ ଜଗନ୍ନାଥ । ସୌର ଉପାସନାର ପରମ୍ପରାରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଓ ବୈଶିଷ୍ଟ୍ୟର ପ୍ରତୀକ ହେଉଛି ମକର ପର୍ବ ବା ମକର ସଂକ୍ରାନ୍ତି । ଏହି ମହାନ ପର୍ବ ବିଶ୍ୱର ସମସ୍ତ ନରନାରୀମାନଙ୍କ ପାଇଁ ମଙ୍ଗଳମୟ ହେଉ ଏବଂ ମକର ସଂକ୍ରାନ୍ତି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପ୍ରାଣକୁ ଶାନ୍ତି, ମୈତ୍ରୀ, ପ୍ରୀତି ଓ ସଦ୍ଭାବନାରେ ଉଦ୍‌ବୁଦ୍ଧ କରୁ, ଏହା ହିଁ ଆଜିର ପବିତ୍ର ଦିବସରେ ଏକାନ୍ତ କାମ୍ୟ -

‘ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା’ କଶ୍ଚିତ ଦୁଃଖଭାଗଭବେତ୍ ।’

ବଳଭଦ୍ରଗଳି
ପୁରୀ

# ଭାଙ୍ଗିଲେ ଶାସନ ଅରାଜ

ମହେନ୍ଦ୍ର କୁମାର ଘଡେଇ

ଢଙ୍ଗର ଢଙ୍ଗର ଢଙ୍ଗର ଢଙ୍ଗ
ତ୍ରିରଙ୍ଗା ପତାକା ତିନୋଟି ରଙ୍ଗ
ପତାକା ଉଡୁଛି ଆଗରେ,
କୋଟିଏ ହୃଦୟ ଗୋଟିଏ କରିକି
କହୁଛି ସଭିଏଁ ଜାଗରେ ॥

ଚଙ୍ଗର ଚଙ୍ଗର ଚଙ୍ଗର ଚଙ୍ଗ
ଆମରି ହାତରେ ଆମରି ମଙ୍ଗ
ମଙ୍ଗ ଧରାଇଛି କିଏରେ,
ଅହିଂସା ମନ୍ତ୍ରରେ ଦେଶ ଗଢ଼ିଅଛି
ଜାତିର ଜନକ ସିଏରେ ॥

ଟଙ୍ଗର ଟଙ୍ଗର ଟଙ୍ଗର ଟଙ୍ଗ
କୀରତି ଆମରି ଜାତିର ଅଙ୍ଗ
ମାଖିବା ରଙ୍ଗକୁ ସେଥିରେ,
ଦେଶ ଭକ୍ତ ହୋଇ ଆଦର୍ଶ ପାଳିବା
ନାମ ଲେଖିଯିବା ପୋଥିରେ ॥

ସଙ୍ଗର ସଙ୍ଗର ସଙ୍ଗର ସଙ୍ଗ
ଦେଶକୁ ଅଡୁଆ ଶାସନ ଭଙ୍ଗ
ଭାଙ୍ଗିଲେ ଶାସନ ଅରାଜ,
ଭେଦାଭେଦ ଭୁଲି ମଇତ୍ରୀ ଭାବରେ
ଚଳିଲେ ମିଳିବ ସ୍ୱରାଜ ॥

ତିଲଙ୍ଗ, ପୋ- ହଳଦିଆ
ନିଶ୍ଚିନ୍ତକୋଇଲି, କେନ୍ଦ୍ରାପଡ଼ା- ୭୫୪୨୦୭

## ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମଦିବସ ଉପଲକ୍ଷେ :

# ଭାରତର ପଥପ୍ରାନ୍ତେ ସ୍ୱାମୀ ବିବେକାନନ୍ଦ

ସୌରୀବନ୍ଧୁ କର

**କୁ**ହାଯାଏ ଯେ, 'ଯେଉଁ ସନ୍ନ୍ୟାସୀ ସଦାସର୍ବଦା ଭ୍ରମଣ କରୁଥାନ୍ତି ସେ ପବିତ୍ର ଓ ଯେଉଁ ନଦୀ ପ୍ରବାହିତ ତାହା ଶୁଦ୍ଧ ।' ୧୮୮୮ ମସିହାରେ ସ୍ୱାମୀ ବିବେକାନନ୍ଦ ବରାହନଗର ଆଶ୍ରମ ପରିତ୍ୟାଗ କରି କପର୍ଦ୍ଦକ ଶୂନ୍ୟ ବୁଲା ସନ୍ନ୍ୟାସୀ ଭାରତ ପର୍ଯ୍ୟଟନ କରିବାକୁ ବାହାରିଲେ । ହାତରେ ଗୋଟିଏ ଦଣ୍ଡ, କମଣ୍ଡଳୁ ଏବଂ ତାଙ୍କର ଦୁଇଟି ପ୍ରିୟ ପୁସ୍ତକ- ଶ୍ରୀମଦ୍ ଭଗବଦ୍ ଗୀତା ଓ ଇମିଟେସନ୍ ଅଫ୍ କ୍ରାଏଷ୍ଟ ।

ସେ ପ୍ରଥମେ ଗଲେ ବାରଣାସୀ ଯାହା ଆଲୋକର ସହର ଓ ପ୍ରାଚୀନ ଭାରତୀୟ ସଂସ୍କୃତିର ପ୍ରାଣକେନ୍ଦ୍ର ଭାବରେ ଜଣାଶୁଣା । ତାଙ୍କର ଏହି ଯାତ୍ରା ସମୟରେ ସେ ବହୁ ସାଧୁ, ସନ୍ଥ ଓ ଗବେଷକମାନଙ୍କୁ ସାକ୍ଷାତ କରିଥିଲେ । ଦିନେ ସେଠାରେ ଥିବା ଦୁର୍ଗାମନ୍ଦିର ପରିଦର୍ଶନ ସମୟରେ ତାଙ୍କୁ ଦଳେ ମାଙ୍କଡ଼ ଆକ୍ରମଣ କଲେ । ସେ ମାଙ୍କଡ଼ମାନଙ୍କର ଦୌରାତ୍ମ୍ୟରୁ ରକ୍ଷା ପାଇବାକୁ ଦୌଡ଼ିବାକୁ ଆରମ୍ଭ କଲାବେଳେ ଜଣେ ବୃଦ୍ଧ ସନ୍ନ୍ୟାସୀ ବଡ଼ପାଟିରେ ଚିତ୍କାର କରି କହିଲେ, 'ତୁମେ ସେହି ପଶୁମାନଙ୍କର ସମ୍ମୁଖୀନ ହୁଅ ।' ସ୍ୱାମୀଜୀ ସ୍ଥିର ହୋଇ ଠିଆ ହେଲେ ଏବଂ ବେଖାତିର ଭାବରେ ସେହି ପଶୁମାନଙ୍କୁ ଚାହିଁଲେ । ସେମାନେ ଅତି ଦ୍ରୁତଗତିରେ ସେଠାରୁ ପଳାୟନ କଲେ । ପରବର୍ତ୍ତୀ କାଳରେ ଆମେରିକାରେ ଭାଷଣ ଦେବାବେଳେ ସେ ତାଙ୍କର ଏହି ଅନୁଭୂତିକୁ ଶ୍ରୋତାମାନଙ୍କୁ କହି ସମସ୍ତ ପ୍ରକାର ବିପଦକୁ ମୁକାବିଲା କରିବାକୁ କହିଥିଲେ ଏବଂ ସମସ୍ୟାଠାରୁ ପଳାଇ ନଯିବାକୁ ଉପଦେଶ ଦେଇଥିଲେ । ସ୍ୱାମୀ ବିବେକାନନ୍ଦ ତାଙ୍କ ଜୀବନର ଉଦ୍ଦେଶ୍ୟ କ'ଣ ତାହା ଜାଣିଥିଲେ ଏବଂ ନିଜ ଭିତରେ ଅଫୁରନ୍ତ ଶକ୍ତି ଅନୁଭବ କରିଥିଲେ । ସେ ବନାରସ ତ୍ୟାଗ କରିବା ସମୟରେ ଉଦ୍‌ଘୋଷଣା କରିଥିଲେ ଯେ, 'ପରବର୍ତ୍ତୀ ସମୟରେ ଯେବେ ମୁଁ ଏଠାକୁ ଫେରିବି, ମୁଁ ସମାଜ ଉପରେ ବୋମାବର୍ଷଣ ହେବା ପରି ବର୍ଷିଯିବି ଏବଂ ସମାଜ ମୋ' ପଛରେ କୁକୁର ପରି ଅନୁଧାବନ କରିବ ।'

ହରଦ୍ୱାର ଯିବା ବାଟରେ ସେ ହଥରସ ରେଳଷ୍ଟେସନ ନିକଟରେ ଅଟକି ଥିଲେ । ସେଠାରେ ତାଙ୍କର ଶରତଚନ୍ଦ୍ର ଗୁପ୍ତା, ସହକାରୀ ଷ୍ଟେସନ ପରିଚାଳକଙ୍କ ସହିତ ସାକ୍ଷାତ ହେଲା । ତାଙ୍କୁ ସେ ନିଜର ଶିଷ୍ୟ ଭାବରେ ଗ୍ରହଣ କଲେ । ଯେତେବେଳେ ଶରତ ସ୍ୱାମୀଜୀଙ୍କୁ ତାଙ୍କ ସହିତ ରହିବା ପାଇଁ ଅନୁରୋଧ କଲେ, ସେ ଉତ୍ତର ଦେଲେ, 'ପ୍ରିୟ ସନ୍ତାନ, ମୋର ଏକ ବିରାଟ ଉଦ୍ଦେଶ୍ୟ ପୂରଣ କରିବାର ରହିଛି । ମୋର ଗୁରୁ ମୋତେ ମୋ' ଦେଶର ପୁନର୍ଜାଗରଣ କରିବା ପାଇଁ ମୋ ଜୀବନକୁ ଉତ୍ସର୍ଗ କରିବାକୁ କହିଛନ୍ତି । ଆଧାତ୍ମିକ ବର୍ତ୍ତମାନ ସବୁଠାରେ ତଳେ ପଡ଼ିଛି ଏବଂ ସମଗ୍ର ଭୂମି ବୁଭୁକ୍ଷୁ । ଭାରତ ପୁନର୍ବାର ଶକ୍ତିଶାଳୀ ହେବ ଏବଂ ତା'ର ଆଧାତ୍ମିକ ଶକ୍ତି ବଳରେ ସମଗ୍ର ବିଶ୍ୱରୁ ସମ୍ମାନ ଲାଭ କରିବ ।'

ଦିନେ ହିମାଳୟରେ ବୁଲିବା ସମୟରେ ଏକ ଝରଣା ନିକଟରେ ଏକ ପିପଳବୃକ୍ଷ ତଳେ ଧ୍ୟାନ କରିବାକୁ ବସି ରହିଲେ । ସେଠାରେ ସେ ସମଗ୍ର ବିଶ୍ୱର ଏକାତ୍ମତା ଅନୁଭବ କଲେ ଏବଂ ଜାଣିଲେ ମନୁଷ୍ୟ ସେହି ବିଶ୍ୱଚେତନାର ଏକ କ୍ଷୁଦ୍ର ବିଶ୍ୱ । ସେ ଅନୁଭବ କଲେ ଯେ ଯାହା କିଛି ବିଶ୍ୱ ଚେତନାରେ ରହିଛି, ତାହା ସମସ୍ତ ମନୁଷ୍ୟ ଭିତରେ ଅଛି ଏବଂ ସମଗ୍ର ବିଶ୍ୱ ସାମାନ୍ୟ ମାତ୍ର ଅଣୁ ମଧ୍ୟରେ ମଧ୍ୟ ବିଦ୍ୟମାନ । ସେ ନିଜର ଏହି ଅନୁଭୂତିକୁ ନିଜର ନୋଟ ଖାତାରେ ଲିପିବଦ୍ଧ କରି ରଖିଲେ । 'ପ୍ରଥମ ଅବସ୍ଥାରେ 'ଶବ୍ଦ'ମାନ ଥାଏ । ସୂକ୍ଷ୍ମ ଜଗତ ଓ ସଂପୂର୍ଣ୍ଣ ଜଗତ ସେହି ଧାରାରେ ନିର୍ମିତ । ଯେପରି ଭାବରେ ମନୁଷ୍ୟ ଶରୀର ମଧ୍ୟରେ ଆତ୍ମା ବିଦ୍ୟମାନ, ଠିକ୍ ସେହିପରି ବିଶ୍ୱଆତ୍ମା ଜୀବ ପ୍ରକୃତି ମଧ୍ୟରେ ବିଦ୍ୟମାନ । ବିଶ୍ୱଆତ୍ମାର ଏହି ଦ୍ୱୈତଭାବ ଚିରନ୍ତନ । ତେଣୁ ଆମେ ଯାହା ଅନୁଭବ କରୁ ଓ ବିଚାର କରୁ ତାହା ଚିରନ୍ତନ ଭାବରେ ପ୍ରସ୍ତୁତ ହୋଇଛି ଏବଂ ଚିରନ୍ତନ ଭାବରେ ନିରାକାର ।'

ସ୍ୱାମୀଜୀଙ୍କର ଏହି ପରିବ୍ରାଜକ ସମୟରେ ସେ ନାନାପ୍ରକାର ଆଧାତ୍ମିକ ଅନୁଭୂତି କରିଥିଲେ । ଦିନେ ସେ ତାଙ୍କର ଦିବ୍ୟଦୃଷ୍ଟିରେ ଦେଖିଲେ ଗଙ୍ଗାକୂଳରେ ଜଣେ ବୃଦ୍ଧଲୋକ ଦଣ୍ଡାୟମାନ ହୋଇ ବେଦ ଉଚ୍ଚାରଣ କରୁଛନ୍ତି । ସେ ଋଗବେଦର ଗାୟତ୍ରୀ ମନ୍ତ୍ର ଗାଉଥିବାର ପରିଷ୍କାର ଭାବରେ ଜାଣିଲେ । ସ୍ୱାମୀଜୀ ବୁଝିପାରିଲେ ଯେ ଏହି ଦିବ୍ୟଦୃଷ୍ଟି ଫଳରେ ସେ ପ୍ରାଚୀନ ଆର୍ଯ୍ୟମାନଙ୍କର ସଙ୍ଗୀତର ଲୟ, ତାଳ ଓ ଧ୍ୱନିକୁ ଆବିଷ୍କାର କଲେ । ସେ ମଧ୍ୟ ସମସ୍ତ ପ୍ରାଣୀ ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡର ଈଶ୍ୱର ଥିବାର ଅନୁଭବ କଲେ ।

ସ୍ୱାମୀଜୀ ଗାଦିପୁରର ପ୍ରସିଦ୍ଧ ସନ୍ୟାସୀ ପଓହରିବାବାଙ୍କୁ ଭେଟିଲେ ଏବଂ ତାଙ୍କଠାରୁ କର୍ମରହସ୍ୟ ସଂପର୍କରେ ଜାଣିଲେ, 'କର୍ମର ଉଦ୍ଦେଶ୍ୟ ସଂପର୍କରେ ଯେତିକି ଦୃଷ୍ଟି ଦେବା କଥା, ତା'ର ଲକ୍ଷ୍ୟ ହାସଲ ପାଇଁ ସେତିକି ଦୃଷ୍ଟି ଦିଅ ।' ଯୋଗୀ ତାଙ୍କୁ କହିଲେ, 'ତୁମେ ତୁମ ଗୁରୁଙ୍କ ଗୃହରେ ଗୋଟିଏ ଗାଈ ପରିବାସ କର । ଏହାର ଅର୍ଥ ହେଉଛି, ଜଣେ ନିଜ ଭିତରେ ସେବା ଓ ବିନମ୍ରତା ଭାବର କର୍ଷଣ କରିବା ଉଚିତ । ପଓହରିବାବାଙ୍କ ସଂପର୍କରେ ଅନେକ ଆଶ୍ଚର୍ଯ୍ୟଜନକ ଗଳ୍ପ ରହିଛି । ଥରେ ଗୋଟିଏ ଭୟଙ୍କର ନାଗସାପ ତାଙ୍କର ଗୁମ୍ଫା ମଧ୍ୟକୁ ପ୍ରବେଶ କଲା । ତାହାକୁ ଲକ୍ଷ୍ୟ କରି ଯୋଗୀ କହିଲେ, 'ସେ ହେଉଛି ମୋ ପ୍ରେମିକା ନିକଟରୁ ଆସିଥିବା ଦୂତ ।' ଆଉଥରେ ଗୋଟିଏ କୁକୁର ତାଙ୍କର ରୁଟି ଖଣ୍ଡିକ ନେଇ ଚାଲିଯିବାବେଳେ ସେ ତାକୁ କହିଲେ, 'ଦୟାକରି ଅପେକ୍ଷା କର, ହେ ପ୍ରଭୁ, ମୁଁ ସେହି ରୁଟିରେ ଲହୁଣି ମାଖି ଦିଏ ।'

ଗାଦିପୁରଠାରେ ଥିବା ସମୟରେ ସ୍ୱାମୀଜୀଙ୍କର ପେଟ ଗୋଳମାଳ ହେଲା । ସେ ପଓହରିବାବାଙ୍କଠାରୁ ହଠଯୋଗ ଶିକ୍ଷା କରିବାକୁ ଚାହିଁଲେ ଯାହାଫଳରେ ରୋଗମୁକ୍ତ ହୋଇପାରିବେ । ତାଙ୍କୁ ସେହିଦିନ ରାତିରେ ଶ୍ରୀ ରାମକୃଷ୍ଣ ତାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ଅତ୍ୟନ୍ତ ଉଦାସୀନ ଭାବରେ ଗଭୀର ନିରୀକ୍ଷଣ କଲେ । ତାଙ୍କର ଏହି ଦିବ୍ୟଦର୍ଶନ ୨୧ ଦିନ ଧରି ରହିଲା । ସେ ପାଓହରିବାବାଙ୍କଠାରୁ ଇଛା କରୁଥିବା ଦୀକ୍ଷାକୁ ମନରୁ ପୋଛି ଦେଇ ଶ୍ରୀରାମକୃଷ୍ଣଙ୍କ ନିକଟରେ ନିଜକୁ ସଂପୂର୍ଣ୍ଣ ସମର୍ପଣ କଲେ ।

ସ୍ୱାମୀଜୀ ପ୍ରାୟ ସମଗ୍ର ଭାରତ ଭୂଖଣ୍ଡକୁ ପଦବ୍ରଜରେ ପରିଭ୍ରମଣ କରି ଅନେକ ଐତିହାସିକ ଓ ଧାର୍ମିକସ୍ଥଳ ପରିଦର୍ଶନ କଲେ । ଏହା ଫଳରେ ସେ ଭାରତୀୟ ଲୋକମାନଙ୍କ ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କଲେ । ସେ ଦରିଦ୍ର ଲୋକମାନଙ୍କୁ ଦେଖି ଏବଂ ଜନଗଣଙ୍କର ଦୁର୍ଦ୍ଦଶାମୟ ଅବସ୍ଥାକୁ ଲକ୍ଷ୍ୟ କରି ଏହି ଦୁଃଖୀଲୋକମାନଙ୍କ ପ୍ରତି ତାଙ୍କ ମଧ୍ୟରେ ଗଭୀର ସହାନୁଭୂତି ଜାଗି ଉଠିଲା । ତାଙ୍କ ଆଖିରେ ଅଶ୍ରୁ ଭର୍ତ୍ତି ହୋଇଗଲା । ସେ ନିଜେ ଦାରିଦ୍ର୍ୟର କଷାଘାତରେ ପୀଡ଼ିତ ହୋଇଥିଲେ । ଥରେ ସେ ମନ୍ତବ୍ୟ ଦେଇ କହିଥିଲେ, ଯେଉଁ ଈଶ୍ୱର ଏ ଜୀବନରେ ସାମାନ୍ୟ ରୁଟି ଖଣ୍ଡିଏ ଦେବାକୁ ଅକ୍ଷମ, ସେ ପର ଜୀବନରେ ସ୍ୱର୍ଗପ୍ରାପ୍ତି ଦେବେ ବୋଲି ବିଶ୍ୱାସ କରାଯାଇପାରେନା । ସେ ଉପଲବ୍ଧି କରିଥିଲେ ଯେ ଧର୍ମ ଭାରତର କ୍ରନ୍ଦନରତ ମନୁଷ୍ୟମାନଙ୍କ ପାଇଁ ଆବଶ୍ୟକ ନୁହେଁ ଏବଂ ଶ୍ରୀରାମକୃଷ୍ଣଙ୍କର କହିଥିବା କଥାକୁ ଦୋହରାଇ କହିଥିଲେ, 'ଖାଲିପେଟରେ ଥିବା ଭୋକିଲା ଲୋକଙ୍କ ପାଇଁ ଧର୍ମ ନୁହେଁ ।'

ଏହି ଭ୍ରମଣ ସମୟରେ ସ୍ୱାମୀଜୀ କ୍ଷେତ୍ରୀ, ଅଲୱାର, ମହୀଶ୍ୱର, ରାମନାଦର ମହାରାଜମାନଙ୍କୁ ଭେଟିବା ସହିତ ବହୁ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷଙ୍କୁ ସାକ୍ଷାତ କରିଥିଲେ । ସେ ସେମାନଙ୍କୁ ଅତି ଦୃଢ଼ତାର ସହିତ କହିଥିଲେ ଯେ ଭାରତର ଉନ୍ନତି ଜନଗଣଙ୍କୁ ଉତ୍ତମ ଶିକ୍ଷା, ଆଧୁନିକ ବିଜ୍ଞାନ ଓ ଉଦ୍ୟୋଗ ଗଠନ ଫଳରେ ହିଁ ସମ୍ଭବ । କିନ୍ତୁ ସେମାନେ ଏଥିପ୍ରତି ଯଥେଷ୍ଟ ଧ୍ୟାନ ଦେଇନଥିଲେ । ପରବର୍ତ୍ତୀ ସମୟରେ ସେ ନିଜର ଅନୁଭବକୁ ଉଲ୍ଲେଖ କରି କହିଥିଲେ, 'ମୁଁ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ଚାହେଁ ଏବଂ ହଜାର ହଜାର ଯନ୍ତ୍ରଣା ଭୋଗ କରିବାକୁ ଇଛାକରେ ଯାହାଫଳରେ ମୁଁ ଏକମାତ୍ର ଈଶ୍ୱର, ଯେ କି ବିଦ୍ୟମାନ, ଏକମାତ୍ର ଈଶ୍ୱର ଯାହାଙ୍କୁ ମୁଁ ବିଶ୍ୱାସ କରେ, ଯେ କି ସମସ୍ତ ଆତ୍ମାର ସମଷ୍ଟି ଏବଂ ସର୍ବୋପରି ସେହି ନିଷ୍ଠୁର ଈଶ୍ୱର, ମୋର ସେହି ଦୁର୍ଦ୍ଦଶାଗ୍ରସ୍ତ ଈଶ୍ୱର, ସବୁଜାତି, ପ୍ରଜାତି ମଧ୍ୟରେ ମୋର ସେହି ଦରିଦ୍ର ଈଶ୍ୱର ହିଁ ମୋ ଉପାସନାର ବିଶେଷ ଲକ୍ଷ୍ୟ ।'

୧୮୯୧ ଫେବୃଆରୀ ମାସରେ ସ୍ୱାମୀଜୀ ରାଜପୁତନାର ଅଲୱାରଠାରେ ପହଞ୍ଚିଲେ ଏବଂ ମହାରାଜ ମଙ୍ଗଳ ସିଂହକୁ ଭେଟିଲେ ଏବଂ ତାଙ୍କ ମନରେ ଥିବା ପିତୁଳା ପୂଜା ସଂପର୍କିତ ଦ୍ୱନ୍ଦ୍ୱ ଓ ସନ୍ଦେହକୁ ଦୂରୀଭୂତ କରିବାରେ ସାହାଯ୍ୟ କଲେ । ପଶ୍ଚିମ ଓ ଦକ୍ଷିଣ ଭାରତ ଭ୍ରମଣ ସମୟରେ ସ୍ୱାମୀଜୀ ୧୮୯୩ ମସିହାରେ ଚିକାଗୋଠାରେ ଧର୍ମ ମହାସଭା ହେଉଥିବାର ଜାଣିବାକୁ ପାଇଲେ । କିଛି ଭାରତର ଶାସକ ରାଜାମହାରାଜ ଓ କେତେକ ପ୍ରଭାବଶାଳୀ ବ୍ୟକ୍ତିବିଶେଷ ସ୍ୱାମୀଜୀଙ୍କୁ ଏହି ଧର୍ମ ସମ୍ମେଳନରେ ଯୋଗଦେବାକୁ ପ୍ରବର୍ତ୍ତାଇଲେ ଯାହା ଫଳରେ ସେ ହିନ୍ଦୁଧର୍ମର ପ୍ରତିନିଧିତ୍ୱ କରିପାରିବେ କିନ୍ତୁ ସ୍ୱାମୀଜୀ ମନା କରିଦେଲେ । ସେ ଶ୍ରୀରାମକୃଷ୍ଣଙ୍କର ନିର୍ଦ୍ଦେଶକୁ ଅପେକ୍ଷା କରୁଥିଲେ । ୧୮୯୨ ଡିସେମ୍ବର ମାସରେ ସେ କନ୍ୟାକୁମାରୀଠାରେ ଥିବା ଭାରତ ମହାସାଗରର ଶୀଳାଖଣ୍ଡ ଉପରେ ବସି ଧ୍ୟାନସ୍ଥ ଥିବାବେଳେ ପାଇଲେ ତାଙ୍କର ଗୁରୁ ଶ୍ରୀରାମକୃଷ୍ଣଙ୍କର ନିର୍ଦ୍ଦେଶ ।

ଦିନେ ମାଡ୍ରାଜଠାରେ ଥିବାବେଳେ ସ୍ୱାମୀଜୀ ଏକ ସାଙ୍କେତିକ ସ୍ୱପ୍ନ ଦେଖିଲେ । ସେ ଦେଖିଲେ ଶ୍ରୀରାମକୃଷ୍ଣ ମହାସମୁଦ୍ରର ଜଳରାଶି ଉପରେ ଚାଲି ଚାଲି ଯାଉଛନ୍ତି ଏବଂ ତାଙ୍କୁ ଯିବା ପାଇଁ କହୁଛନ୍ତି । ସେ ମଧ୍ୟ ଆଦେଶ ଶୁଣିବାକୁ ପାଇବେ, 'ଯାଅ' । ଯଦିଓ ସ୍ୱାମୀଜୀ ତାଙ୍କର ଯିବା ନିଧାର୍ଯ୍ୟ ବୋଲି ସ୍ଥିର କରି ସାରିଥିଲେ, ତଥାପି ସେ ଅନୁଭବ କଲେ ଯେ ସଂଘ ଜନନୀ ସାରଦା ଦେବୀଙ୍କର ଆଦେଶ ମିଳିବା ଆବଶ୍ୟକ । ସେ ସ୍ୱାମୀ ସାରଦାନନ୍ଦଙ୍କୁ ଚିଠି ଲେଖିଲେ, 'ମୁଁ ଏକ ଦିବ୍ୟଦର୍ଶନ ଦେଖିଲି ଓ ଗୁରୁ ମୋତେ ପଶ୍ଚିମ ଦେଶକୁ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ମୋର ମନ ଅତ୍ୟନ୍ତ ଭାବେ ଆନ୍ଦୋଳିତ । ଏ ସମସ୍ତ କଥା ଶ୍ରୀମା'ଙ୍କୁ କହିବ ଏବଂ ତାଙ୍କର ମତ ମୋତେ ଜଣାଇବ ।' ସ୍ୱାମୀ ସାରଦାନନ୍ଦ ଶ୍ରୀମା' ସାରଦାଦେବୀଙ୍କ ନିକଟକୁ ଯାଇ ସ୍ୱାମୀଜୀଙ୍କର ପତ୍ର ପାଠ କଲେ । ଶ୍ରୀମା' ତତ୍‌କ୍ଷଣାତ୍ ନିଜର କୌଣସି ମତ ଦେଲେ ନାହିଁ । କିନ୍ତୁ ସାରଦାନନ୍ଦଙ୍କୁ ଅପେକ୍ଷା କରିବାକୁ କହିଲେ । କିଛି ଦିନ ପରେ ଦିନେ ଶ୍ରୀମା' ସ୍ୱପ୍ନରେ ଦେଖିଲେ ଶ୍ରୀରାମକୃଷ୍ଣ ମହାସମୁଦ୍ର ଉପରେ ଚାଲୁଛନ୍ତି ଏବଂ ନରେନ୍ଦ୍ରନାଥଙ୍କୁ

ତାଙ୍କୁ ଅନୁଧାବନ କରିବାକୁ କହୁଛନ୍ତି । ଶ୍ରୀମା' ସାରଦାନନ୍ଦଙ୍କୁ କହିଲେ, 'ଦୟାକରି ନରେନ୍ଦ୍ରଙ୍କୁ ପାଶ୍ଚାତ୍ୟକୁ ଯିବା ପାଇଁ ପତ୍ର ଲେଖ ।' ସ୍ୱାମୀଜୀ ଶ୍ରୀମା'ଙ୍କର ଅନୁମତିପତ୍ର ଓ ଆଶୀର୍ବାଦ ପାଇଁ ଅତ୍ୟନ୍ତ ଖୁସି ହେଲେ ।

ମାନ୍ଦ୍ରାଜଠାରେ ଥିବା ତାଙ୍କର ଶିଷ୍ୟମାନେ ସ୍ୱାମୀଜୀଙ୍କର ଯାତ୍ରା ପାଇଁ ଅର୍ଥ ସଂଗ୍ରହରେ ଲାଗି ପଡ଼ିଲେ । ମହାରାଜା ଖେଚଡ଼ି ରାଜା ଅଜିତ୍ ସିଂହ ତାଙ୍କର ଯିବା ପାଇଁ ଟିକେଟ୍ କରି ଦେଲେ । ଖେଚଡ଼ିରେ ଥିବା ସମୟରେ ଦିନେ ସନ୍ଧ୍ୟା ସମୟରେ ରାଜା ସଙ୍ଗୀତର ଆୟୋଜନ କରି ସ୍ୱାମୀଜୀଙ୍କୁ ଏଥିରେ ଯୋଗ ଦେବାକୁ ଅନୁରୋଧ କଲେ । ସ୍ୱାମୀଜୀ ଆସିଲେ ନାହିଁ ଏବଂ କହି ପଠାଇଲେ, 'ସନ୍ନ୍ୟାସୀ ପକ୍ଷରେ ଏପରି ଅନୁଷ୍ଠାନରେ ଉପସ୍ଥିତ ରହିବା ଅନୁଚିତ ।' ଗାୟିକା ଏଥିରେ ମର୍ମାହତ ହୋଇ ଗୀତ ଗାଇଲେ, 'ପ୍ରଭୁ ମେରେ ଅବଗୁଣ ଚିତ୍ତ ନ ଧରୋ, ସମଦରଶୀ ହ୍ୟାୟ ନାମ ତିହାରୋ, ଅବମୋହି ପାର୍ କରୋ ।' ଏହି ଗୀତର ସ୍ୱରଲହରୀ ସୁଗାୟକ ସ୍ୱାମୀଜୀଙ୍କ କାନରେ ପହଞ୍ଚିଲା । ଗୀତଟିର ଛତ୍ରେଛତ୍ରେ ଏହି ସତ୍ୟ ପ୍ରକାଶିତ ଯେ, ଭଗବାନ ସର୍ବବସ୍ତୁରେ ବିରାଜିତ । ଗୀତଟି ଶୁଣି ସ୍ୱାମୀଜୀ ନିଜ ମନକୁ ଧିକ୍କାର କଲେ, 'ଏହି କ'ଣ ମୋର ସନ୍ନ୍ୟାସ ? ମୁଁ ସନ୍ନ୍ୟାସୀ, ଅଥଚ ମୋର ଏବଂ ଏହି ନାରୀ ମଧ୍ୟରେ ଭେଦଜ୍ଞାନ ରହିଯାଇଛି ।' ତାଙ୍କର ଆଖି ଖୋଲିଗଲା, ସେ ବୁଝିଲେ, 'ସମସ୍ତଙ୍କ ଭିତରେ ସେଇ ଗୋଟିଏ ସତ୍ତା - କାହାକୁ ସେ ଘୃଣା କରିପାରିବେ ନାହିଁ ।'

ବମ୍ବେ ଯାତ୍ରା ସମୟରେ ସେ ଆବୁରୋଡ୍ ଷ୍ଟେସନଠାରେ ଅଟକି ତାଙ୍କର ଗୁରୁଭାଇ ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ତୁରିୟାନନ୍ଦଙ୍କୁ ଭେଟିଲେ । ସେ ସ୍ୱାମୀ ତୁରିୟାନନ୍ଦଙ୍କୁ କହିଲେ, 'ହରିଭାଇ, ମୁଁ ଏବେ ମଧ୍ୟ ତୁମର ତଥାକଥିତ ଧର୍ମର କିଛି ହେଲେ ବୁଝିପାରେ ନାହିଁ । କିନ୍ତୁ ମୋର ହୃଦୟ ଖୁବ୍ ବଢ଼ିଯାଇଛି ଏବଂ ମୁଁ ଅନ୍ୟର କଷ୍ଟରେ କଷ୍ଟ ଅନୁଭବ କରିବାକୁ ଶିଖିଛି । 'ବିଶ୍ୱାସ କର, ମୋର ତୀବ୍ର ଦୁଃଖବୋଧ ଜାଗିଛି ।' ସ୍ୱାମୀ ତୁରିୟାନନ୍ଦ ଦେଖିଲେ ଜଗତର ଦୁଃଖରେ ସ୍ୱାମୀଜୀଙ୍କର ଅନ୍ତର ଯେପରି ଘାଣ୍ଟି ହୋଇଯାଉଛି । ତାଙ୍କର ହୃଦୟ ଯେପରି ପ୍ରକାଣ୍ଡ ଗୋଟିଏ କରେଇ ଏବଂ ଜଗତର ସମସ୍ତ ଦୁଃଖ ଦୂର କରିବା ପାଇଁ ସେ ସେଥିରେ ଯେପରି ଏକ ମଲମ ତିଆରି କରିବାକୁ ଯାଉଛନ୍ତି ।

ଭାରତର ଅଗଣିତ ଦୁଃଖୀ ଜନତାର ଦୁଃଖ ମୋଚନର ମାର୍ଗ ଖୋଜିବା ପାଇଁ ଭାରତର ପଥପ୍ରାନ୍ତରରୁ ସ୍ୱାମୀଜୀ ଆମେରିକା ଅଭିମୁଖେ ଯାତ୍ରା କଲେ ।

ପ୍ଲଟ ନଂ- ୫୦/୨/୫୮୫୩
ଗଜପତି ନଗର, ଭୁବନେଶ୍ୱର - ୭୫୧୦୦୫

# ଜାତୀୟ ନିଶାଣ ଉଡ଼ା

ଡକ୍ଟର ଜ୍ୟୋତିର୍ମତୀ ସାମନ୍ତରାୟ

ଶକ୍ତ ହେବ ଏ ମୁକ୍ତ ଭାରତ ଜାତୀୟ ନିଶାଣ ଉଡ଼ା
ଦୁର୍ବଳ ଏଠି ସବଳ ହୋଇବ ଶ୍ମଶାନୁ ଉଠିବ ମଡ଼ା
ରିକ୍ତ ଜୀବନ ସିକ୍ତ ହୋଇବ ତିକ୍ତତା ଯିବ ଜଳି
ଅନୀତି-ଅନଳୁ ନୈତିକ-ରବି ସ୍ୱରୂପ ଉଠିବ ଝଳି
ଶତ ଅତ୍ୟାଚାର-ଦୁର୍ନୀତି-ଦୁର୍ବିଚାର,
ଲୁପ୍ତ ହେବ ଏ ଭାରତବର୍ଷରୁ ହଟିଯିବ ଦୁରାଚାର ।
ଦେଶ-ଦଶ ପାଇଁ ରକ୍ତ ଦେବାକୁ ଆସ ହେବା ଦେଶଭକ୍ତ
ସ୍ୱର୍ଣ୍ଣପ୍ରସୂ ଏ ଭାରତ ଭୂଇଁକୁ କରିବା ମହିମାଯୁକ୍ତ
ସନ୍ତପ୍ତ ପରାଣୁ ଜଠର ଯନ୍ତ୍ରଣା ହଟେଇ ନେବାରେ ଆମେ
ଜାତୀୟ-ଜୀବନେ ସମତା ଦେଖାଇ ଝଟକିବା ଧରାଧାମେ
ବିରଚନ କରି କର୍ମ ଭଳିକିଭଳି,
ଦେଶ-ଜନନୀର କଣ୍ଠଦେଶେ ଦେବା ଐକ୍ୟର ମୁକ୍ତାବଳୀ ।

୧୫୯୫, ଭକ୍ତମଧୁନଗର, ଭୁବନେଶ୍ୱର

# ବିଦ୍ୟାଳୟତ୍ୟାଗୀ ହେଲେ ଜ୍ଞାନକୋଷ ଆନ୍ଦୋଳନର ଅଗ୍ରଦୂତ

ପ୍ରଫେସର ଜଗନ୍ନାଥ ମହାନ୍ତି

**କ**ଟକ ଜିଲ୍ଲା ମଲ୍ଲୀପୁର ଗ୍ରାମରେ ୧୯୧୨ ମସିହା ଜୁନ୍ ୬ ତାରିଖରେ ଗୋଟିଏ ବାଳକର ଜନ୍ମ । ମାମୁଁ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଗ୍ରାମର ପ୍ରାଥମିକ ବିଦ୍ୟାଳୟରେ ତାଙ୍କର ଶିକ୍ଷାରମ୍ଭ । ୧୯୩୦ ମସିହାରେ ରେଭେନ୍‌ସା କଲେଜିଏଟ୍ ସ୍କୁଲର ପାଠପଢ଼ା ଛାଡ଼ି ସେ ଯୋଗ ଦେଲେ ସ୍ୱାଧୀନତା ସଂଗ୍ରାମରେ । ତା'ପରେ ଜେଲଯାତ୍ରା ସହିତ ସ୍ୱାଧ୍ୟାୟ । ଓଡ଼ିଶାରେ ମହାତ୍ମା ଗାନ୍ଧୀଙ୍କ ସ୍ମରଣୀୟ ପଦଯାତ୍ରାରେ ସେ ତାଙ୍କ ସହିତ ଥିଲେ । ଓଡ଼ିଶା-ଗାନ୍ଧୀ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରତିଷ୍ଠିତ ବରି ଆଶ୍ରମ (ଯାଜପୁର)ରେ କର୍ମୀ ଭାବରେ ରହନ୍ତି । ସମାଜ ସଂସ୍କାର ବିଶେଷତଃ ଅସ୍ପୃଶ୍ୟତା ଆନ୍ଦୋଳନରେ ଅଗ୍ରଗାମୀ ହୋଇ ସେ ଓଡ଼ିଶା ହରିଜନ ସେବକ ସଂଘର ସଂପାଦକ ନିର୍ବାଚିତ ହେଲେ । ୧୯୪୨ରେ ଐତିହାସିକ ଭାରତଛାଡ଼ ଆନ୍ଦୋଳନରେ ଯୋଗଦାନ ପୂର୍ବକ ସେ ବନ୍ଦୀ ଜୀବନ ବରଣ କରିଥିଲେ ।

ବ୍ରହ୍ମପୁର ଜେଲ୍‌ରେ ରହୁଥିବାବେଳେ ତାଙ୍କ ମନରେ ଉଦ୍ରେକ ହୋଇଥିଲା ଲୋକପ୍ରିୟ ଜ୍ଞାନକୋଷ ପ୍ରକାଶନର ଭାବନା । ଏଥିପାଇଁ ଆବଶ୍ୟକ ମାନସିକ ଭିତ୍ତିଭୂମି ମଧ୍ୟ ସେ ପ୍ରସ୍ତୁତ କରି ଚାଲିଲେ । 'ଜ୍ଞାନ ମଣ୍ଡଳ' ନାମରେ ୭୫ ଖଣ୍ଡ ଜ୍ଞାନକୋଷ ପ୍ରକାଶ କରିବାକୁ ସେ ମନସ୍ଥ କରିଥିଲେ । ପ୍ରଥମେ ସେ କାବୁଲିୱାଲାଠାରୁ ଶତକଡ଼ା ୧୨୦ ସୁଧ ହାରରେ ଲକ୍ଷେ ଟଙ୍କା ଋଣ କଲେ । ୧୯୫୪ ମସିହାରୁ ସେ ଜ୍ଞାନକୋଷର ପ୍ରସ୍ତୁତି ଆରମ୍ଭ କରି ଜୀବଦ୍ଦଶାରେ ୪୨ ଖଣ୍ଡ ପ୍ରକାଶ କରିପାରିଥିଲେ । ସେତେବେଳେ ସରକାରଙ୍କଠାରୁ କୌଣସି ପ୍ରକାର ଆର୍ଥିକ ସାହାଯ୍ୟ ପାଇ ନଥିଲେ । ଏଥିସହିତ ସେ ଶିଶୁକିଶୋର ଓ ନବସାକ୍ଷରଙ୍କ ପାଇଁ ବିଜ୍ଞାନର ବିଭିନ୍ନ ପ୍ରସଙ୍ଗରେ ୮୦ଟି ପୁସ୍ତକ ପ୍ରକାଶ କରିଥିଲେ । ଜଟିଳ ବୈଜ୍ଞାନିକ ତତ୍ତ୍ୱ ଓ ତଥ୍ୟକୁ ସରଳ ଭାଷା ଓ ଚିତ୍ତାକର୍ଷକ ଶୈଳୀରେ ରଚିତ ଏହିସବୁ ବହି ସାରା ରାଜ୍ୟରେ ଖୁବ୍ ଆଦୃତ ହୋଇଥିଲା । ସେ ଏହି ସଂଗ୍ରାମ ମଧ୍ୟରେ 'ଶିଶୁ ସଂପଦ' ନାମକ ଏକ ଶିଶୁ ସାହିତ୍ୟ ପତ୍ରିକା ସଂପାଦନ କରୁଥିଲେ ।

ତାଙ୍କର ପୁସ୍ତକ 'ଋଣ ପରିଶୋଧ' ଆତ୍ମଜୀବନୀ ଭାବରେ ଓ 'ଛାତିକୁ ପଥର କରି' ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ରୂପେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ଭାରତ ସରକାର ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ ଓ ଲୋକପ୍ରିୟ ସାହିତ୍ୟିକ ଭାବରେ ତାଙ୍କୁ ୧୯୮୬ରେ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରିଥିଲେ ଏବଂ ତାଙ୍କ ଜୀବନ ଓ କୃତି ଉପରେ ହିନ୍ଦୀ, ଇଂରାଜୀ ସହିତ ୧୪ଟି ଭାରତୀୟ ଭାଷାରେ ପ୍ରାମାଣିକ ତଥା ବାସ୍ତବ ଚଳଚ୍ଚିତ୍ର ପ୍ରସ୍ତୁତ କରିଥିଲେ । ଆକାଶବାଣୀ ଓ ଦୂରଦର୍ଶନରେ ମଧ୍ୟ ସେ ବିଜ୍ଞାନ ଓ ଜ୍ଞାନମଣ୍ଡଳ ଉପରେ ପ୍ରସ୍ତୁତ ବହୁ କାର୍ଯ୍ୟକ୍ରମରେ ଭାଗ ନେଇଥିଲେ ।

ତାଙ୍କର ଅଦମ୍ୟ ଉତ୍ସାହ ଓ ଉଜ୍ଜ୍ୱଳ ଦୂରଦୃଷ୍ଟି ଯୋଗୁଁ ୧୯୮୭ ଜୁଲାଇ ୧୨ ତାରିଖରେ ଭୁବନେଶ୍ୱରଠାରେ ଜାତୀୟ ଜ୍ଞାନକୋଷ କେନ୍ଦ୍ର (National Encyclopaedia Centre) ପ୍ରତିଷ୍ଠିତ ହୋଇଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏହି କେନ୍ଦ୍ରର ଉଦ୍‌ଘାଟନ ଉତ୍ସବରେ କହିଥିଲେ - ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ ହେଉଛନ୍ତି ଜୀବନ୍ତ ଜ୍ଞାନକୋଷ ଏବଂ ଓଡ଼ିଶା ସରକାର ଏହି କେନ୍ଦ୍ରର ବିକାଶ ପାଇଁ ସବୁପ୍ରକାର ସାହାଯ୍ୟ କରିବେ । ୧୯୫୪ ମସିହାରୁ ଜ୍ଞାନମଣ୍ଡଳ କେନ୍ଦ୍ରରେ ୩୦ ହଜାରରୁ ଅଧିକ ଫାଇଲରେ ଗଚ୍ଛିତ ହୋଇଥିଲା ଜ୍ଞାନବିଜ୍ଞାନର ଉପାଦେୟ ତଥ୍ୟ ଓ ଚିତ୍ର । ତେଣୁ ଜ୍ଞାନକୋଷ ବା ବିଶ୍ୱକୋଷ ପାଇଁ ଏକ ଚିତ୍ରକେନ୍ଦ୍ର (Picture Bank) ସ୍ଥାପିତ ହେଲା । ବର୍ତ୍ତମାନ ବିଶ୍ୱକୋଷ ତଥ୍ୟ ଓ ଚିତ୍ରର ଏକ ପ୍ରମୁଖ କେନ୍ଦ୍ର ଭାବେ ଏହା ରାଷ୍ଟ୍ରୀୟ ସ୍ୱୀକୃତି ଲାଭ କରିଛି । ବିଭିନ୍ନ ରାଜ୍ୟର ଜ୍ଞାନକୋଷ କେନ୍ଦ୍ରମାନଙ୍କ ମଧ୍ୟରେ ଏହା ସମନ୍ୱୟ ରକ୍ଷା କରି ଆସିଛି । ବିନୋଦବାବୁ ଯଥାର୍ଥରେ ଭାରତୀୟ ବିଶ୍ୱକୋଷ ଆନ୍ଦୋଳନର ଜନକ (Father of the Indian Encyclopaedia Movement) । ହାଇଦ୍ରାବାଦ ଓସମାନିଆ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ସତ୍ୟନାରାୟଣମ୍ ମଧ୍ୟ ବିନୋଦବାବୁଙ୍କ ମୃତ୍ୟୁପୂର୍ବରୁ ଯଥାର୍ଥରେ କହିଥିଲେ - ଯେ ତାଙ୍କୁ ଓ ତାଙ୍କ କାର୍ଯ୍ୟ ଦେଖିନାହାନ୍ତି, ସେ କେବେ ବିଶ୍ୱାସ କରିବେ ନାହିଁ ଯେ ଜଣେ ଲୋକ ଏତେ କାମ କରିଥାନ୍ତି ଏବଂ ଏମିତି ଲୋକଟିଏ ଏହି ଧରାଧାମରେ ରହିଛନ୍ତି ।

୧୯୪୫ ମସିହାରେ ଜେଲ୍‌ରୁ ମୁକ୍ତ ହୋଇ ପିଲା ଓ ବଡ଼ଙ୍କ ପାଇଁ ତରଳ ସରଳ ଭାଷା ଓ ସରସ ସାବଲୀଳ ଶୈଳୀରେ ଛୋଟ ଛୋଟ ବହି ସଚିତ୍ର ଓ ସୁନ୍ଦର ଭାବରେ ରଚନା ଓ ପ୍ରକାଶ କଲେ ଏବଂ ସ୍ୱଳ୍ପ ମୂଲ୍ୟରେ ସେଗୁଡ଼ିକରେ ବିକ୍ରୟ ପାଇଁ ବ୍ୟବସ୍ଥା କରିଥିଲେ । ତାଙ୍କ ପୁସ୍ତକଗୁଡ଼ିକର ନାମକରଣ ଖୁବ୍ ଆକର୍ଷଣୀୟ ଥିଲା ଯାହାକୁ ଥରେ ପଢ଼ି ବସିଲେ ନ ସାରି ରହି ହୁଏ ନାହିଁ । ଉଦାହରଣ ସ୍ୱରୂପ, 'ତୁଲୀ କେବେ ଲିଭିବ ନାହିଁ' (ସୂର୍ଯ୍ୟ), 'ମୁଠିଏ ଲୁଣ ଗୋଟିଏ ସାମ୍ରାଜ୍ୟ' (ଲୁଣମରା ଆନ୍ଦୋଳନ), 'ଚଳନ୍ତା ରାଇଜର ଅମୁହାଁ ନଈ' (ଶରୀର) ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଇତିହାସ ୩ଟି ଖଣ୍ଡର ରଚନାରେ ଓ 'ପିଲାଙ୍କ ଜ୍ଞାନମଣ୍ଡଳ' ପ୍ରକାଶ କରିବାରେ ତାଙ୍କ ଅବଦାନ ଉଲ୍ଲେଖନୀୟ । ୧୯୯୬ ଜାତୀୟ ଶିକ୍ଷାନୀତି ଅନୁସାରେ କାର୍ଯ୍ୟକାରୀ ହୋଇଥିବା କଳାପଟା ଅଭିଯାନ (Operation Blackboard) ଅନ୍ତର୍ଭୁକ୍ତ ହଜାର ହଜାର ପ୍ରାଥମିକ ବିଦ୍ୟାଳୟକୁ ତାଙ୍କର ଶିଶୁ ଜ୍ଞାନମଣ୍ଡଳ ଯୋଗାଇ ଦିଆଯାଇଥିଲା । ସୀମିତ ସମୟ ମଧ୍ୟରେ ଏପରି ଶିଶୁକିଶୋର ଉପଯୋଗୀ ସରଳ ସଚିତ୍ର ଜ୍ଞାନକୋଷ ପ୍ରକାଶ କରିବା ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କ ଦକ୍ଷତା ଓ ଦୂରଦୃଷ୍ଟି ଯୋଗୁଁ ସମ୍ଭବ ହୋଇଅଛି ।

ବିନୋଦବାବୁ ଗଣଶିକ୍ଷା ତଥା ସାକ୍ଷରତାର ଉନ୍ନତି ପାଇଁ ଜାତି ପିତା ଗାନ୍ଧିଜୀଙ୍କ ସ୍ୱପ୍ନକୁ ସାକାର କରିବାରେ ସମର୍ଥ ହୋଇଥିଲେ । ଏଥିରେ ଥିଲା ଦୃଢ଼ ମନୋବଳ, ସାଧନା ଓ ଆତ୍ମବିଶ୍ୱାସ । ସେ ସ୍ଥିର ନିଶ୍ଚିତ ହୋଇଥିଲେ ଯେ ରାଜ୍ୟ ସରକାର ଓ ଜନସାଧାରଣ ତାଙ୍କର ଏହି ସାଧୁ ଉଦ୍ୟମକୁ ଆଗେଇ ନେବେ । ସୌଭାଗ୍ୟକୁ ତାଙ୍କର ସୁପୁତ୍ର ଗୁଣ ନିଜ ନିଜ କ୍ଷେତ୍ରରେ ଦକ୍ଷତା ଲାଭ କରି ସ୍ୱକୀୟ ଶକ୍ତି ସାମର୍ଥ୍ୟ ଅନୁସାରେ ଜ୍ଞାନମଣ୍ଡଳ ତଥା ଜ୍ଞାନକୋଷ କେନ୍ଦ୍ରର ଉନ୍ନତି କାର୍ଯ୍ୟଧାରାରେ ସକ୍ରିୟ ହୋଇଛନ୍ତି । ତାଙ୍କ ଅନୁଷ୍ଠାନ ସହିତ ବହୁବର୍ଷ ଧରି ସଂପୃକ୍ତ କର୍ମଚାରୀଗଣ ମଧ୍ୟ ନିଷ୍ଠାର ସହିତ ସହଯୋଗ କରିଆସିଛନ୍ତି । ଭାରତର ବିଶିଷ୍ଟ ଭାଷାବିଦ୍ ପ୍ରଫେସର ହୀରେନ୍ ମୁଖାର୍ଜୀ ଯଥାର୍ଥରେ କହିଥିଲେ ଯେ ଏହି ରାଷ୍ଟ୍ରୀୟ କାର୍ଯ୍ୟ ତାଙ୍କ ଜୀବନର ବ୍ରତ ଥିଲା ଏବଂ ଏହା ଭାଷା ସାହିତ୍ୟର ଏକ ମୌଳିକ କାର୍ଯ୍ୟ ସଂପାଦନ କରିଛନ୍ତି । ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ ସତରେ ଥିଲେ ଓଡ଼ିଆ ଜାତିର ଗର୍ବ ଓ ଗୌରବ, ସ୍ୱାଭିମାନ ଓ ସମୃଦ୍ଧିର ଜାଗ୍ରତ ପ୍ରହରୀ ଏବଂ ଜ୍ଞାନକୋଷର କିମ୍ବଦନ୍ତୀ ପୁରୁଷ । ମୋ ଲିଖିତ ଓ ନୂଆଦିଲ୍ଲୀସ୍ଥ Deep & Deep Publications Limited ଦ୍ୱାରା ୧୯୯୧ରେ ପ୍ରକାଶିତ 'Adult and Non-formal Education' (୧୯୯୧)ରେ ସ୍ଥାନିତ 'A School Dropout : A Living Legend of Encyclopaedia'ର ମର୍ମାନୁବାଦ ।

୨୯୩୫, ଗୌରୀନଗର
ମାଣିକ-ବିଶ୍ୱନାଥ ସ୍ମୃତି ସଦନ
ଭୁବନେଶ୍ୱର-୭୫୧୦୦୨



ଭୁବନେଶ୍ୱରର ଗୌରୀ ମନ୍ଦିର

# ପ୍ରଗତି ପଥେ : ଢେଙ୍କାନାଳ

ସଚ୍ଚିଦାନନ୍ଦ ବେହେରା

ପାହାଡ଼ ପର୍ବତ ଘେରା ପ୍ରାକୃତିକ ସବୁଜିମାରେ ବିମଣ୍ଡିତ ଢେଙ୍କାନାଳ ଜିଲ୍ଲାର ବନ, ଭୂଇଁ, ପ୍ରାନ୍ତର, ଝରଣା, କଳା-ସାହିତ୍ୟ, ଧର୍ମ-ସଂଗୀତ, କୃଷି, ଶିଳ୍ପ ଓ ବାଣିଜ୍ୟ ଇତ୍ୟାଦି ପ୍ରତ୍ୟେକ ବିଭବରେ ପରିପୂର୍ଣ୍ଣ । ପ୍ରସିଦ୍ଧ ଶୈବପୀଠ କପିଳାସର ଶ୍ରୀ ଚନ୍ଦ୍ରଶେଖର ଜୀଉ ମନ୍ଦିର ଓ ତା'ର ନୈସର୍ଗିକ ଶୋଭା ସୌନ୍ଦର୍ଯ୍ୟ, ଯୋରନ୍ଦାଠାରେ ମହିମା ଧର୍ମର ଶୂନ୍ୟ ମନ୍ଦିର, ସପ୍ତଶର୍ଯ୍ୟାର ସବୁଜ ବନାନୀ ଆମ ସଂସ୍କୃତିର ଗୋଟିଏ ଗୋଟିଏ ଅକ୍ଷୟ ସ୍ମାରକୀ । ସମ୍ପ୍ରତି ଜିଲ୍ଲାର ୨୦୦୧ ମସିହା ଜନଗଣନା ଅନୁସାରେ ସର୍ବମୋଟ ୧୦ ଲକ୍ଷ ୮୭ ହଜାର ୯୭୩ ଲୋକ ବସବାସ କରିଆସୁଛନ୍ତି । ଜିଲ୍ଲାର ସମ୍ପୃକ୍ତ ୮ ଗୋଟି ବ୍ଲକ୍ ଏବଂ ୩ ଗୋଟି ବିଜ୍ଞାପିତ ଅଞ୍ଚଳ ପରିଷଦର ପରିପାର୍ଶ୍ୱ ଅବସ୍ଥା ଏବଂ ସାମାଜିକସ୍ଥିତି କୌଣସି ଦୃଷ୍ଟିରୁ ଊଣା ପରିଲକ୍ଷିତ ହୁଏ ନାହିଁ ।

ଅଧୁନା ଜିଲ୍ଲା ପ୍ରଶାସନ ରାଜ୍ୟ ପ୍ରଗତିର ରଥଚକ ସହ ତାଳ ଦେଇ ଆଗେଇ ଚାଲିଛି ଏବଂ ସମସ୍ତ ଉନ୍ନୟନମୂଳକ ଯୋଜନାଗୁଡ଼ିକୁ ଫଳପ୍ରସୂ କରିବା ପାଇଁ ପ୍ରୟାସ ଜାରି ରଖିଛି । ଚଳିତ ବର୍ଷ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନାରେ ଗ୍ରାମାଞ୍ଚଳରେ ବାସ କରୁଥିବା ଜନସାଧାରଣଙ୍କ ମଧ୍ୟରୁ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ୧୬୧୫ ଗୋଟି ପରିବାରଙ୍କ ଆର୍ଥିକ ବିକାଶ ପାଇଁ ଗୋପାଳନ, ଛେଳିପାଳନ, ପନିପରିବା ଏବଂ ଛତୁଚାଷ କରିବା ନିମନ୍ତେ ୩୩୫ ଲକ୍ଷ ୨୦ ହଜାର ଟଙ୍କା ବ୍ୟାଙ୍କ ଋଣ ଯୋଗାଇ ଦିଆଯାଇଛି । ଜିଲ୍ଲାର ସର୍ବାଙ୍ଗୀନ ଉନ୍ନତି ସାଧନ ନିମନ୍ତେ ସମ୍ପୂର୍ଣ୍ଣ ଗ୍ରାମୀଣ ସ୍ୱରୋଜଗାର ଯୋଜନାରେ ୬୯୦ ଲକ୍ଷ ୩୦ ହଜାର ଟଙ୍କା ସହିତ ୫୨୮୦,୪୧ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ବିନିଯୋଗ କରାଯାଇ ୧୨୮୧ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଛି । ୬୧୪୨ କି.ମି.ର ୩୩୦ ଗୋଟି କଂକ୍ରିଟ୍ ରାସ୍ତା ଏବଂ ୨୦୦ ଗୋଟି ଦୋକାନ ଘର ନିର୍ମାଣ କରାଯାଇଛି । ଲୋକମାନଙ୍କର ଥାଇଥାନ ନିମନ୍ତେ ଇନ୍ଦିରା ଆବାସ ଯୋଜନାରେ ୪୭୫,୩୬ ଲକ୍ଷ ଟଙ୍କା ବ୍ୟୟରେ ୧୬୫୬ ଗୋଟି ଘର ନିର୍ମାଣ କରାଯାଇ ୧୬୫୬ ଗୋଟି ଗରିବ ପରିବାରଙ୍କୁ ଯୋଗାଇ ଦିଆଯାଇଛି ଏବଂ ଜାତୀୟ ଖାଦ୍ୟ ବିନିମୟ କାମ ଯୋଜନାରେ ବର୍ତ୍ତମାନ ୭୬୬,୬୮ ଲକ୍ଷ ଟଙ୍କା ଏବଂ ୭୩୭,୦୯ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ




ବିନିଯୋଗ କରାଯାଇ ୧୩୭୪ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ୩୨୨ ଗୋଟି କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି । ଏଥିସହିତ ସାମାଜିକ ସୁରକ୍ଷା ଯୋଜନାରେ ୨୨,୩୦୬ ଜଣଙ୍କୁ ରାଜ୍ୟ ବାର୍ଦ୍ଧକ୍ୟଭତ୍ତା ଏବଂ ୧୭୪ଟି ପରିବାରଙ୍କୁ ଜାତୀୟ ପରିବାର ମଙ୍ଗଳ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଛି ଏବଂ ଅସହାୟ ଲୋକମାନଙ୍କ ପାଇଁ ବିକଳାଙ୍ଗ କଲ୍ୟାଣ ଯୋଜନା ମାଧ୍ୟମରେ ୩୭୦୪ ଜଣଙ୍କୁ ବିକଳାଙ୍ଗ ଭତ୍ତା, ୨୦୨ ଜଣ ଛାତ୍ରଛାତ୍ରୀଙ୍କୁ ଶିକ୍ଷାବୃତ୍ତି ଏବଂ ୨୩ ଜଣଙ୍କୁ ୩ ଚକିଆ ସାଇକେଲ ଯୋଗାଇ ଦିଆଯାଇଛି ।

ନାରୀ ହେଉଛି ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସେ ଜାୟା, ଜନନୀ, ଭଗିନୀ ଏବଂ କନ୍ୟା ରୂପରେ ପରିବାର ଏବଂ ଦେଶର ସେବା କରେ । ସେମାନଙ୍କର ବିକାଶରେ ରାଜ୍ୟ ତଥା ଦେଶର ହିତ ସାଧିତ ହୋଇଥାଏ । ଏହି ମହିଳାମାନଙ୍କୁ ନେଇ ମହିଳା କଲ୍ୟାଣ ଯୋଜନା ମାଧ୍ୟମରେ ୧୬୦୧ ଜଣଙ୍କୁ ବାଳିକା ସମୃଦ୍ଧି ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଥିବାବେଳେ ମିଶନ୍ ଶକ୍ତି ଦ୍ୱାରା ୨୨୨୮ଟି ସ୍ୱୟଂ ସହାୟକ ଗୋଷ୍ଠୀ ସୃଷ୍ଟି କରାଯାଇ ୨୫,୧୩୦ ଜଣ ମହିଳାଙ୍କୁ ପଞ୍ଜିକରଣ କରାଯାଇଛି, ସେଥିମଧ୍ୟରୁ ୨୧୦୬ଟି ଗୋଷ୍ଠୀଙ୍କୁ ୯୯୬ ଲକ୍ଷ ୯୧ ହଜାର ଟଙ୍କା କ୍ରେଡ଼ିଟ୍ କରାଯାଇଛି ଏବଂ ୨୦୮୯ଟି

ଗୋଷ୍ଠୀଙ୍କୁ ଉନ୍ନତ ଶ୍ରେଣୀଭୁକ୍ତ କରାଯାଇ ୫୯୧ଟି ଗୋଷ୍ଠୀଙ୍କୁ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଖୁଚୁରା ଦୋକାନ, ୧୯ଟି ଗୋଷ୍ଠୀଙ୍କୁ ସବ-ହୋଲସେଲର, ୯୬୫ ଜଣଙ୍କୁ ମଧ୍ୟାହ୍ନ ଭୋଜନ ତିଆରିରେ ନିଯୁକ୍ତିର ସୁବିଧା, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ୮୦ ଜଣଙ୍କୁ ସ୍ୱତନ୍ତ୍ର ପୋଲିସ୍ କ୍ଷମତା ଦିଆଯାଇଥିବା ୩୦ ଗୋଟି କ୍ଲଷ୍ଟର ସଂଘ ୮ ଗୋଟି ବ୍ଲକ୍‌ରେ ଫେଡ଼େରେସନ୍ ସୃଷ୍ଟି କରାଯାଇଛି ଏବଂ ସମନ୍ୱିତ ଶିଶୁ ବିକାଶ ଯୋଜନାରେ ୯୭୧ଟି ଅଙ୍ଗନବାଡ଼ି କେନ୍ଦ୍ର ମାଧ୍ୟମରେ ୮୬,୯୬୧ ଜଣଙ୍କୁ ସ୍ୱତନ୍ତ୍ର ପୁଷ୍ଟିକର ଖାଦ୍ୟ ଯୋଗାଇ ଦିଆଯାଇଛି । ସୂଚନାଯୋଗ୍ୟ ଯେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ମାଧ୍ୟମରେ ଜିଲ୍ଲାର ୧୬୭୪ ଗୋଟି ବିଦ୍ୟାଳୟର ୧୪୫୦୦୩ ଜଣ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯାଇଥିବାବେଳେ, ଜୁଲାଇ ମାସଠାରୁ ମଧ୍ୟାହ୍ନ ଭୋଜନରେ ଛାତ୍ରଛାତ୍ରୀମାନଙ୍କ ପୁଷ୍ଟି ସାଧନ ନିମନ୍ତେ ସିଝା ଅଣ୍ଡା ଦିଆଯାଉଛି । ସ୍ୱାସ୍ଥ୍ୟ ହିଁ ସମ୍ପଦ । ଜଣେ ସୁସ୍ଥ ନାଗରିକ ହିଁ ପ୍ରଗତିର ସୂତ୍ରଧର ହୋଇପାରିବ । ଜିଲ୍ଲାର ଚିକିତ୍ସା ବିଭାଗ ପକ୍ଷରୁ ସାର୍ବଜନୀନ ଟୀକାଦାନ କାର୍ଯ୍ୟକ୍ରମ ମାଧ୍ୟମରେ ଶତକଡ଼ା ୯୩ ଭାଗ ଗର୍ଭବତୀ ମହିଳାଙ୍କୁ ଟିଟାନସ୍ ଇଞ୍ଜେକସନ୍ ଏବଂ ୧୦୦ ଭାଗ ଡି.ପି.ଟି., ୧୦୦ ଭାଗ ପୋଲିଓ, ୧୦୧ ଭାଗ ବି.ସି.ଜି. ଏବଂ ୯୬ ଭାଗ ମିଳିମିଳା ଟୀକା ଦିଆଯାଇଛି । ଏଥିସହିତ ରେଡକ୍ରସ ରକ୍ତ ଭଣ୍ଡାରରେ ୬୬୮ ରକ୍ତ ବୋତଲ ସଂଗ୍ରହ ମଧ୍ୟରୁ ୪୯୮ ବୋତଲ ସ୍ୱେଚ୍ଛାକୃତ, ୧୩୦ ବୋତଲ ବିନିମୟ ରକ୍ତ ସଂଗ୍ରହ, ୮ ଗୋଟି ରକ୍ତଦାନ ଶିବିର କରାଯାଇ ୭୯% ସଫଳତା ହାସଲ କରାଯାଇଛି । ଗତ ଜାନୁଆରୀ ମାସ ୩୦ ତାରିଖରେ ଏକ ମେଗା ରକ୍ତଦାନ ଶିବିର ଆୟୋଜନ କରାଯାଇ ୧୬୭୪ ବୋତଲ ରକ୍ତ ସଂଗ୍ରହ କରାଯାଇଛି ।

ସୁସ୍ଥ ଓ ନିରୋଗ ଜୀବନଯାପନ ପାଇଁ ବିଶୁଦ୍ଧ ଜଳ ଓ ଉତ୍ତମ ପରିମଳ ବ୍ୟବସ୍ଥା ଏକାନ୍ତ ଅପରିହାର୍ଯ୍ୟ । ଢେଙ୍କାନାଳକୁ ଏକ ରୋଗମୁକ୍ତ ତଥା ସୁସ୍ଥ ଜିଲ୍ଲାରେ ପରିଣତ କରିବା ପାଇଁ ସମସ୍ତ ବିଦ୍ୟାଳୟ ଅଙ୍ଗନୱାଡ଼ି କେନ୍ଦ୍ର ଏବଂ ବ୍ୟକ୍ତିବିଶେଷଙ୍କ ଘରମାନଙ୍କରେ ପ୍ରାୟ ୨ ଲକ୍ଷରୁ ଊର୍ଦ୍ଧ୍ୱ ପାଇଖାନା ନିର୍ମାଣ କରାଯିବା ପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଛି । ଏଥିସହିତ ଗ୍ରାମ୍ୟ ଜଳଯୋଗାଣ ସଂସ୍ଥା ମାଧ୍ୟମରେ ୮୧୨ ଗୋଟି ନଳକୂପ ଖନନ କରାଯାଇଛି ଏବଂ ସ୍ୱଜଳଧାରା ଯୋଜନାରେ ଅନୁମୋଦିତ ୩ଟି ପ୍ରକଳ୍ପ ମଧ୍ୟରୁ ଗୋଟିଏ ପ୍ରକଳ୍ପର କାର୍ଯ୍ୟ ଶେଷ ହୋଇଥିବାବେଳେ, ଘରବାଡ଼ି ଯୋଜନାରେ ଜିଲ୍ଲାର ୧୬୬୧୬ ଏକର ଘରଡିହ ୪୩୬୩ ଗୋଟି ପରିବାରଙ୍କୁ ଯୋଗାଇ ଦିଆଯାଇଛି । ଓଡ଼ିଶାରେ ପ୍ରଥମ କରି ନାଗରିକ ସୂଚନା କେନ୍ଦ୍ର 'କିଓସ୍କ' ଜିଲ୍ଲା କାର୍ଯ୍ୟାଳୟରେ ସ୍ଥାପନ କରାଯାଇ ଜନସାଧାରଣମାନଙ୍କୁ ବିଭିନ୍ନ ଯୋଜନା ସମ୍ପର୍କରେ ସୂଚନା ସେବା ଯୋଗାଇ ଦିଆଯାଉଛି । ଜିଲ୍ଲାର ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାରେ ୬ ଗୋଟି ପ୍ରକଳ୍ପ ଶେଷ କରାଯାଇ ୨୮.୮୬୬ କି.ମି. ପିଚୁରାସ୍ତା ଏବଂ ୨୩୭୨ କି.ମି. କଂକ୍ରିଟ ରାସ୍ତା ନିର୍ମାଣ କରାଯାଇଛି ।

ଜିଲ୍ଲାର ବିଭିନ୍ନ ବିଭାଗ ପକ୍ଷରୁ ଯୋଜନାର ଅଗ୍ରଗତି, ସଫଳତା, ଅନାହାର ମୃତ୍ୟୁ ଏବଂ ଯେକୌଣସି ପରିସ୍ଥିତିର ଜରୁରୀ ମୁକାବିଲା କରିବା ନିମନ୍ତେ ପଞ୍ଚାୟତ ସ୍ତରଠାରୁ ଜିଲ୍ଲାସ୍ତର ପର୍ଯ୍ୟନ୍ତ ସମନ୍ୱୟ ପରିଚାଳନା ପଦ୍ଧତି କାର୍ଯ୍ୟକାରୀ କରାଯାଉଛି । ଜିଲ୍ଲାକୁ ଏକ ଶ୍ରେଷ୍ଠ ସମୃଦ୍ଧ ଜିଲ୍ଲା ଭାବେ ପରିଣତ କରିବାକୁ ଢେଙ୍କାନାଳର ପ୍ରତ୍ୟେକ ଜନସାଧାରଣଙ୍କ ସହଯୋଗ ଏକାନ୍ତ କାମ୍ୟ ।

ଉପଖଣ୍ଡ ସୂଚନା ଅଧିକାରୀ
ହିନ୍ଦୋଳ, ଢେଙ୍କାନାଳ

---

## ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ହାଇଦ୍ରାବାଦର କଳିଙ୍ଗ ସାଂସ୍କୃତିକ ସମିତିର ଆଜୀବନ ସଦସ୍ୟ ହେଲେ

ରାଜ୍ୟ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କୁ ହାଇଦ୍ରାବାଦର କଳିଙ୍ଗ ସାଂସ୍କୃତିକ ସମିତିର ଆଜୀବନ ସଦସ୍ୟ ଭାବେ ଗ୍ରହଣ କରାଯାଇଛି । ହାଇଦ୍ରାବାଦରେ ସମିତିର କୋଷାଧ୍ୟକ୍ଷ ଗଗନ ବିହାରୀ ରାଉତଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସମିତିର ଏକ ବୈଠକରେ ଏ ସଂକ୍ରାନ୍ତରେ ସର୍ବସମ୍ମତି ନିଷ୍ପତ୍ତି ଗ୍ରହଣ କରାଯାଇଛି । ସମିତି ପକ୍ଷରୁ ନିର୍ମାଣ କରାଯାଉଥିବା ଶ୍ରୀଜଗନ୍ନାଥ ମନ୍ଦିର ଓ କଳିଙ୍ଗ ହାଉସ୍‌କୁ ମନ୍ତ୍ରୀ ଶ୍ରୀ ନାୟକ ପରିଦର୍ଶନ କରି ୧୦ ହଜାର ଟଙ୍କା ଦାନ କରିଛନ୍ତି । ମନ୍ଦିର ନିର୍ମାଣ ନିମନ୍ତେ ଅଧିକ ସାହାଯ୍ୟ ଯୋଗାଇ ଦେବାକୁ ମଧ୍ୟ ମନ୍ତ୍ରୀ ଶ୍ରୀ ନାୟକ ପ୍ରତିଶ୍ରୁତି ଦେଇଛନ୍ତି । ଏହି ପରିଦର୍ଶନ ସମୟରେ ସମିତିର ଅଧ୍ୟକ୍ଷ ସି.ଆର୍. ବିଶ୍ୱାଳ, ସାଧାରଣ ସଂପାଦକ ପ୍ରଦୀପ୍ କୁମାର ଏବଂ ଅନ୍ୟାନ୍ୟ ସଦସ୍ୟମାନେ ଉପସ୍ଥିତ ଥିଲେ ।




# ସମ୍ବାଦ ପରିକ୍ରମା



## ଡେରାସ କୃଷି ଫାର୍ମରେ ଜୈବ ପ୍ରଯୁକ୍ତି ବିଦ୍ୟା ପାର୍କ ପ୍ରତିଷ୍ଠା କରାଯିବ - ମୁଖ୍ୟମନ୍ତ୍ରୀ

ଡେରାସ କୃଷି ଫାର୍ମରେ ୨୫୦ ଏକର ପରିମିତ ଜମିରେ ଜୈବ ପ୍ରଯୁକ୍ତି ବିଦ୍ୟା ପାର୍କ ପ୍ରତିଷ୍ଠା କରାଯିବ ବୋଲି ଆଜି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ରାଜ୍ୟରେ ଜୈବ ପ୍ରଯୁକ୍ତି ବିଦ୍ୟାର ବିକାଶ ପାଇଁ ଥିବା ବିପୁଳ ସୁଯୋଗର ସଦ୍‌ବିନିଯୋଗ କରି ବ୍ୟାପକ ସୁଯୋଗ ସୃଷ୍ଟି କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଛନ୍ତି । ଡେରାସଠାରେ କୃଷି ଫାର୍ମରେ ଜୈବ ପ୍ରଯୁକ୍ତି ବିଦ୍ୟା ପାର୍କ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ଜମି ଯୋଗାଇବା ସହିତ ୧୦ କୋଟି ଟଙ୍କାର ଅର୍ଥ ଯୋଗାଇ ଦେବେ । ଏହି କ୍ଷେତ୍ରର ବିକାଶ ପାଇଁ ସରକାରୀ ଓ ଘରୋଇ କ୍ଷେତ୍ରର ମିଳିତ ସହଯୋଗକୁ ଉତ୍ସାହିତ କରାଯିବ । ପୂର୍ବ ଭାରତରେ ଓଡ଼ିଶା କୃଷି ଜୈବ ପ୍ରଯୁକ୍ତି ଓ ଔଷଧୀୟ ଜୈବ ପ୍ରଯୁକ୍ତି କ୍ଷେତ୍ରରେ ଏକ ଅଗ୍ରଣୀ ରାଜ୍ୟ ଭାବରେ ପ୍ରତିଷ୍ଠିତ ହେବ ।

ସେହିପରି କୋଣାର୍କର ଚନ୍ଦ୍ରଭାଗାଠାରେ ସାମୁଦ୍ରିକ ଜୈବ ପ୍ରଯୁକ୍ତି ବିଦ୍ୟା ପାର୍କ ପ୍ରତିଷ୍ଠା ପାଇଁ ସରକାର ବାରରୁ ପନ୍ଦର ଏକର ଜମି ଯୋଗାଇ ଦେବା ପାଇଁ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଛି । ଓଡ଼ିଶାକୁ ଜୈବ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରି ଏକ୍ଷେତ୍ରରେ ରାଜ୍ୟକୁ ପୁଂଜିନିବେଶକାରୀମାନଙ୍କ ଲକ୍ଷ୍ୟସ୍ଥଳ ଭାବରେ ଗଢ଼ି ତୋଳାଯିବ ବୋଲି ମୁଖ୍ୟମନ୍ତ୍ରୀ ବୈଠକରେ ସୂଚନା ଦେଇଥିଲେ ।

ଏହି ବୈଠକରେ ବିଜ୍ଞାନ ଓ କାରିଗରୀ ବିଦ୍ୟା ମନ୍ତ୍ରୀ ଶ୍ରୀ ରବିନାରାୟଣ ନନ୍ଦ, ଉନ୍ନୟନ କମିଶନର ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, କୃଷି ଉତ୍ପାଦନ କମିଶନର ଶ୍ରୀ ରବିନାରାୟଣ ବହିଦାର, ଅର୍ଥ ବିଭାଗର ପ୍ରମୁଖ ସଚିବ ଶ୍ରୀ ୟୁ. ଶରତଚନ୍ଦ୍ରନଙ୍କ ସମେତ ସଂପୃକ୍ତ ବିଭାଗର ଶାସନ ସଚିବମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

## କ୍ରୀଡ଼ା ଛାତ୍ରାବାସ ଓ ପାରଦର୍ଶିତା କେନ୍ଦ୍ର ଅନ୍ତେଃବାସୀମାନଙ୍କ ଷ୍ଟାଇପେଣ୍ଡ ୨୨୫୦ ଟଙ୍କାକୁ ବୃଦ୍ଧି

ରାଜ୍ୟ ସରକାର କ୍ରୀଡ଼ା ଯୁବସେବା ବିଭାଗ ଅଧୀନସ୍ଥ କ୍ରୀଡ଼ା ଛାତ୍ରାବାସ ଓ ପାରଦର୍ଶିତା କେନ୍ଦ୍ରର ଅନ୍ତେଃବାସୀମାନଙ୍କ ମାସିକ ଷ୍ଟାଇପେଣ୍ଡ ୧୨୦୦ ଟଙ୍କାରୁ ୨୨୫୦ ଟଙ୍କାକୁ ବୃଦ୍ଧି କରିଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ କ୍ରୀଡ଼ା ଓ ଯୁବସେବା ବିଭାଗ ଅଧୀନରେ ୧୪ଟି କ୍ରୀଡ଼ା ଛାତ୍ରାବାସ ଓ ୩ଟି ପାରଦର୍ଶିତା କେନ୍ଦ୍ର ରହିଛି ଏବଂ ଏଥିରେ ୧୩୭ ଜଣ ଝିଅପିଲାଙ୍କ ସମେତ ମୋଟ ୬୭୫ ଜଣ ପିଲା ରହି ବିଭିନ୍ନ କ୍ରୀଡ଼ାରେ ତାଲିମ ଗ୍ରହଣ କରୁଛନ୍ତି । ସେମାନଙ୍କୁ ଖାଦ୍ୟ ବାବଦକୁ ଦୈନିକ ୪୦ ଟଙ୍କା ଲେଖାଏଁ ଭତ୍ତା ପ୍ରଦାନ କରାଯାଉଥିଲା । କ୍ରୀଡ଼ାରେ ପାରଦର୍ଶିତା ନିମନ୍ତେ ଶାରୀରିକ ଦକ୍ଷତା ବଜାୟ ରଖିବା ପାଇଁ ଉପଯୁକ୍ତ ସୁଷମ ଖାଦ୍ୟର ଆବଶ୍ୟକତାକୁ ବିଚାରକୁ ନେଇ ବିଭାଗୀୟ ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ଉଦ୍ୟମକ୍ରମେ ଏହାକୁ ୭୫ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହି ଭତ୍ତା ବୃଦ୍ଧି ସହିତ ଦୈନନ୍ଦିନ ପିଲାମାନଙ୍କୁ ଖାଇବାକୁ ଦିଆଯିବା ନିମନ୍ତେ ସୁଷମ ଖାଦ୍ୟର ଏକ ତାଲିକା ମଧ୍ୟ ପ୍ରଦାନ କରାଯାଇଛି । ପିଲାମାନଙ୍କୁ ଏହି ସୁଷମ ଖାଦ୍ୟ ତାଲିକା ଅନୁଯାୟୀ ଖାଦ୍ୟ ପ୍ରଦାନରେ ଯେପରି କୌଣସି ତ୍ରୁଟି ନରହେ, ସେଥିପ୍ରତି ମନ୍ତ୍ରୀ ଶ୍ରୀ ନାୟକ ସତର୍କ କରାଇ ଦେଇଛନ୍ତି ।

ସେହିପରି ଛାତ୍ରାବାସ ଓ ପାରଦର୍ଶିତା କେନ୍ଦ୍ରମାନଙ୍କରେ ରହୁଥିବା ଅନ୍ତେଃବାସୀ ଝିଅପିଲାମାନଙ୍କର ଶୌଚାଳୟ ଆବଶ୍ୟକତା ପୂରଣ ନିମନ୍ତେ ମାସିକ ୧୦୦ ଟଙ୍କା ଲେଖାଏଁ ପ୍ରଦାନ କରାଯିବାକୁ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ଏବଂ ଏହା ମଧ୍ୟ ଆସନ୍ତା କାଲିଠାରୁ ପ୍ରଦାନ କରାଯିବ ବୋଲି କ୍ରୀଡ଼ା ଓ ଯୁବସେବା ବିଭାଗ ପକ୍ଷରୁ ପ୍ରକାଶିତ ବିଜ୍ଞପ୍ତିରେ କୁହାଯାଇଛି ।

ସମ୍ପାଦକୀୟ

# ଆମ ଗଣତନ୍ତ୍ର

ସମଗ୍ର ବିଶ୍ୱରେ ଭାରତବର୍ଷ ଏକ ବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ପରିଗଣିତ । ବିଶେଷକରି ଏହି ଦେଶ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ଓ ପ୍ରଜାତନ୍ତ୍ର ରାଷ୍ଟ୍ର ହୋଇଥିବାରୁ ବିଶ୍ୱ ଦରବାରରେ ଏହାର ମାନ୍ୟତା ଓ ପରିଚୟ ସ୍ୱତନ୍ତ୍ର । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଐକ୍ୟ, ସଂହତି, ଅଖଣ୍ଡତା, ସହନଶୀଳ ନୀତି ଏହାର ଆତ୍ମିକ ମର୍ଯ୍ୟାଦା ବୃଦ୍ଧି କରିଛି ।

ଜାନୁଆରୀ-୨୬ ତାରିଖ ଭାରତୀୟ ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ । ଆଜକୁ ୫୬ ବର୍ଷ ତଳେ ଏହି ଦିନ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରବର୍ତ୍ତିତ ହୋଇଥିଲା । ଶହ ଶହ ବର୍ଷର ପରାଧୀନତା, ଶୋଷଣ, ଅତ୍ୟାଚାର, ଲାଞ୍ଛନାର କୁତ୍ସିତ ବଳୟରୁ ବାହାରି ଆସିବା ପାଇଁ ଅନେକ ପର୍ଯ୍ୟାୟର ଆନ୍ଦୋଳନରେ ଦେଶବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ବହୁମୂଲ୍ୟ ଦେବାକୁ ପଡ଼ିଛି । ସେମାନଙ୍କୁ ଅତୀବ ଲାଞ୍ଛନା, ନିର୍ଯ୍ୟାତନା ଓ ଯନ୍ତ୍ରଣା ସହିବାକୁ ପଡ଼ିଛି । ଅସୁମାରୀ ଦେଶଭକ୍ତ ନାରୀ, ପୁରୁଷ ପ୍ରାଣବଳି ଦେଇଛନ୍ତି, ଫାଶୀଖୁଣ୍ଟରେ ହସି ହସି ଶହୀଦ ହୋଇଛନ୍ତି । ଏ ଦେଶ ଓ ଜାତି ପାଇଁ ସେମାନଙ୍କ ତ୍ୟାଗ ଓ ବୀରତ୍ୱର ପଟ୍ଟାନ୍ତର ନାହିଁ । ଆଜିର ପବିତ୍ର ଦିବସରେ ସେହି ବରପୁତ୍ରମାନଙ୍କର ଅପୂର୍ବ ଦେଶପ୍ରୀତିକୁ ସ୍ମରଣ କରି ସେମାନଙ୍କ ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଆମ ଦେଶର ଗଣତନ୍ତ୍ର ବହୁ ଉତ୍‌ଥାନ ପତନ ଓ ପରୀକ୍ଷାନିରୀକ୍ଷା ଦେଇ ଗତି କରିଚାଲିଛି । ତାହାରି ଭିତରେ ଆମର ରାଷ୍ଟ୍ର ପୁନର୍ଗଠନ ପ୍ରୟାସ ଜାରି ରହିଛି - ଏକ ସ୍ୱର୍ଣ୍ଣପ୍ରସୂ ଭାରତର ରୂପ । ଏଠି ସବୁଜ ବିପ୍ଳବ ମାଧ୍ୟମରେ ହସି ଉଠିବ ଜୀବନର ଧାରା । ଶିଳ୍ପ ବିପ୍ଳବ ମାଧ୍ୟମରେ ପୂର୍ଣ୍ଣ ହୋଇ ଉଠିବ ବ୍ୟକ୍ତିଗତ ଜୀବନ ଭଣ୍ଡାର । ଏହି ସ୍ୱପ୍ନକୁ ସାକାର କରିବାରେ ଆମେ ବହୁତ ଆଗକୁ ଆସିଛୁ । ସ୍ୱାସ୍ଥ୍ୟ, ଶିକ୍ଷା, ବିଜ୍ଞାନ, କୃଷି, ଶିଳ୍ପ, ସୂଚନା ପ୍ରଯୁକ୍ତି ବିଦ୍ୟା, ଜୈବ ପ୍ରଯୁକ୍ତି ବିଦ୍ୟା, ମହାକାଶ ଗବେଷଣା, ପରମାଣୁ ଶକ୍ତିର ଶାନ୍ତିପୂର୍ଣ୍ଣ ପ୍ରୟୋଗ ପାଇଁ ସ୍ୱୀକୃତ ଅନୁରକ୍ତି - ସବୁକ୍ଷେତ୍ରରେ ଆମେ ଅଗ୍ରଗତି କରୁଛେ । ତଥାପି ରାଷ୍ଟ୍ରଗଠନ ପ୍ରକ୍ରିୟାରେ ଆମର ପ୍ରୟାସ ଜାରି ରହିଛି ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଅଗ୍ରଗତି ଓ ପରିଚିତି ସ୍ୱତନ୍ତ୍ର । ଓଡ଼ିଶାକୁ ଭାରତର ଏକ ଅଗ୍ରଗାମୀ ରାଜ୍ୟ ରୂପେ ଗଢ଼ିତୋଳିବା ପାଇଁ ରାଜ୍ୟ ସରକାର ବହୁବିଧ ପଦକ୍ଷେପମାନ ନେଇଛନ୍ତି । ଓଡ଼ିଶାରେ ବର୍ତ୍ତମାନ ଯେଉଁ ବିକାଶଧାରା ଆରମ୍ଭ ହୋଇଛି, ତାହାକୁ ଆଗେଇ ନେବା ପାଇଁ ସମସ୍ତଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । ୨୦୦୬ ଫେବୃଆରୀ ୨ ତାରିଖରୁ ଗ୍ରାମୀଣ ନିଶ୍ଚିତ ରୋଜଗାର ଯୋଜନାର ଶୁଭାରମ୍ଭ ଆମ ରାଜ୍ୟରେ ପ୍ରବର୍ତ୍ତନ ହେବାକୁ ଯାଉଛି । ପ୍ରତ୍ୟେକ ପରିବାରକୁ ୧୦୦ ଦିନର କାମ ଯୋଗାଇ ଦେବା ଏହି ଯୋଜନାର ଲକ୍ଷ୍ୟ । ମହିଳାଙ୍କ ପାଇଁ ମିଶନ୍ ଶକ୍ତି, ଚାଷୀଙ୍କ ପାଇଁ ପାଣିପଞ୍ଚାୟତ ଓ ବିଜୁ କୃଷକ ଯୋଜନା, ବେକାରଙ୍କ ପାଇଁ ନିଯୁକ୍ତି ମିଶନ୍, ଗ୍ରାମାଞ୍ଚଳର ଗରିବ ଲୋକଙ୍କ ପାଇଁ ୧୦୦ ଦିନର ନିଶ୍ଚିତ ନିଯୁକ୍ତି ଯୋଜନା କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଚଳିତ ବର୍ଷ ଜାନୁଆରୀ ୨୬ ତାରିଖରୁ ପ୍ରତ୍ୟେକ ପରିବାରଙ୍କୁ ଜମି ପାସବୁକ୍ ଦେବା ପାଇଁ କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ଗ୍ରାମାଞ୍ଚଳର ଉନ୍ନତି

ପାଇଁ ଅହରହ ଉଦ୍ୟମ ଚାଲୁରହିଛି । ସବୁ ଗାଁକୁ ପକ୍କାରାସ୍ତା, ପିଇବା ପାଣି, ବିଜୁଳି ଯୋଗାଇ ଦେବା ସହ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାର ଉନ୍ନତି ପାଇଁ ବିଶେଷ ଧ୍ୟାନ ଦିଆଯାଇଛି । ବିଶେଷତଃ ଆଦିବାସୀ ଜିଲ୍ଲାମାନଙ୍କରେ ପ୍ରତ୍ୟେକ ଆଦିବାସୀ ପରିବାରର ଚାଷ ଜମିରେ ଗୋଟିଏ ଲେଖାଏଁ କୂପ ଖନନ ପାଇଁ ପଦକ୍ଷେପ ନିଆଯାଉଛି । ଶିଳ୍ପ କ୍ଷେତ୍ରରେ ଓଡ଼ିଶା ସମଗ୍ର ଭାରତବର୍ଷରେ ବର୍ତ୍ତମାନ ଏକ ପ୍ରମୁଖ ରାଜ୍ୟ ରୂପେ ପରିଗଣିତ ହେବାକୁ ଯାଉଛି । ଶିଳ୍ପ ବିପ୍ଳବର ଏକ ଅଭିନବ ପ୍ରଗତିର ଦ୍ୱାର ଦେଶରେ ଓଡ଼ିଶା ଦଣ୍ଡାୟମାନ । ଓଡ଼ିଶାରେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ପାଇଁ ସରକାର ୪୩ଟି ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ବିଶ୍ୱର ବୃହତ୍ ଇସ୍ପାତ୍ କମ୍ପାନୀ ପୋସ୍କୋ ଦ୍ୱାରା ୫୧ ହଜାର କୋଟି ଟଙ୍କାର ପୁଞ୍ଜି ଲଗାଣ ଯାହାକି ଭାରତବର୍ଷର ଶିଳ୍ପ କ୍ଷେତ୍ରରେ ବିଦେଶୀପୁଞ୍ଜି ଲଗାଣ ତୁଳନାରେ ସର୍ବାଧିକ । ଏହା ଫଳରେ ଓଡ଼ିଶାରେ ଶିଳ୍ପ କ୍ଷେତ୍ରରେ ସରକାର ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ ଯାଉଛନ୍ତି । ହଜାର ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ ସହ ପ୍ରାୟ ୧୦ ଲକ୍ଷ ଓଡ଼ିଆଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ନିଯୁକ୍ତି ସମ୍ଭବ ହୋଇ ରାଜ୍ୟର ବିକାଶ କ୍ଷେତ୍ରରେ ଏହା ଏକ ଯୁଗାନ୍ତକାରୀ ପଦକ୍ଷେପ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଶିଳ୍ପାୟନର ଏହି ଧାରା ଭବିଷ୍ୟତରେ ଯେପରି ବଜାୟ ରହେ, ସେଥିପାଇଁ ରାଜ୍ୟବାସୀ ସମସ୍ତ ବାଦବିସମ୍ବାଦ ଭୁଲି ଏ କ୍ଷେତ୍ରରେ ଅକୁଣ୍ଠ ସହଯୋଗ କରିବା ଏକାନ୍ତ ଆବଶ୍ୟକ । ଏତଦ୍‌ବ୍ୟତୀତ ଗୋପାଳପୁର-ଧାମରା ବନ୍ଦର ଓ ସ୍ୱତନ୍ତ୍ର ଅର୍ଥନୈତିକ ଜୋନ୍ ପ୍ରତିଷ୍ଠା ପାଇଁ ପ୍ରଚେଷ୍ଟା ଚାଲୁ ରହିଛି । ନୂତନ ବର୍ଷ ପ୍ରାରମ୍ଭରୁ ସୂଚନା ପ୍ରଯୁକ୍ତି ବିଦ୍ୟା, ଜୈବ ପ୍ରଯୁକ୍ତି ବିଦ୍ୟା ଓ ସମ୍ମାନସ୍ପଦ ଗଣିତ ଅନୁଷ୍ଠାନ ଭଳି ବହୁ ଅନୁଷ୍ଠାନ ପ୍ରତିଷ୍ଠା ପାଇଁ ପଦକ୍ଷେପ ନିଆଯାଇଛି ।

ଏହି ସ୍ୱପ୍ନର ସଫଳତା ଆମକୁ ଦାରିଦ୍ର୍ୟ, ବେରୋଜଗାରୀ ଓ ବେକାରୀରୁ ମୁକ୍ତି ଦେବ ଏବଂ ଏକ ନୂତନ ସୁସ୍ଥ ସମୃଦ୍ଧ ଓଡ଼ିଶା ଗଠନ କରିବାରେ ସହାୟକ ହେବ ।

ଆଜିର ଏହି ପବିତ୍ର ଗଣତନ୍ତ୍ର ଦିବସର ଶୁଭ ଅବସରରେ ଆମେ ରାଜ୍ୟର ବିକାଶ ପଥରେ ଆସୁଥିବା ସମସ୍ତ ବାଧାବିଘ୍ନକୁ ଶକ୍ତି ଓ ସାହସର ସହ ମୁକାବିଲା କରିବା, ଏକ ପ୍ରଗତିଶୀଳ ଏବଂ ସମୃଦ୍ଧ ଓଡ଼ିଶା ଗଠନ ନିମନ୍ତେ ନିଜକୁ ଉତ୍ସର୍ଗ କରିବା, ଯାହାଫଳରେ କି ସମଗ୍ର ଭାରତବର୍ଷରେ ଓଡ଼ିଶା ଏକ ସମୃଦ୍ଧିଶାଳୀ ରାଜ୍ୟ ରୂପେ ବିବେଚିତ ହେବ । ୫୭ତମ ଗଣତନ୍ତ୍ର ଦିବସ ପାଳନ ଅବସରରେ 'ଉତ୍କଳ ପ୍ରସଙ୍ଗ'ର ପାଠକପାଠିକା ତଥା ଓଡ଼ିଶାର ଭାଇଭଉଣୀମାନଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଇ ସେମାନଙ୍କର ସୁଖ ସମୃଦ୍ଧି କାମନା କରୁଛୁ ।

ଏକାମ୍ର ଉତ୍ସବ ପାଳନ ଅବସରରେ ଏକାମ୍ରକ୍ଷେତ୍ର ସମ୍ବନ୍ଧୀୟ କେତେକ ଉପାଦେୟ ପ୍ରବନ୍ଧ ଆମେ ଏଥିରେ ସ୍ଥାନୀତ କରିଛୁ । ପ୍ରବନ୍ଧଗୁଡ଼ିକ ପାଠକପାଠିକାଙ୍କ ନିକଟରେ ଆଦୃତ ହେବ ବୋଲି ଆମର ଆଶା ।





# ସାଧାରଣତନ୍ତ୍ର ଦିବସ -୨୦୦୬ ଅବସରରେ
# ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ
# **ଶ୍ରୀ ରାମେଶ୍ୱର ଠାକୁରଙ୍କ**
# **ବାର୍ତ୍ତା**

ଆଜିର ୫୬ ବାର୍ଷିକୀ ପବିତ୍ର ସାଧାରଣତନ୍ତ୍ର ଦିବସ ପାଳନ ଅବସରରେ ମୁଁ ଓଡ଼ିଶାର ଭାଇ ଓ ଭଉଣୀମାନଙ୍କୁ ମୋର ଗଭୀର ଶ୍ରଦ୍ଧା ଓ ଅଭିନନ୍ଦନ ଜଣାଉଛି ।

ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆମ ଦେଶର ମହାନ୍ ସ୍ୱାଧୀନତା ସଂଗ୍ରାମୀମାନେ ବ୍ରିଟିଶ୍‌ରାଜ ବିରୁଦ୍ଧରେ ଅବିଶ୍ରାନ୍ତ ସଂଗ୍ରାମ କରିଥିଲେ ଏବଂ ଆମ ଦେଶ ପାଇଁ ସ୍ୱାଧୀନତା ହାସଲ କରିଥିଲେ । ଦେଶ ପାଇଁ ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ମଧ୍ୟରୁ ଅନେକ ପ୍ରାଣବଳି ଦେଇଥିଲେ । ଆମେ ସେହି ବୀର ଯୋଦ୍ଧାମାନଙ୍କର ଅନନ୍ୟ ତ୍ୟାଗ, ମୁକ୍ତିର ଅଦମ୍ୟ ସଂକଳ୍ପ ଏବଂ ମାତୃଭୂମି ପ୍ରତି ଅସୀମ ପ୍ରୀତି ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ଆମ ଦେଶର ନାଗରିକମାନଙ୍କର ମୌଳିକ ଅଧିକାରକୁ ଅକ୍ଷୁଣ୍ଣ ରଖିବାରେ ଭାରତୀୟ ସମ୍ବିଧାନ ବିଶ୍ୱରେ ଅନନ୍ୟ ଅଟେ । ଭାରତୀୟ ଗଣତନ୍ତ୍ରର କାର୍ଯ୍ୟକାରିତା ଆମ ସମ୍ବିଧାନର ମାନଦଣ୍ଡ ଉପରେ ହିଁ ନିର୍ଭର କରିଥାଏ । ଆମେ ସେହି ମହାନ୍ ପୁରୁଷଙ୍କୁ ଆମର ଆନ୍ତରିକ ସମ୍ମାନ ଜଣାଉଛୁ, ଯେଉଁମାନେ ଭାରତୀୟ ସମ୍ବିଧାନରେ ମୌଳିକ ଆଦର୍ଶ ନୀତିକୁ ସାକାର ରୂପ ପ୍ରଦାନ କରିଥିଲେ, ଯାହାକି ୧୯୫୦ ମସିହା ଆଜିର ଦିବସରେ କାର୍ଯ୍ୟକାରୀ ହୋଇଥିଲା ।

ଆପଣମାନେ ଜାଣନ୍ତି ଓଡ଼ିଶାର ଏକ ଗୌରବମୟ ଉଜ୍ଜ୍ୱଳ ଅତୀତ ଥିଲା । ଓଡ଼ିଶାର ଜନସାଧାରଣ ସୁଦକ୍ଷ ନାବିକ ଥିଲେ, ଯେଉଁମାନେ ନୌବାଣିଜ୍ୟରେ ଉତ୍କର୍ଷତା ହାସଲ କରି ଓଡ଼ିଶାକୁ ବିଭବଶାଳୀ କରିଥିଲେ । କଳିଙ୍ଗର ଜନସାଧାରଣ ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶକୁ ନୌଯାତ୍ରା କରିଥିଲେ ଏବଂ ଏବେବି ଏହିସବୁ ଦେଶରେ ଉତ୍କଳୀୟ ସଂସ୍କୃତିର ସ୍ପଷ୍ଟ ପଦଚିହ୍ନ ଦେଖିବାକୁ ମିଳେ ।

ଜଗନ୍ନାଥ ସଂସ୍କୃତିରୁ ନିଃସୃତ ଓଡ଼ିଶାର ଏକ ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ରହିଛି, ଯାହା ଜାତି, ଧର୍ମ ଏବଂ ସମ୍ପ୍ରଦାୟର ଊର୍ଦ୍ଧ୍ୱରେ ଶାନ୍ତି, ପ୍ରୀତି ଓ ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ପ୍ରଚାର କରିଥାଏ । ଏହି ମାଟିରେ ପ୍ରାୟ ୨୩ ଶତାବ୍ଦୀ ପୂର୍ବେ କଳିଙ୍ଗ ଯୁଦ୍ଧ ପରେ ସମ୍ରାଟ ଅଶୋକଙ୍କ ଦ୍ୱାରା ଅହିଂସାର ଦର୍ଶନ ବାସ୍ତବତାରେ ରୂପାନ୍ତରିତ ହୋଇଥିଲା ।

ଓଡ଼ିଶା ବିପୁଳ ପ୍ରାକୃତିକ ସମ୍ପଦରେ ଭରପୂର । ଏହାର ପର୍ଯ୍ୟାପ୍ତ ଖଣି, ଜଙ୍ଗଲ, ଜଳ ଏବଂ ମାନବ ସମ୍ବଳ ରହିଛି । ଓଡ଼ିଶାର ଜନସାଧାରଣ କଠିନ ପରିଶ୍ରମୀ ଏବଂ ଉଦ୍ୟମୀ । ମୋ' ସରକାର ଏକ ଦ୍ରୁତ ଶିଳ୍ପାୟନର ଯୋଜନା ଉପରେ ପ୍ରାଥମିକତା ଦେଉଛି, ଯାହା ଆମର ଖଣିଜ ସମ୍ପଦର ସୁବିନିଯୋଗ ଦ୍ୱାରା ଯୁବସମାଜ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ରାଜ୍ୟ ରାଜକୋଷକୁ ସମୃଦ୍ଧ କରିବ । ରାଜ୍ୟରେ ଇସ୍ପାତ୍ ଓ ଆଲୁମିନିୟମ୍ କ୍ଷେତ୍ରରେ ନୂତନ ଶିଳ୍ପ ପ୍ରତିଷ୍ଠା ପାଇଁ ୪୩ଟି ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି । ଏ ସମସ୍ତ ପ୍ରକଳ୍ପ ସମ୍ପୂର୍ଣ୍ଣ ହେଲେ ରାଜ୍ୟ ଏବଂ କେନ୍ଦ୍ର ରାଜକୋଷକୁ ପର୍ଯ୍ୟାପ୍ତ ରାଜସ୍ୱ ମିଳିପାରିବ ଏବଂ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଆମର ଯୁବପିଢ଼ିଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ହେବ । ଶିଳ୍ପାୟନ ପ୍ରକ୍ରିୟା ଆମର ପରିବେଶୀୟ ସମସ୍ୟାକୁ ପ୍ରଭାବିତ କରିବ ଏବଂ ଏଥିପାଇଁ ପରିବେଶ ପ୍ରତି ଯଥୋଚିତ ଗୁରୁତ୍ୱ ଦିଆଯିବ ।

ସଂପ୍ରତି ଆମର ଥଇଥାନ ଏବଂ ପୁନର୍ବସତି ନୀତି ଅନୁଯାୟୀ ପ୍ରତିଟି ବିସ୍ଥାପିତ ପରିବାରର ଜଣେ ଲେଖାଏଁ ସଦସ୍ୟଙ୍କୁ ଶିଳ୍ପାନୁଷ୍ଠାନରେ କିମ୍ବା ଏହାର ସହାୟକ ପ୍ରତିଷ୍ଠାନରେ ନିଯୁକ୍ତି ଦିଆଯିବ । ଯଦି ବିସ୍ଥାପିତ ପରିବାରର ସଦସ୍ୟମାନଙ୍କୁ ନିଯୁକ୍ତି ପ୍ରଦାନ କରାଯାଇ ନପାରେ, ତା'ହେଲେ ସେମାନଙ୍କୁ ବିଭିନ୍ନ ଆତ୍ମନିଯୁକ୍ତି ଯୋଜନା ଯଥା- ଦୋକାନ ଗୃହ ବଣ୍ଟନ, କମ୍ପାନୀର

ସହରାଞ୍ଚଳ ପରିସରରେ ବିଭିନ୍ନ କାର୍ଯ୍ୟ ଓ ସେବା ପ୍ରଦାନ ପାଇଁ ସହାୟତା ପ୍ରଦାନ କରାଯିବ । ରାସ୍ତାଘାଟ, ଗୋଷ୍ଠୀକେନ୍ଦ୍ର, ବିଦ୍ୟାଳୟ ଗୃହ, ଜଳଯୋଗାଣ, ବିଦ୍ୟୁତ୍ ଯୋଗାଣ, ଡାକ୍ତରଖାନା ପ୍ରଭୃତି ସୁବିଧା ସହ ଏକ ଆଦର୍ଶ କଲୋନୀ ଯୋଗାଇ ଦିଆଯିବ । ବାସଚ୍ୟୁତ ପରିବାରଗୁଡ଼ିକର ମନୋନୀତ ବ୍ୟକ୍ତିମାନଙ୍କୁ ନିଯୁକ୍ତି ନିମନ୍ତେ ଉପଯୁକ୍ତ କୌଶଳ ହାସଲ ଲକ୍ଷ୍ୟରେ ଆବଶ୍ୟକ ପ୍ରଶିକ୍ଷଣ ସୁବିଧା ଯୋଗାଇ ଦିଆଯିବ । କଳିଙ୍ଗ ନଗରରେ ଜମି ଅଧିଗ୍ରହଣ କାର୍ଯ୍ୟକାରୀ ହେଉଥିବା ସମୟରେ ୧୨ ଜଣ ଆଦିବାସୀ ଓ ଜଣେ ପୋଲିସ୍ କର୍ମଚାରୀଙ୍କ ମୃତ୍ୟୁର ଦୁର୍ଭାଗ୍ୟପୂର୍ଣ୍ଣ ଘଟଣାରେ ମୋ ସରକାର ଅତ୍ୟନ୍ତ ମର୍ମାହତ । ଏହି ପରିସ୍ଥିତିର ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ ପାଇଁ ଏବଂ ଆଦିବାସୀ ଓ ଅନ୍ୟାନ୍ୟ ଜମିଜମା ସମସ୍ୟାର ସମାଧାନ ନିମନ୍ତେ ଏକ ଦୀର୍ଘମିଆଦୀ ପୁନର୍ବସତି ଓ ପୁନଃଥଇଥାନ ନୀତି ନିର୍ଦ୍ଧାରଣ ଉଦ୍ଦେଶ୍ୟରେ ମୋ' ସରକାର କେତେ ଜଣ ମନ୍ତ୍ରୀଙ୍କୁ ନେଇ ଏକ କମିଟି ଗଠନ କରିଛନ୍ତି, ଯେଉଁମାନେକି ପ୍ରଚଳିତ ନିୟମକୁ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରିବା ସହ ଏହା ଉପରେ ବିସ୍ତୃତ ତର୍ଜମା କରି ସେମାନଙ୍କର ମତାମତ ପ୍ରଦାନ କରିବେ ।

ଆମ ଜନ ସଂଖ୍ୟାର ୨୩ ପ୍ରତିଶତ ଆଦିବାସୀମାନଙ୍କର ଉନ୍ନତିକୁ ମୋ ସରକାର ଅଗ୍ରାଧିକାର ଦେଉଛନ୍ତି । ଆଦିବାସୀ ପରିବାରର ରୋଜଗାର ବଢ଼ାଇବାକୁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମଗୁଡ଼ିକ ମୋ ସରକାର ପ୍ରଥମରୁ ଆରମ୍ଭ କରିଛନ୍ତି । ସେମାନଙ୍କ ପରିବାରର ରୋଜଗାରର ଏକ ପରିପୋଷକ ଅଂଶ ରୂପେ ୬୦ଟି ଲଘୁ ବନଜାତ ଦ୍ରବ୍ୟ ଏବଂ ଅଣକାଷ୍ଠ-ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିୟନ୍ତ୍ରଣ ଗ୍ରାମପଞ୍ଚାୟତକୁ ହସ୍ତାନ୍ତର କରାଯାଇଛି । ଏହିସବୁ ଆଦିବାସୀ ଅଂଚଳର ସାମଗ୍ରିକ ଉନ୍ନତି ନିମନ୍ତେ ୧୦ ବର୍ଷ ଅବଧି ପାଇଁ ଆନ୍ତର୍ଜାତୀୟ ଉନ୍ନୟନ ଆର୍ଥିକ ସହାୟତା ପ୍ରଦାନକାରୀ ସଂସ୍ଥାଠାରୁ ସାହାଯ୍ୟ ସହ ୩୦ ଗୋଟି ଅତି ଅନଗ୍ରସର ବ୍ଲକ୍‌ରେ ଓଡ଼ିଶା ଆଦିବାସୀ ସଶକ୍ତିକରଣ ଏବଂ ଜୀବିକା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଆଦିବାସୀଙ୍କ ବିରୁଦ୍ଧରେ ଥିବା ବହୁ ସଂଖ୍ୟକ ଲଘୁ ବନଜାତ ସଂପର୍କିତ ମୋକଦ୍ଦମା ପ୍ରତ୍ୟାହାର କରାଯାଇଛି । ୫୦୦ ଜନସଂଖ୍ୟା ବିଶିଷ୍ଟ ଆଦିବାସୀ ବସତିକୁ ସବୁଦିନିଆ ରାସ୍ତା ଯୋଗାଇ ଦିଆଯିବ ଏବଂ ଆଦିବାସୀ ପଡ଼ାଗୁଡ଼ିକ ପୁନଃଥଇଥାନ ପ୍ୟାକେଜ ନିମନ୍ତେ ବସତି ରୂପେ ପରିଗଣିତ ହେବ । ଆଦିବାସୀ ଗ୍ରାମଗୁଡ଼ିକୁ ଅଗ୍ରାଧିକାର ଭିତ୍ତିରେ ବିଦ୍ୟୁତିକରଣ କରାଯାଉଛି । ପଲିଟେକ୍‌ନିକ୍ ଏବଂ ଶିଳ୍ପ ପ୍ରଶିକ୍ଷଣ ଅନୁଷ୍ଠାନ (ଆଇ.ଟି.ଆଇ.)ଗୁଡ଼ିକରେ କୌଶଳବୃଦ୍ଧି ତାଲିମ ଜରିଆରେ ଅନୁସୂଚିତ ଜନଜାତି ଯୁବକଯୁବତୀ ପାଇଁ ନିଯୁକ୍ତି ସୁଯୋଗ ଏବଂ ଆତ୍ମନିଯୁକ୍ତି କ୍ଷେତ୍ର ସୃଷ୍ଟି କରିବା ପାଇଁ ନୂତନ ପଦକ୍ଷେପ ଗ୍ରହଣ କରାଯାଇଛି । ସେମାନଙ୍କର ଜମିଜମା ସମସ୍ୟା ଏବଂ ଅନ୍ୟାନ୍ୟ ସମସ୍ୟା ସମାଧାନ କରିବାକୁ ଆଦିବାସୀ ଜିଲ୍ଲାଗୁଡ଼ିକର ଜିଲ୍ଲାପାଳମାନଙ୍କୁ ଆଦିବାସୀ ଅଞ୍ଚଳଗୁଡ଼ିକୁ ବ୍ୟାପକ ଗସ୍ତ, ସେଠାରେ ରାତ୍ରୀଯାପନ ଏବଂ କ୍ୟାମ୍ପକୋର୍ଟ ଅନୁଷ୍ଠିତ କରିବାକୁ ନିର୍ଦ୍ଦେଶ ନିଆଯାଇଛି । ୧୯୮୦ ପୂର୍ବ-ଜଙ୍ଗଲ ବସତିର ନିୟମିତକରଣ ଏବଂ ହସ୍ତାନ୍ତରିତ ଆଦିବାସୀ ଜମିକୁ ଏହାର ପ୍ରକୃତ ମାଲିକଙ୍କୁ ଫେରାଇ ଦିଆଯିବା ପାଇଁ ଗୁରୁତ୍ୱ ପ୍ରଦାନ କରାଯାଉଛି ।

ଶାଳମଞ୍ଜି ସଂଗ୍ରହ ସର୍ବସାଧାରଣ ସଂସ୍ଥାଗୁଡ଼ିକୁ ଅର୍ପଣ କରାଯାଇଛି, ଯାହାକି ସିଧାସଳଖ ଭାବେ ପ୍ରାଥମିକ ତୋଳାଳୀଙ୍କଠାରୁ ସଂଗ୍ରହ କରାଯାଉଛି । ୨୦୦୦ ମସିହାଠାରୁ ବନ୍ଦ ହୋଇଯାଇଥିବା ବାଉଁଶ ସଂଗ୍ରହ ପୁନର୍ବାର ଚାଲୁ କରାଯାଇଛି ।

କେନ୍ଦୁପତ୍ର ଆମ ରାଜ୍ୟର ଗୋଟିଏ ମୁଖ୍ୟ ଅଣ-କାଷ୍ଠ ଜଙ୍ଗଲ ଉତ୍ପାଦନ ଅଟେ ଏବଂ କୃଷିକାର୍ଯ୍ୟ ନହେଉଥିବାବେଳେ ବହୁ ସଂଖ୍ୟକ ପ୍ରାଥମିକ ତୋଳାଳୀଙ୍କର ଜୀବିକା ନିର୍ବାହର ପ୍ରଧାନ ଉତ୍ସ ଅଟେ ଏବଂ ଏହାର ପ୍ରକ୍ରିୟାକରଣ ଓ ବିଡ଼ାବନ୍ଧା କାର୍ଯ୍ୟରେ ବିକଳ୍ପ ନିଯୁକ୍ତି ସୁଯୋଗ ଯୋଗାଏ, ଯାହାକି ରାଜ୍ୟରେ ଅନନ୍ୟ । ମୋ' ସରକାର କେନ୍ଦୁପତ୍ର ତୋଳାଳୀମାନଙ୍କ କଲ୍ୟାଣାର୍ଥେ ନିଷ୍ଠାର ସହ ଉଦ୍ୟମ କରୁଛନ୍ତି ।

ସାମାଜିକ କ୍ଷେତ୍ର ବିକାଶ ଦିଗରେ ମଧ୍ୟ ମୋ' ସରକାର ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଛନ୍ତି । ଆମ କୃଷକ, ଦିନ ମଜୁରିଆ, ଆଦିବାସୀ, ହରିଜନ ଏବଂ ମହିଳାମାନଙ୍କର ସମସ୍ୟାଗୁଡ଼ିକର ସମାଧାନ କରିବାକୁ ସରକାରଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ରହିଛି । ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନା ଖୁବ୍ ଶୀଘ୍ର ଆରମ୍ଭ ହେବାକୁ ଯାଉଛି, ଯାହା ପ୍ରତ୍ୟେକ ଗ୍ରାମୀଣ ପରିବାରକୁ ୧୦୦ ଦିନର ନିଯୁକ୍ତି ଯୋଗାଇ ଦେବ । ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ମୋ' ସରକାର ନିଯୁକ୍ତି ମିଶନ୍ ଗଠନ କରିଛନ୍ତି । ଏହି ମିଶନ୍ ଆମ ଯୁବକଯୁବତୀମାନଙ୍କ ପାଇଁ ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରିବାକୁ ବିଭିନ୍ନ ଦିଗ ଉନ୍ମୋଚନ କରୁଛି ।

ମୋ’ ସରକାର ୧୦.୩୬ ଲକ୍ଷ ହେକ୍ଟର ଜଳସେଚିତ ଅଞ୍ଚଳରେ ୧୩୨୫୪ ଗୋଟି ପାଣିପଞ୍ଚାୟତ ଗଠନ କରିବାକୁ ସମର୍ଥ ହୋଇଛନ୍ତି ଏବଂ ଏହିସବୁ ପାଣିପଞ୍ଚାୟତ ଜରିଆରେ ଜଳସେଚନ ବ୍ୟବସ୍ଥାଗୁଡ଼ିକର ରକ୍ଷଣାବେକ୍ଷଣ ଓ ପରିଚାଳନାର ଦାୟିତ୍ୱ କୃଷକମାନଙ୍କୁ ହସ୍ତାନ୍ତର କରିଛନ୍ତି । ମୋ’ ସରକାର ପାଣିପଞ୍ଚାୟତ ଅଧିନିୟମ-୨୦୦୨ ଏବଂ ପାଣିପଞ୍ଚାୟତ ନିୟମାବଳୀ-୨୦୦୩ କାର୍ଯ୍ୟକାରୀ କରି ନ୍ୟାୟଗତ ଅଧିକାର ପ୍ରଦାନ କରିଛନ୍ତି । ୧୧୪୩୪ ଗୋଟି ପାଣିପଞ୍ଚାୟତ ୭.୭୭ ଲକ୍ଷ ହେକ୍ଟର ଜଳସେଚିତ ଅଞ୍ଚଳରେ କେନାଲ ପରିଚାଳନା ନିର୍ବାହ କରୁଛନ୍ତି ।

ଆଗାମୀ ୩ ବର୍ଷ ମଧ୍ୟରେ କୃଷକମାନଙ୍କୁ ଜଳସଚେନର ସୁବିଧା ଯୋଗାଇଦେବା ନିମନ୍ତେ ମୋ’ ସରକାର ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ୫୦,୦୦୦ ଗଭୀର ଓ ଅଗଭୀର ନଳକୂପ ସ୍ଥାପନ କରିବାକୁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହି କାର୍ଯ୍ୟକ୍ରମ ପାଇଁ ନାବାର୍ଡ଼ ଆବଶ୍ୟକୀୟ ପାଣ୍ଠି ଆର୍.ଆଇ.ଡି.ଏଫ୍. ଯୋଜନା ଜରିଆରେ ଯୋଗାଇ ଦେବ । ମୋ’ ସରକାର ବିଜୁ କୃଷକ ବିକାଶ ଯୋଜନା ମାଧ୍ୟମରେ କୃଷକମାନଙ୍କୁ ସହାୟତା ଯୋଗାଇ ଦେବ । ଏହି ଯୋଜନା ଅନୁଯାୟୀ କୃଷକ ସମାଜକୁ ଦଳଗତ ଭାବେ ନଳକୂପ ପ୍ରତିଷ୍ଠା ନିମନ୍ତେ ୯୦ ପ୍ରତିଶତ ରିହାତି ଯୋଗାଇ ଦିଆଯିବ ।

ମୋ’ ସରକାର ୧୨ ଗୋଟି ନୂତନ ଡିଭିଜନ୍ ଅଞ୍ଚଳରେ ଗ୍ରାମ୍ୟ ପାନୀୟ ଜଳଯୋଗାଣ ପ୍ରକଳ୍ପ, କେନ୍ଦ୍ରୀୟ ପ୍ରାୟୋଜିତ ସ୍ୱଜଳଧାରା ଯୋଜନା, ସମ୍ପୂର୍ଣ୍ଣ ପରିମଳ ଯୋଜନା ଇତ୍ୟାଦି କାର୍ଯ୍ୟକ୍ରମର ତଦାରଖ କରିବାକୁ ରାଜ୍ୟରେ ୧୨ ଗୋଟି ନୂତନ ଗ୍ରାମ୍ୟ ଜଳଯୋଗାଣ ଏବଂ ପରିମଳ ଡିଭିଜନ୍ ସ୍ଥାପନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ନୂତନ ଭାବେ ସୃଷ୍ଟି ହୋଇଥିବା ଡିଭିଜନଗୁଡ଼ିକ ହେଲା : ନୟାଗଡ଼, ଅନୁଗୁଳ, ଜଗତସିଂହପୁର, ଭଦ୍ରକ, ରାଇରଙ୍ଗପୁର, ଝାରସୁଗୁଡ଼ା, ଦେଓଗଡ଼, ସୋନପୁର, ଗଜପତି, ବୌଦ୍ଧ, ମାଲକାନଗିରି ଓ ନୂଆପଡ଼ା । ଏହି ଡିଭିଜନ୍‌ଗୁଡ଼ିକ ପାନୀୟ ଜଳଯୋଗାଣ ଏବଂ ପରିମଳ ସମ୍ପର୍କିତ ବହୁବିଧ ଯୋଜନାଗୁଡ଼ିକର କାର୍ଯ୍ୟକାରିତାକୁ ତ୍ୱରାନ୍ୱିତ କରିବା ସଂଗେସଂଗେ ପ୍ରଶାସନିକ ଦକ୍ଷତା ବୃଦ୍ଧି କରିବାରେ ସହାୟକ ହେବ ।

ରାଜ୍ୟରେ ପାଠ ପଢୁଥିବା ଛାତ୍ରୀମାନଙ୍କର ଉପସ୍ଥାନ ବୃଦ୍ଧି ଉଦ୍ଦେଶ୍ୟରେ, ସରକାର ନିଷ୍ପତ୍ତି ନେଇଛନ୍ତି ଯେ ପ୍ରଥମରୁ ସପ୍ତମ ଶ୍ରେଣୀ ମଧ୍ୟରେ ପାଠ ପଢୁଥିବା ପ୍ରାୟ ୨୫ ଲକ୍ଷ ଛାତ୍ରୀଙ୍କୁ ଗ୍ରାମ୍ୟ ଶିକ୍ଷା କମିଟି ମାଧ୍ୟମରେ ମାଗଣାରେ ସ୍କୁଲ ପୋଷାକ ଯୋଗାଇ ଦେବେ । ଜାତିର ଜନକ ମହାତ୍ମା ଗାନ୍ଧୀ କହିଥିଲେ - ‘ନାରୀ ଶିକ୍ଷା ବିନା ସମାଜର ବିକାଶ ଅସମ୍ପୂର୍ଣ୍ଣ ରହେ ।’ ଯଦି ଜଣେ ବାଳିକା ଶିକ୍ଷିତା ହୋଇଥାଏ, ତେବେ ତାଙ୍କର ପୂରା ପରିବାର ଶିକ୍ଷିତ ହୋଇପାରିବ । ଏହାକୁ ଦୃଷ୍ଟିରେ ରଖି,ମୋ’ ସରକାର ଏକ ନୀତି ପ୍ରଣୟନ କରିଛନ୍ତି । ଯଦ୍ଦ୍ୱାରାକି ୫ରୁ ୧୩ ବର୍ଷ ବୟସର ସମସ୍ତ ଛାତ୍ରୀମାନଙ୍କୁ ଆନୁଷ୍ଠାନିକ ସ୍କୁଲ ପ୍ରତି ଆକୃଷ୍ଟ କରାଯାଇପାରିବ ଏବଂ ସ୍କୁଲ ପୋଷାକ ବଣ୍ଟନ ମଧ୍ୟ ନିଶ୍ଚିତ ରୂପେ ଛାତ୍ରୀମାନଙ୍କୁ ସେମାନଙ୍କ ଶିକ୍ଷା ଜାରି ରଖିବାରେ ଉତ୍ସାହିତ କରିବ ।

ମୋ’ ସରକାର ୨୦୦୫ ମସିହା ଅକ୍ଟୋବର ୧୨ ତାରିଖଠାରୁ ରାଜ୍ୟରେ ନିଷ୍ପାର ସହିତ ସୂଚନା ଅଧିକାର ଆଇନ୍-୨୦୦୫ କାର୍ଯ୍ୟକାରୀ କରିଛନ୍ତି । ଏହା ଏକ ନିୟମ ଯାହାକି ପ୍ରତ୍ୟେକ ସରକାରୀ କର୍ତ୍ତୃପକ୍ଷଙ୍କ ନିୟନ୍ତ୍ରଣ ଅଧୀନରେ ଥିବା ସୂଚନା ଆହରଣ ନିଶ୍ଚିତ କରିବାକୁ ନାଗରିକମାନଙ୍କୁ ସୂଚନା ଅଧିକାରର ବାସ୍ତବ ଆଭିମୁଖ୍ୟ ଯୋଗାଇ ଦେବ । ଏହି ନିୟମକୁ ତୁରନ୍ତ କାର୍ଯ୍ୟକାରୀ କରିବା ନିମନ୍ତେ ରାଜ୍ୟ ସୂଚନା ଆୟୋଗ ଗଠନ ହୋଇଛି ଓ ମୁଖ୍ୟ ସୂଚନା କମିଶନର ଏବଂ ରାଜ୍ୟ ସୂଚନା କମିଶନରଙ୍କୁ ନିଯୁକ୍ତି ଦିଆଯାଇଛି ।

୨୦୦୬-୦୭ ମଧ୍ୟରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଉନ୍ନୟନମୂଳକ କାର୍ଯ୍ୟ ହାତକୁ ନେବା ନିମନ୍ତେ ଦ୍ୱାଦଶ ଅର୍ଥ ଅନୁଦାନ ଆୟୋଗଙ୍କ ପକ୍ଷରୁ ୨୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି । ଏହା ଏକ ଶୁଭ ସୂଚନା ଯେ ଜାତୀୟ ସମର ଶିକ୍ଷାର୍ଥୀବାହିନୀରେ ୪୫,୦୦୦ ଛାତ୍ରଛାତ୍ରୀଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି । ୨୦୦୫-୦୬ ଶିକ୍ଷାବର୍ଷଠାରୁ ସମସ୍ତ ସ୍ୱୟଂଶାସିତ ମହାବିଦ୍ୟାଳୟଗୁଡ଼ିକରେ ସରକାରୀ ତଥା ଅନୁଦାନ ପ୍ରାପ୍ତ ବେସରକାରୀ ମହାବିଦ୍ୟାଳୟଗୁଡ଼ିକରେ ଏକକ ପୋଷାକ ସଂହିତା ପ୍ରଚଳନ କରାଯାଇଛି । ଉଚ୍ଚଶିକ୍ଷା କ୍ଷେତ୍ରରେ ଅଧିକ ଛାତ୍ରଛାତ୍ରୀଙ୍କୁ ସାମିଲ କିରବା ପାଇଁ ଋଣ ବୃତ୍ତି ଯୋଜନା ଅଧୀନରେ ଅଧିକ ପାଣ୍ଠି ମଞ୍ଜୁର କରାଯାଉଛି ।

ମୋ’ ସରକାର ଶିଶୁ ଗଣନା କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଅଦ୍ୟାବଧି ରାଜ୍ୟର ୫୦,୫୨,୫୦୬ଟି ପରିବାରରେ ୦-୧୪ ବର୍ଷ ବୟସର ୧,୦୬,୫୮,୪୭୩ ଜଣ ଶିଶୁ ସର୍ବେକ୍ଷଣଭୁକ୍ତ ହୋଇଛନ୍ତି । ରାଜ୍ୟରେ ଶିଶୁ ମୃତ୍ୟୁହାର ୨୦୦୦ ମସିହାରେ ୧୦୦୦ ଜଣରେ ୯୭ ଥିବାବେଳେ ଏବେ ଏହା ୮୩କୁ ହ୍ରାସ ପାଇଛି ।

ମୋ’ ସରକାର ପର୍ଯ୍ୟାପ୍ତ ନିଯୁକ୍ତି ସୃଷ୍ଟିର ସମ୍ଭାବନା ରଖୁଥିବା ସୂଚନା ପ୍ରଯୁକ୍ତି ଏବଂ ପର୍ଯ୍ୟଟନ କ୍ଷେତ୍ରରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଚାଷୀମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ସରକାର ଜମିଜମା କାଗଜପତ୍ରର କମ୍ପ୍ୟୁଟରୀକରଣ ପାଇଁ ପଦକ୍ଷେପ ଗ୍ରହଣ କରିଛନ୍ତି । ଜମି ପାସ୍‌ବୁକ୍ ବଣ୍ଟନ ଆଜିଠାରୁ ଆରମ୍ଭ ହେଉଛି ।

ମାନ୍ୟବର ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱାଧୀନ କେନ୍ଦ୍ର ସରକାର ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିସାଧନ ନିମନ୍ତେ ଅତ୍ୟନ୍ତ ସହାନୁଭୂତିଶୀଳ ଅଛନ୍ତି । କେନ୍ଦ୍ର ସରକାରଙ୍କ ଦ୍ୱାରା ସବୁ କ୍ଷେତ୍ରରେ ସାହାଯ୍ୟପ୍ରାପ୍ତ ହୋଇ ରାଜ୍ୟ ସରକାର ନୂତନ ପଦକ୍ଷେପ ସହ ରାଜ୍ୟର ଉନ୍ନୟନ ପ୍ରକ୍ରିୟାରେ ବୃହତର ସଫଳତା ହାସଲ କରିବାକୁ ସର୍ବଦା ପ୍ରସ୍ତୁତ ।

ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟ ରୂପେ ଗଢ଼ି ତୋଳିବାକୁ ମୋ’ ସରକାରଙ୍କର ଏକ ସ୍ୱଚ୍ଛ ଦୃଷ୍ଟିକୋଣ ରହିଛି । ଆସନ୍ତୁ, ଏହି ଶୁଭ ଅବସରରେ ଆମେ ସମସ୍ତେ ଓଡ଼ିଶାକୁ ଆମ ଦେଶରେ ଏକ ଅଗ୍ରଣୀ ରାଜ୍ୟ ରୂପେ ପରିଗଣିତ କରିବା ପାଇଁ ଦୃଢ଼ ଶପଥ ନେବା ।

ଜୟହିନ୍ଦ୍



# ସାଧାରଣତନ୍ତ୍ର ଦିବସ -୨୦୦୬ ଅବସରରେ
## ମାନ୍ୟବର ମୁଖ୍ୟମନ୍ତ୍ରୀ
## **ଶ୍ରୀ ନବୀନ ପଟ୍ଟନାୟକଙ୍କ**
## ବାର୍ତ୍ତା

**ପ୍ରିୟ ଭାଇ ଓ ଭଉଣୀମାନେ,**

ପବିତ୍ର ସାଧାରଣତନ୍ତ୍ର ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସାଧାରଣତନ୍ତ୍ର ଦିବସ ଆମ ସମସ୍ତଙ୍କ ପାଇଁ ଏକ ମହାନ୍ ଦିବସ । ଏହି ଦିନ ଆମ ଦେଶର ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଆମ ଦେଶର ଯେଉଁ ବରପୁତ୍ରମାନେ ସମ୍ବିଧାନ ରଚନା କରିଛନ୍ତି, ସେମାନେ ଆଉ ଆମ ଭିତରେ ନାହାନ୍ତି । ମୁଁ ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆମ ଦେଶର ଯେଉଁ ବୀର ସନ୍ତାନମାନେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଲଢ଼େଇ କରିଥିଲେ, ସେମାନଙ୍କ ପ୍ରତି ମୋର ସମ୍ମାନ ଜଣାଉଛି ।

ସ୍ୱାଧୀନତା ପରେ ଆମ ଦେଶ ବିଭିନ୍ନ କ୍ଷେତ୍ରରେ ଉନ୍ନତି କରି ବିଶ୍ୱ ଦରବାରରେ ଗୌରବ ଲାଭ କରିଛି । ଆମ ରାଜ୍ୟ ଓଡ଼ିଶାକୁ ଏକ ଉନ୍ନତ ରାଜ୍ୟରେ ପରିଣତ କରିବା ପାଇଁ ଆମର ଉଦ୍ୟମ ଜାରି ରହିଛି ।

ନୂତନ ଶିଳ୍ପ ପ୍ରତିଷ୍ଠା ଦ୍ୱାରା ଆମର ରାଜସ୍ୱ ବୃଦ୍ଧି ପାଇବ ଓ ଆମର ପିଲାମାନେ ଚାକିରି ପାଇବେ । କିନ୍ତୁ ଶିଳ୍ପ ପ୍ରତିଷ୍ଠା ବେଳେ ଲୋକମାନଙ୍କ ସ୍ୱାର୍ଥ ପ୍ରତି ଧ୍ୟାନ ଦିଆଯିବ । ନିକଟରେ କଳିଙ୍ଗନଗରରେ ଯେଉଁ ଦୁଃଖଦାୟକ ଘଟଣା ଘଟିଥିଲା, ତାହା ଆମ ସମସ୍ତଙ୍କୁ ମର୍ମାହତ କରିଛି । ଶିଳ୍ପ ଦ୍ୱାରା ଯେଉଁମାନେ ଜମି ଓ ଘର ହରାଇବେ, ସେମାନଙ୍କ ଉପଯୁକ୍ତ ଥଇଥାନ ଉପରେ ମୁଁ ସବୁବେଳେ ଗୁରୁତ୍ୱ ଦେଉଛି । ଆମ ରାଜ୍ୟ ପାଇଁ ଏକ ଭଲ ଥଇଥାନ ନୀତି ପ୍ରସ୍ତୁତ କରିବାକୁ ମନ୍ତ୍ରୀସ୍ତରୀୟ କମିଟି ଗଠନ କରାଯାଇଛି । ରାଜ୍ୟର ନୂଆ ଥଇଥାନ ନୀତି ଖୁବ୍‌ଶୀଘ୍ର ଘୋଷଣା କରାଯିବ ।

ବିକାଶ ପାଇଁ ଶାନ୍ତି ଅତି ଜରୁରୀ । ଓଡ଼ିଶା ଏକ ଶାନ୍ତି ପ୍ରିୟ ରାଜ୍ୟ । ଜଗନ୍ନାଥ ସଂସ୍କୃତି ଶାନ୍ତି, ପ୍ରେମ ଓ ଏକତାର ସଂସ୍କୃତି । ଆମ ରାଜ୍ୟରେ ଶାନ୍ତି ରହିଲେ ରାଜ୍ୟର ବିକାଶ ଶୀଘ୍ର ହୋଇପାରିବ ।

ଆଦିବାସୀମାନଙ୍କ ଉନ୍ନତି ଉପରେ ମୁଁ ସବୁବେଳେ ଜୋର୍ ଦେଇଛି । ମୁଁ ଶାସନ ଦାୟିତ୍ୱ ନେଲା ପରେ ପରେ ଲଘୁ ବନଜାତ ଦ୍ରବ୍ୟ ନୀତି ଆରମ୍ଭ ହୋଇଥିଲା । ଆଦିବାସୀମାନଙ୍କ ରୋଜଗାର ବଢ଼ାଇବା ପାଇଁ କେନ୍ଦୁପତ୍ରର ମୂଲ୍ୟ ବଢ଼ିଛି ଓ ବାଉଁଶ କ୍ଷେତ୍ରରେ ଥିବା କଟକଣା ଉଠାଇ ଦିଆଯାଇଛି । ଆଦିବାସୀମାନଙ୍କ ଉପରେ ଥିବା ଅନେକ ଛୋଟ ଛୋଟ ଜଙ୍ଗଲ କେଶ୍ ଉଠାଇ ଦିଆଯାଇଛି ।

ଆଦିବାସୀ ଅଞ୍ଚଳର ଉନ୍ନତି ପାଇଁ ସ୍କୁଲ, ଡାକ୍ତରଖାନା, ପିଇବା ପାଣି, ବିଜୁଳି ଆଲୁଅ ଓ ଭଲ ରାସ୍ତାର ବ୍ୟବସ୍ଥା କରାଯାଇଛି । ଆଦିବାସୀ ଜିଲ୍ଲାମାନଙ୍କରେ ପ୍ରତ୍ୟେକ ଆଦିବାସୀ ପରିବାରର ଚାଷ ଜମିରେ ଗୋଟିଏ ଲେଖାଏଁ କୂଅ ଖୋଳିବା ପାଇଁ ପଦକ୍ଷେପ ନିଆଯାଉଛି ।

ଆପଣମାନେ ଜାଣନ୍ତି, ଆମ ରାଜ୍ୟର ଲୋକେ ଚାଷ ଉପରେ ବେଶୀ ନିର୍ଭର କରନ୍ତି । ତେଣୁ ଚାଷ ଓ ଚାଷୀର ଉନ୍ନତି ଉପରେ ଆମେ ଗୁରୁତ୍ୱ ଦେଉଛୁ । ଫଳ, ଫୁଲ ଓ ପନିପରିବା ଚାଷ ଦ୍ୱାରା ଚାଷୀ ବେଶୀ ଲାଭ ପାଇବ । ଉଦ୍ୟାନ କାର୍ଯ୍ୟକ୍ରମ ଦ୍ୱାରା ଚାଷୀମାନଙ୍କୁ ଏଥିପାଇଁ ସାହାଯ୍ୟ କରାଯିବ । ଚାଷୀର ଜମିକୁ ପାଣି ଯୋଗାଇ ଦେବା ପାଇଁ ଆମେ ଉଦ୍ୟମ କରୁଛୁ । ପ୍ରତି ବ୍ଲକ୍‌ରେ ଖୁବ୍ କମ୍‌ରେ ୩୫% ଜମିକୁ ପାଣି ଯୋଗାଇ ଦେବା ପାଇଁ ମାଷ୍ଟର ପ୍ଲାନ୍ କରାଯାଇଛି । ବିଜୁ କୃଷକ ଯୋଜନା ଓ ପାଣି ପଞ୍ଚାୟତ କାର୍ଯ୍ୟକ୍ରମ ଚାଷୀମାନଙ୍କ ଭିତରେ ଆଦର ଲାଭ କରିଛି । ଚାଷୀମାନଙ୍କୁ ସାହାଯ୍ୟ କରିବା ପାଇଁ ଆଜିଠାରୁ ଜମି ପାଶ୍ ବୁକ୍ ବଣ୍ଟାଯାଉଛି । ଅଭାବୀ ବିକ୍ରୀ ରୋକିବା ପାଇଁ ଦୃଢ଼ ପଦକ୍ଷେପ ନିଆଯାଇଛି ।

ଆମ ରାଜ୍ୟରେ ପ୍ରଚୁର ସଂପଦ ଭରି ରହିଛି । ତଥାପି ଆମେ ଗରିବ ଓ ଆମର ପିଲାମାନେ ନିଯୁକ୍ତି ପାଉନାହାନ୍ତି । ସେଥିପାଇଁ ଆମେ ଶିଳ୍ପ, ସୂଚନା ପ୍ରଯୁକ୍ତି ଓ ପର୍ଯ୍ୟଟନ ଉପରେ ଗୁରୁତ୍ୱ ଦେଉଛୁ । ଇସ୍ପାତ ଓ ଆଲୁମିନିୟମ୍ କ୍ଷେତ୍ରରେ ନୂଆ ଶିଳ୍ପ ପ୍ରତିଷ୍ଠା ପାଇଁ ଉଦ୍ୟମ ଜାରି ରହିଛି । ଏହାଦ୍ୱାରା ରାଜ୍ୟର ରାଜସ୍ୱ ବଢ଼ିବ ଓ ଆମ ପିଲାମାନେ ଚାକିରି ପାଇବେ । ରାଜ୍ୟର ଯୁବକଯୁବତୀମାନଙ୍କ ପାଇଁ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରିବାକୁ ନିଯୁକ୍ତି ମିଶନ୍ ଆରମ୍ଭ କରାଯାଇଛି ।

ଗ୍ରାମାଞ୍ଚଳର ଉନ୍ନତି ମୋର ଲକ୍ଷ୍ୟ । ରାଜ୍ୟର ସବୁ ଗାଁକୁ ଭଲ ରାସ୍ତା ଓ ପିଇବା ପାଣିର କାର୍ଯ୍ୟକ୍ରମ ଜୋର୍‌ସୋର୍‌ରେ ଚାଲିଛି । ମିଶନ୍ ଶକ୍ତି ଜରିଆରେ ମହିଳାମାନଙ୍କ ଭିତରେ ନୂଆ ଚେତନା ସୃଷ୍ଟି ହୋଇଛି । ଶିଶୁ ମୃତ୍ୟୁହାର ହ୍ରାସ ମିଶନ୍ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁ ମୃତ୍ୟୁହାର କମିଛି ।

ନୂଆ ଶତାବ୍ଦୀରେ ଓଡ଼ିଶାକୁ ଆଗେଇ ନେଇ ଏକ ଉନ୍ନତ ରାଜ୍ୟରେ ପରିଣତ କରିବା ମୋର ଲକ୍ଷ୍ୟ । ଏଥିପାଇଁ ଆପଣମାନଙ୍କର ସାହାଯ୍ୟ ଓ ସହଯୋଗ ଦରକାର । ଆଜି ଏହି ପବିତ୍ର ଦିବସରେ ଆସନ୍ତୁ, ଓଡ଼ିଶାକୁ ଆଗେଇ ନେବା ପାଇଁ ଆମେ ସମସ୍ତେ ଶପଥ ନେବା ।

**ଜୟହିନ୍ଦ୍**



# ସାଧାରଣତନ୍ତ୍ର ଦିବସ - ୨୦୦୬ ଅବସରରେ
# ମାନ୍ୟବର ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ
# **ଶ୍ରୀ ଦେବାଶିଷ ନାୟକଙ୍କ**
# **ବାର୍ତ୍ତା**

୫୭ତମ ସାଧାରଣତନ୍ତ୍ର ଐତିହାସିକ ଦିବସ ଅବସରରେ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି ।

ଆପଣମାନେ ସମସ୍ତେ ଅବଗତ ଥିବେ ଯେ ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ବଳରେ ୧୯୭୬ ଡିସେମ୍ବର ୧୮ ତାରିଖରେ ଭାରତ ସମ୍ବିଧାନର ଉପକ୍ରମଣିକାରେ ପରିବର୍ତ୍ତନ ହୋଇଛି । ଭାରତ ଏଣିକି ସାର୍ବଭୌମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ରୂପେ ପରିଗଣିତ ନହୋଇ ଏକ ସାର୍ବଭୌମ ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦୀ ସାଧାରଣତନ୍ତ୍ର ରୂପେ ପରିଗଣିତ ହେଉଛି । ଏଥିରେ ଏକତା ଓ ଅଖଣ୍ଡତା ଶବ୍ଦ ସଂଯୋଗ ହୋଇଛି । ଏହି ୪୨ତମ ସମ୍ବିଧାନ ସଂଶୋଧନ ବିଲ୍‌ରେ ଆମ ସମ୍ବିଧାନରେ ନାଗରିକମାନଙ୍କ ପାଇଁ ୧୦ ଗୋଟି ମୌଳିକ କର୍ତ୍ତବ୍ୟ ଲିପିବଦ୍ଧ କରାଯାଇଛି । ସେହି ୧୦ ଗୋଟି ମୌଳିକ କର୍ତ୍ତବ୍ୟ ମଧ୍ୟରୁ ପ୍ରଥମ କର୍ତ୍ତବ୍ୟ ହେଉଛି ସମ୍ବିଧାନରେ ପ୍ରଦତ୍ତ କର୍ତ୍ତବ୍ୟକୁ ମାନି ଚଳିବା, ଜାତୀୟ ପତାକା ଓ ଜାତୀୟ ସଙ୍ଗୀତ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଏବଂ ପ୍ରଣୀତ ଆଦର୍ଶକୁ ମାନି ଚଳିବା ।

ଆଜିର ଏହି ପବିତ୍ର ଦିବସ ଅବସରରେ ଆମେ ସେମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା, ଯେଉଁମାନଙ୍କର ଅସୀମ ଦୃଢ଼ଶକ୍ତି ଓ ଆନ୍ତରିକତା ବଳରେ ସମ୍ବିଧାନ ପ୍ରଣୟନ ହୋଇପାରିଲା । ସେମାନଙ୍କ ମଧ୍ୟରେ ଅଛନ୍ତି ଭାରତ ସମ୍ବିଧାନର ସାମ୍ବିଧାନିକ ସଭାର ମୁଖ୍ୟ ଡଃ ବି.ଆର୍. ଆମ୍ବେଦକର, ଡଃ ରାଜେନ୍ଦ୍ର ପ୍ରସାଦ, ପଣ୍ଡିତ ଜବାହରଲାଲ ନେହେରୁ ଓ ସମ୍ବିଧାନ ସଭାର ଅନ୍ୟ ପ୍ରମୁଖ ସଦସ୍ୟଗଣ ଯଥା- ଏନ୍. ଗୋପାଳସ୍ୱାମୀ ଆୟଙ୍ଗର, ଆଲ୍ଲା ଡି କୃଷ୍ଣସ୍ୱାମୀ ଆୟର, କେ.ଏମ୍. ମୁନ୍‌ସୀ, ସୟଦ ମହମ୍ମଦ ସାଦ୍ଦୁଲା, ଏନ୍. ମାଧବରାଓ ଓ ଡି.ପି. ଖଇତାନ୍ ।

ଇତି ମଧ୍ୟରେ ୫୬ ବର୍ଷ ବିତିଯାଇଛି । ଆମେ ଆମର ମହାନ୍ ନେତୃବୃନ୍ଦଙ୍କ ପ୍ରଦର୍ଶିତ ମାର୍ଗରେ ଅଗ୍ରସର ହୋଇପାରିଛୁ । ପୁଣି ସମ୍ବିଧାନରେ ପ୍ରଦତ୍ତ ଦଶଗୋଟି ମୌଳିକ କର୍ତ୍ତବ୍ୟକୁ ଆମେ ସମ୍ମାନ ଦେଇ କାର୍ଯ୍ୟକାରୀ କରିବା ତାହା ହେଉଛି ଆମ ସମ୍ବିଧାନ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ।

ଆମର ବିପୁଳ ପ୍ରାକୃତିକ ତଥା ଖଣିଜ ସଂପଦ ଏବଂ ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ ହୋଇପାରିଲେ ଆମ ରାଜ୍ୟ ଉନ୍ନତିର ଚରମ ସୋପାନରେ ପହଞ୍ଚିପାରିବ ।

ଆମ ରାଜ୍ୟର ଉନ୍ନତିକଳ୍ପେ ଅନେକ କଲ୍ୟାଣକାରୀ ଯୋଜନା କାର୍ଯ୍ୟକାରୀ ହେଉଛି । ଆମ ସରକାର ପ୍ରତ୍ୟେକ ଗ୍ରାମକୁ ପକ୍କା ରାସ୍ତା ସଂଯୋଗ, ପାନୀୟଜଳ ସୁବିଧା, ବିଦ୍ୟୁତ୍ ଯୋଗାଣ, ଶିକ୍ଷା ଓ ସ୍ୱାସ୍ଥ୍ୟ ଉପରେ ପ୍ରାଥମିକ ଗୁରୁତ୍ୱ ଦେଉଛନ୍ତି ।

ଏହାବ୍ୟତୀତ ବେକାର ଯୁବକମାନଙ୍କ ଥଇଥାନ ପାଇଁ ରାଜ୍ୟ ନିଯୁକ୍ତି ନୀତି ୨୦୦୫ ପ୍ରଣୟନ କରି ନିଯୁକ୍ତି ମିଶନ ମାଧ୍ୟମରେ ବେକାର ଯୁବକଯୁବତୀମାନଙ୍କୁ ଥଇଥାନ ଓ ଆତ୍ମନିର୍ଭରଶୀଳ କରିବାକୁ ଅନେକ ପ୍ରୋତ୍ସାହନ ଯୋଗାଇ ଦେଉଛନ୍ତି । ଓଡ଼ିଶାରେ ବ୍ୟାପକ ଇସ୍ପାତ ଓ ଆଲୁମିନା ଶିଳ୍ପର ବିକାଶ ପାଇଁ ସରକାର ୪୩ ଗୋଟି ବୃହତ୍ ଶିଳ୍ପ ସଂସ୍ଥା ସହିତ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ଯାହାଫଳରେ ରାଜ୍ୟର ବେକାର ଯୁବକଯୁବତୀ ନିଯୁକ୍ତି ପାଇପାରିବେ ।

ପ୍ରଶାସନରେ ସ୍ୱଚ୍ଛତା ଓ ସମସ୍ତଙ୍କୁ ସୂଚନା ଅଧିକାର ପ୍ରଦାନ ନିମନ୍ତେ ଆମ ସରକାର ୨୦୦୫ ଅକ୍ଟୋବର ୧୨ ତାରିଖଠାରୁ ରାଜ୍ୟରେ ସୂଚନା ଅଧିକାର ୨୦୦୫ ପ୍ରଚଳନ କରିଛନ୍ତି । ରାସ୍ତାର ସଂଯୋଗୀକରଣ ଓ ରାସ୍ତାର ଉନ୍ନୟନ ପାଇଁ ବିଶ୍ୱବ୍ୟାଙ୍କ ରାଜ୍ୟରେ ରାସ୍ତାଘାଟର ଉନ୍ନତି ନିମନ୍ତେ ୧୬୪୨ କୋଟି ଟଙ୍କା ପ୍ରଦାନ କରିବାକୁ ସମ୍ମତି ଦେଇ ସାରିଲେଣି ।

କୃଷିର ଉନ୍ନତିକଳ୍ପେ ୧୦୩୬ ଲକ୍ଷ ହେକ୍ଟର ସେଚାଞ୍ଚଳରେ ୧୩୨୫୪ଟି ପାଣିପଞ୍ଚାୟତ ଗଠନ କରାଯାଇଛି । ୧୧୪୩୪ଟି ପାଣିପଞ୍ଚାୟତ ୭.୭୭ ଲକ୍ଷ ହେକ୍ଟର ସେଚାଞ୍ଚଳରେ କେନାଲଗୁଡ଼ିକର ପରିଚାଳନା ଓ ରକ୍ଷଣାବେକ୍ଷଣ ଦାୟିତ୍ୱ ଗ୍ରହଣ କରିଛନ୍ତି ।

ରାଜ୍ୟ ସରକାର ପାଣିପଞ୍ଚାୟତ ଅଧିନିୟମ ୨୦୦୨ ଏବଂ ପାଣିପଞ୍ଚାୟତ ନିୟମାବଳୀ ୨୦୦୩ ଜାରି ରଖି ପାଣି ପଞ୍ଚାୟତଗୁଡ଼ିକୁ ବୈଧାନିକ ଅଧିକାର ପ୍ରଦାନ କରିଛନ୍ତି ।

୨୦୦୬ ଜାନୁଆରୀ ୨୦ ତାରିଖଠାରୁ ଛାତ୍ରୀମାନଙ୍କୁ ଆଗ୍ରହ ପ୍ରଦର୍ଶନ କରିବାକୁ ଓ ସେମାନେ ଯେପରି ଅଧାରୁ ପାଠ ଛାଡ଼ନ୍ତୁ ନାହିଁ ସେଥିପାଇଁ ପ୍ରଥମ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ୨୪ ଲକ୍ଷ ୮୪ ହଜାର ୧୬୪ ଜଣ ଛାତ୍ରୀଙ୍କୁ ମାଗଣା ପୋଷାକ ବଣ୍ଟନ କରାଯିବ । ରାଜ୍ୟରେ ଖାଉଟି ସଚେତନତା ବୃଦ୍ଧି କରିବା ଲାଗି ପ୍ରତି ଜିଲ୍ଲା ପାଇଁ ୫ ଲକ୍ଷ ଟଙ୍କା ଯୋଗାଇ ଦେଉଛନ୍ତି । ସରକାର ନୀତିଗତ ଭାବେ ପ୍ରତ୍ୟେକ ପରିବାରକୁ ୫ ଲିଟର ଲେଖାଏଁ କିରୋସିନି ବଣ୍ଟନ କରିବାର ବ୍ୟବସ୍ଥା ରଖିଛନ୍ତି ।

ଚାଷୀମାନଙ୍କୁ ଜଳଯୋଗାଣ ପାଇଁ ରାଜ୍ୟ ସରକାର ୫୦,୦୦୦ଟି ନଳକୂପ ଖନନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଗ୍ରାମ୍ୟ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା ପାଇଁ ସରକାର ୧୨ଟି ଗ୍ରାମ୍ୟ ଜଳଯୋଗାଣ ଡିଭିଜନ ସ୍ଥାପନ କରିବା ପାଇଁ ପଦକ୍ଷେପ ନେଉଛନ୍ତି ।

୨୦୦୯ ମସିହା ସୁଦ୍ଧା ରାଜ୍ୟର ସମସ୍ତ ଗ୍ରାମକୁ ବିଦ୍ୟୁତିକରଣ କରାଯିବ । ଏହାଦ୍ୱାରା ଜଳଯୋଗାଣ ସମସ୍ୟାର ସମାଧାନ ହୋଇପାରିବ । ମିଶନଶକ୍ତି, ବସୁନ୍ଧରା ଯୋଜନା, ଶିଶୁ ମୃତ୍ୟୁହାର ହ୍ରାସ, ଧାମରା ଓ ଗୋପାଳପୁର ବନ୍ଦରର ବିକାଶ ଓ କ୍ରୀଡ଼ାର ଉନ୍ନତିକଳ୍ପେ ବହୁବିଧ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ଚାଲନ୍ତୁ, ଏହି ପବିତ୍ର ଦିବସ ଅବସରରେ 'ମୁଁ' ଓ 'ତୋ' ସଂକୀର୍ଣ୍ଣ ଭେଦଭାବ ଭୁଲି ଏକ ଅଖଣ୍ଡ ଭାରତ ଓ ପ୍ରଗତିଶୀଳ ଓଡ଼ିଶାର ଉନ୍ନତିକଳ୍ପେ ସାମୂହିକ ଚିନ୍ତା ଓ ଉଦ୍ୟମ କରିବା, ଯାହାଫଳରେ ଓଡ଼ିଶା ଭାରତର ଏକ ଅଗ୍ରଗାମୀ ରାଜ୍ୟରେ ପରିଣତ ହୋଇପାରିବ ।

**ଜୟହିନ୍ଦ୍**

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

| ୬୨ ଭାଗ | ୬ଷ୍ଠ ସଂଖ୍ୟା | ପୌଷ-ମାଘ | ଜାନୁଆରୀ - ୨୦୦୬ |
| --- | --- | --- | --- |

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ**
**ମାନସ ରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୪୦୪୫୧୩, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ